# ଗୁରୁ କଲ୍ଲୋଳ

## (ଗୁରୁପ୍ରସାଦ ମହାନ୍ତିଙ୍କ ଅଭିନନ୍ଦନ ଗ୍ରନ୍ଥ)

ସମ୍ପାଦନା

ଡକ୍ଟର ବୈଷ୍ଣବ ଚରଣ ସାମଲ
ଶ୍ରୀ ରଘୁନାଥ ମହାପାତ୍ର
ଡକ୍ଟର ବିଜୟାନନ୍ଦ ସିଂହ

ପ୍ରକାଶକ

କଟକ ଲେଖକ ସହଯୋଗ ସମିତି ଲିଃ

କାଳୀ ଭବନ, ଖାନନଗର, କଟକ - ୧୨

# ଗୁରୁ କଲ୍ଲୋଳ
(ଗୁରୁପ୍ରସାଦ ମହାନ୍ତିଙ୍କ ଅଭିନନ୍ଦନ ଗ୍ରନ୍ଥ)

ସମ୍ପାଦନା :
ଡକ୍ଟର ବୈଷ୍ଣବ ଚରଣ ସାମଲ
ଶ୍ରୀ ରଘୁନାଥ ମହାପାତ୍ର
ଡକ୍ଟର ବିଜୟାନନ୍ଦ ସିଂହ

ପ୍ରକାଶକ :
କଟକ ଲେଖକ ସହଯୋଗ ସମିତି ଲିଃ
କାଳୀ ଭବନ, ଖାନନଗର, କଟକ - ୧୨

ଡି.ଟି.ପି. :
ଆନନ୍ଦ ଗ୍ରାଫିକ୍ସ୍, ମିଶ୍ରଲେନ୍, ଝାଞ୍ଜିରୀମଙ୍ଗଳା, କଟକ

ମୁଦ୍ରଣ :
ଆନନ୍ଦ ଗ୍ରାଫିକ୍ସ୍, କଟକ

ପ୍ରଚ୍ଛଦ :
ଶ୍ରୀ ବିଜୟ କୁମାର ପ୍ରଧାନ
ତଗର ପଡ଼ା, କଟକ-୨

ପ୍ରଥମ ପ୍ରକାଶ :
କୁମାର ପୂର୍ଣ୍ଣିମା, ୨୦୦୫

ମୂଲ୍ୟ : ଟ. ୮୦.୦୦

**GURU KALLOLA**
(Guruprasad Mohantynka
Abhinandana Grantha)

Edited by :
**Dr. Baishnab Charan Samal**
**Sri Raghunath Mahapatra**
**Dr.Bijayananda Singh**

Publisher :
**Cuttack Lekhak Sahajog Samiti Ltd.**
Kali Bhawan, Khannagar,
Cuttack - 12

D.T.P. & Printing :
**Anand Graphix**
Mishra Lane, Jhanjirimangala,
Cuttack - 753 009

Cover Design :
Sri Bijay Kumar Pradhan

First Edition :
**Kumara Purnima, 2005**

**Price : Rs. 80.00**

# ସଙ୍କଳନ ସମ୍ପର୍କରେ

ଗୁରୁପ୍ରସାଦ ମହାନ୍ତି ସାମ୍ପ୍ରତିକ ଓଡ଼ିଆ ସାହିତ୍ୟରେ କେବଳ ଜଣେ ସ୍ମରଣୀୟ ପ୍ରତିଭା ନୁହନ୍ତି; ଅନେକ ଦୃଷ୍ଟିକୋଣରୁ ଜଣେ ବିଶିଷ୍ଟ ସାରସ୍ୱତ ସ୍ରଷ୍ଟା ଭାବରେ ସେ ମାନ୍ୟତା ଲାଭ କରିଛନ୍ତି । ଜଣେ ହୃତବିଭବ ଜମିଦାରୀର ଦାୟାଦ ଭାବରେ ପିତାଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ସେଦିନ ଗୁରୁପ୍ରସାଦ ଯେଉଁ ସଂକଳ୍ପ କରିଥିଲେ ତାହା ସଫଳ ହେଲା, ସୁଦୂର ଆମେରିକା ଯାଇ ଓହିଓ ଏବଂ ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ଓ ଗବେଷଣା କରି । ମାତୃଭୂମିର ଆକର୍ଷଣରେ ଜନ୍ମମାଟିକୁ ଫେରି ଆସି ପଶୁଚିକିତ୍ସା, ଅଧ୍ୟାପନା ବୃତ୍ତି ମଧ୍ୟ ଦେଇ ବିଭାଗୀୟ ନିର୍ଦ୍ଦେଶକ ପଦରେ ଅବସ୍ଥାପିତ ହୋଇ ନାନାଦି କାର୍ଯ୍ୟ କରିଥିଲେ ମଧ୍ୟ ତାଙ୍କ ଭିତରେ ଯେଉଁ ସାରସ୍ୱତ ପ୍ରତିଭାର ତପ୍ତ ବୀଜ ସଂଗୁପ୍ତ ଥିଲା ତାହାର ହେଲା ଆଲୋକ ସଂଦର୍ଶନ । ଜଣେ ପଶୁଚିକିତ୍ସା ବିଶାରଦ ଓ ଗବେଷକ ଭାବରେ ସେ ଯେଉଁ ଅନୁଭୂତି ଅର୍ଜନ କରିଥିଲେ ତାହାକୁ ଅବଲମ୍ବନ କରି ରଚନା କଲେ ନାନାଦି ବୈଷୟିକ ସାହିତ୍ୟ । ଆମେରିକା ରହଣି କାଳର ଅନୁଭୂତିକୁ ନେଇ ରଚନା କଲେ ଭ୍ରମଣ କାହାଣୀ । ପରେ ପରେ ରଚନା କଲେ ଗଳ୍ପ, ଉପନ୍ୟାସ, ପ୍ରବନ୍ଧ । ସବୁ କ୍ଷେତ୍ରରେ ତାଙ୍କର ସିଦ୍ଧି । ଅଥଚ ସମ୍ମାନ ପାଇଁ ଲାଳାୟିତ ନୁହନ୍ତି । ମାତ୍ର ସମ୍ମାନ ତାଙ୍କୁ ମିଳିଛି, ପୁରସ୍କାର ମଧ୍ୟ ମିଳିଛି । ଏଥିପାଇଁ ଅହଂକାର ପ୍ରକାଶ ସେ କରିନାହାନ୍ତି । ବଡ଼ ବିନୀତ, ଭଦ୍ର ଓ ଶ୍ରଦ୍ଧାର ମୂର୍ତ୍ତିମନ୍ତ ପ୍ରତୀକ । ଅବସର ଗ୍ରହଣ ପରେ ମଧ୍ୟ କର୍ମଚଞ୍ଚଳ । ଉତ୍କଳ ସମ୍ମିଳନୀର ଉପସଭାପତି ଭାବରେ କାର୍ଯ୍ୟରତ । ଓଡ଼ିଆତ୍ୱର ପ୍ରଚଣ୍ଡ ସ୍ୱାଭିମାନରେ ଅନ୍ତର ତାଙ୍କର ତେଜୋଦୀପ୍ତ । ସେହି ତେଜରେ ବିଚ୍ଛିନ୍ନାଞ୍ଚଳ ଓ ସମସ୍ୟା ପୀଡ଼ିତ ଅଞ୍ଚଳରେ ତାଙ୍କର ପରିକ୍ରମା ଓଡ଼ିଆତ୍ୱର ଜାଗରଣ ପାଇଁ ପ୍ରଚେଷ୍ଟା ।

ବାସ୍ତବିକ ଗୁରୁପ୍ରସାଦ ଶ୍ରଦ୍ଧାଶୀଳ ମଣିଷ । ତାଙ୍କର ସାରସ୍ୱତ ଜଗତ ଶ୍ରଦ୍ଧାର ଜଗତ । ସେ ଗଳ୍ପ ହେଉ ବା ଆଧ୍ୟାତ୍ମିକ ଚେତନାଧର୍ମୀ ଉପନ୍ୟାସ ହେଉ, ପ୍ରବନ୍ଧ ହେଉ ଅଥବା ବୈଷୟିକ ସାହିତ୍ୟ ହେଉ ସର୍ବତ୍ର ପାଠକ ବାରିପାରିବେ ଶ୍ରଦ୍ଧାର ବାସ । ସେହି ଶ୍ରଦ୍ଧା ଯୋଗୁ ତାଙ୍କର ଗଳ୍ପ, ପ୍ରବନ୍ଧ, ଭ୍ରମଣ କାହାଣୀ ଆଦି ପାଠକକୁ ଆକର୍ଷଣ କରେ । ମଣିଷ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା, ଜାତି ଓ ଜାତୀୟତା ପ୍ରତି ମମତା, ବିଶେଷତଃ

ଜଗନ୍ନାଥ ଓ ଜଗନ୍ନାଥ ସଂସ୍କୃତି ପ୍ରତି ପ୍ରାଣର ଅର୍ଘ୍ୟ । ଏହି ସମସ୍ତ ବିଭବହିଁ ତାଙ୍କ ସାରସ୍ୱତ ସୃଷ୍ଟିର ମନ୍ମୟ ବାଣୀ ।

ଏପରି ଜଣେ କର୍ମଯୋଗୀ, ଜ୍ଞାନତପସ୍ୱୀ ଓ ସାରସ୍ୱତ ଶିଳ୍ପୀଙ୍କ ସମ୍ପର୍କରେ ଏକ ସଙ୍କଳନ ପ୍ରକାଶ କରିବାକୁ ବିଶିଷ୍ଟ କଥାକାର, କଟକ ଲେଖକ ସହଯୋଗ ସମିତିର ସମ୍ପାଦକ, ବିଶିଷ୍ଟ ଅନୁବାଦକ, ଗାଳ୍ପିକ ଶ୍ରୀ ରଘୁନାଥ ମହାପାତ୍ର ଓ ଅଧ୍ୟାପକ ଡକ୍ଟର ବିଜୟାନନ୍ଦ ସିଂହ ମୋତେ କହିଲେ ଓ ଏହି ସଂକଳନର ସମ୍ପାଦନା ଦାୟିତ୍ୱ ଗ୍ରହଣ କରିବାକୁ ଅନୁରୋଧ କଲେ । ମୁଁ ଅତୀତରେ ଗୁରୁବାବୁଙ୍କ ଗଳ୍ପ ସମ୍ପର୍କରେ ଲେଖିଥିବାରୁ ମୁଁ ତାଙ୍କୁ ବ୍ୟକ୍ତିଗତ ଭାବରେ ଜାଣିଥିଲି । ଗୋଟାଏ ମହାନ୍ ପରମ୍ପରା ଭିତରୁ ଆସିଥିବାରୁ ତାଙ୍କ ବ୍ୟକ୍ତିତ୍ୱ ଭିତରେ ଯେଉଁ ଦିବ୍ୟ ପରଂପରାବୋଧଟିଏ ସ୍ୱତଃ ଉକୁଟିଉଠୁଥିଲା ତାହାକୁ ମୁଁ ନୀରବରେ ଅନୁଭବ କରିଥିଲି । ତାଙ୍କର ଅନ୍ତରର ଶ୍ରଦ୍ଧା ଓ ନମ୍ର ସ୍ୱଭାବକୁ ଉପଲବ୍ଧି କରିଥିଲି । ତେଣୁ ମୁଁ ବନ୍ଧୁ ରଘୁବାବୁ ଓ ଶ୍ରଦ୍ଧେୟ ବିଜୟାନନ୍ଦଙ୍କ ଅନୁରୋଧ ରକ୍ଷା କଲି । ଲେଖା ସଂଗ୍ରହ କରାଗଲା । ସେଗୁଡ଼ିକୁ ସଜାଇ ସଙ୍କଳନରେ ପ୍ରକାଶ କରାଯିବାପାଇଁ ଉଦ୍ୟମ ହେଲା । କେତେ ଲୋକଙ୍କୁ ଲେଖା ପାଇଁ ଅନୁରୋଧ କରାଯାଇଥିଲା । କିଛି ଲୋକ ଦେଲେ, କିଛି ଦେଲେ ନାହିଁ । ତଥାପି ସଂକଳନଟି କୌଣସି ଗୁଣରୁ ଅପୂର୍ଣ୍ଣ ହେଲାନାହିଁ । ଗୁରୁବାବୁଙ୍କ ପରି ବ୍ୟକ୍ତିତ୍ୱର ସାମଗ୍ରିକ ଆକଳନପାଇଁ ଏହି 'ଗୁରୁ-କଲ୍ଲୋଳ' ପୁସ୍ତକ ଯେ ଏକ ପଥପ୍ରଦର୍ଶକ ହେବ, ଏକଥା କହିଲେ ସତ୍ୟର ଅପଳାପ ହେବନାହିଁ ।

ମଣିଷର ଜୀବନ ଅପୂର୍ଣ୍ଣ । ତଥାପି ସେହି ଜୀବନରେ ଅଛି ଅପୂର୍ଣ୍ଣତା ଭିତରେ ପୂର୍ଣ୍ଣତାର ଦୀପ୍ତି । ସେହି ପୂର୍ଣ୍ଣତା ପାଇଁ ଯୁଗ ଯୁଗ ଧରି ମଣିଷର ଅତନ୍ଦ୍ର ସାଧନା । ପୂର୍ଣ୍ଣତା ମିଳୁନାହିଁ । ମିଳିଗଲେ ତ ଆଉ ସାଧନାର ଲୋଡ଼ା ହୁଅନ୍ତା ନାହିଁ । ସେହି ପୂର୍ଣ୍ଣକୁ ଜାଣିବା ପାଇଁ ସାହିତ୍ୟର ସୃଷ୍ଟି, ଗତି ଓ ବିକାଶ । ଗୁରୁବାବୁ ଏଇ ପୂର୍ଣ୍ଣତାର ସନ୍ଧାନୀ । ଆମେ ଏପରି ଜଣେ ନମ୍ର ଶ୍ରଦ୍ଧାଶୀଳ ଜାତିପ୍ରାଣ କର୍ମତାପସ ସାରସ୍ୱତ ସ୍ରଷ୍ଟାଙ୍କ ବ୍ୟକ୍ତିତ୍ୱ ଓ ସାରସ୍ୱତ ସୃଷ୍ଟି ସମ୍ପର୍କରେ ବିଜ୍ଞ ବ୍ୟକ୍ତିମାନଙ୍କ ସହଯୋଗରେ ଏହି ସଂକଳନଟିକୁ ଆଲୋକକୁ ଆଣିପାରିଥିବାରୁ ଅତ୍ୟନ୍ତ ଆନନ୍ଦିତ । ଆମର ଆଶା ଓ ବିଶ୍ୱାସ ଏହି ସଂକଳନଟି ପାଠକମାନଙ୍କୁ ଆନନ୍ଦପ୍ରଦାନ କରିବାରେ ସମର୍ଥ ହେବ । ଯେଉଁ ବନ୍ଧୁମାନେ ଏହି ସଂକଳନର ଆଲୋକସଂଦର୍ଶନ ପାଇଁ ନାନା ଭାବରେ ଉତ୍ସାହ ପ୍ରଦାନ କରିଅଛନ୍ତି ସମସ୍ତଙ୍କୁ ଏହି ଅବସରରେ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛୁ ।

**ବୈଷ୍ଣବ ଚରଣ ସାମଲ**
ଅବସରପ୍ରାପ୍ତ ପ୍ରଫେସର,
ବିଶ୍ୱଭାରତୀ, ଶାନ୍ତି ନିକେତନ ।

# ସୂଚୀ

## ସାହିତ୍ୟ କୃତି : ଉପନ୍ୟାସ



## କ୍ଷୁଦ୍ରଗଳ୍ପ



## ପ୍ରବନ୍ଧ ସାହିତ୍ୟ



## ଭ୍ରମଣ ସାହିତ୍ୟ



## ବୈଷୟିକ ସାହିତ୍ୟ





# ଏକ ସଫଳ ବ୍ୟକ୍ତିତ୍ୱ

ଶ୍ରୀ ବିପିନ ବିହାରୀ ଦାସ ବାବାଜୀ

ଆନନ୍ଦର ଆକାଙ୍କ୍ଷା ମନୁଷ୍ୟର ସହଜାତ । ଏହି ଆନନ୍ଦ ଲାଭପାଇଁ ମନୁଷ୍ୟ ଐହିକ ଦୈହିକ ନାନାଦିକର୍ମରେ ପ୍ରବୃତ୍ତ ହୁଅନ୍ତି । ଭାରତୀୟ ଧର୍ମ ଓ ଦର୍ଶନ ଧାରାରେ କର୍ମକୁ ଦୁଇଭାଗରେ ବିଭକ୍ତ କରାଯାଇଛି – ପ୍ରବୃତ୍ତି ଓ ନିବୃତ୍ତି ।

ପୂର୍ବଜନ୍ମର କର୍ମଫଳ ଅନୁସାରେ ମନରେ ପ୍ରବୃତ୍ତି ଜନ୍ମନିଏ ଓ ଇନ୍ଦ୍ରିୟମାନେ ତାକୁ କାର୍ଯ୍ୟକାରୀ କରନ୍ତି । ଇନ୍ଦ୍ରିୟ ସୁଖକର କାର୍ଯ୍ୟରେ ହିଁ ମନର ଅଭିନିବେଶ ଘଟେ । ଯେ ପର୍ଯ୍ୟନ୍ତ ଇନ୍ଦ୍ରିୟ ସୁଖକର କାର୍ଯ୍ୟରେ ମନୁଷ୍ୟ ନିଜକୁ ନିୟୋଜିତ କରିଥିବ ସେ ପର୍ଯ୍ୟନ୍ତ ମନ ଓ ଇନ୍ଦ୍ରିୟ ଉପରେ ଯେଉଁ ଅଖଣ୍ଡ ଆନନ୍ଦମୟ ଅନୁଭୂତି ରହିଛି ତାର ସୀମା ମଧ ସ୍ପର୍ଶ କରି ପାରିବ ନାହିଁ । ଉଭୟରେ ଆନନ୍ଦ ମିଳିଲେ ମଧ ତାହା ଏକା ପ୍ରକାରର ନୁହେଁ । ଇନ୍ଦ୍ରିୟସୁଖର ଆନନ୍ଦ କ୍ଷଣସ୍ଥାୟୀ ଓ ପରିଣାମରେ ଦୁଃଖଦାୟକ । ମାତ୍ର ଅତୀନ୍ଦ୍ରିୟ ଆନନ୍ଦ ଶାଶ୍ୱତ ଓ ପରିଣାମରେ ଅଖଣ୍ଡ ଆନନ୍ଦ ଦେଇଥାଏ । ଏହି ଇନ୍ଦ୍ରିୟଗ୍ରାହ୍ୟ-କର୍ମ ଓ ଚିନ୍ତାକୁ ଆଧାର କରି ଅତୀନ୍ଦ୍ରିୟ ରାଜ୍ୟରେ ପ୍ରବେଶ କରିବାକୁ ପଡ଼ିଥାଏ । ଆଉ ଯେଉଁମାନେ ତାହା କରନ୍ତି ସେହି ମାନେହିଁ ମହାମାନବ । କର୍ମଦ୍ୱାରା ନିଷ୍କାମ ହୋଇ ଓ କ୍ରମାନ୍ୱୟରେ ମନକୁ ଅତିମାନସ ଭୂମିରେ ସ୍ଥାପନ କରି ପାରିଲେ ତାର କର୍ମଫଳର ବିନାଶ ହୁଏ ଓ ବିକାଶ ହୋଇଥାଏ ବିବେକର । ସାର୍ଥକ ଓ ସଫଳ ହୁଏ ମନୁଷ୍ୟ ଜନ୍ମ । ନିଃସ୍ୱାର୍ଥ କର୍ମ ହିଁ ଏହାର ପ୍ରାଥମିକ ସାଧନା – ଓ ସିଦ୍ଧି ହେଉଛି ଆଧାତ୍ମିକ ଈଶ୍ୱରାନୁଭୂତି ।

ଆଦରଣୀୟ ଗୁରୁପ୍ରସାଦ ମହାନ୍ତିଙ୍କ କର୍ମରଧାରା ଓ ଜୀବନଶୈଳୀକୁ ଗଭୀର ଭାବରେ ଅନୁଧାନ କଲେ ସହଜରେ ଜଣାଯାଏ ସେ ହେଉଛନ୍ତି ଏହି ପରି ଏକ ସଫଳ ଜୀବନର ଅଧିକାରୀ । ସାଂସାରିକ ଜୀବନରେ ସେ ଉଚ୍ଚ ଶିକ୍ଷିତ ଓ ପେଶାରେ ତାଙ୍କ ବିଭାଗର ସର୍ବୋଚ୍ଚ ପଦବୀରେ ଅଧିଷ୍ଠିତ ହୋଇ ଅବସର ନେଇଛନ୍ତି । ଏସବୁ କର୍ମବହୁଳ ଜୀବନରେ ରହି ମଧ ସାହିତ୍ୟ ସାଧନା ଯେପରି ତାଙ୍କ ସହଜାତ, ତାଙ୍କର ଭାବନା ସେହିପରି ଉଚ୍ଚ ଏବଂ ତାଙ୍କ ଲେଖାର ଶବ୍ଦବିନ୍ୟାସ ମଧ ସେଭଳି ଉଚ୍ଚରୁଚିସମ୍ପନ୍ନ । ବହୁ ପୁସ୍ତକର ରଚୟିତା ସେ । ଶିକ୍ଷା, ଚାକିରୀ ଓ ସାହିତ୍ୟସାଧନା ତାଙ୍କୁ ସମାଜରେ

ଉଚ୍ଚସମ୍ମାନର ଅଧିକାରୀ କରିଥିଲେ ମଧ ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ନିଜକୁ ନୟୋଜିତ କରି ମାତୃଭୂମି ଓ ମାତୃଭାଷାର ସୁରକ୍ଷା ଓ ପ୍ରସାର ଦିଗରେ ତାଙ୍କର ନିରଳସ ନିଃସ୍ୱାର୍ଥ ପ୍ରଚେଷ୍ଟା ତାଙ୍କ ନିଷ୍କାମ କର୍ମ ସାଧନାର ଅମଳିନ ନିଦର୍ଶନ ।

ସାଲିସ ବିହୀନ ଚିନ୍ତାଧାରା ସହିତ ତାଙ୍କର ନମ୍ର ବିନୟ ବ୍ୟବହାର ତାଙ୍କୁ ଏ କାର୍ଯ୍ୟରେ ମହାନ୍ କରି ତୋଳିଛି ଏଥିରେ ସନ୍ଦେହ ନାହିଁ ।

ତାଙ୍କ ଜୀବନଧାରାର ଅନ୍ୟ ଏକ ଉଜ୍ଜ୍ୱଳ ଦିଗ ହେଲା ସତ୍‌ସଙ୍ଗରେ ରୁଚି ଓ ଆଧ୍ୟାତ୍ମିକତାରେ ଗଭୀର ଅଭିନିବେଶ । ଏହାହିଁ ମନୁଷ୍ୟକୁ ସୁନ୍ଦର ସରସ ଓ ସର୍ବାଦରଣୀୟ କରେ । ମହାତ୍ମାଗାନ୍ଧିଙ୍କଠାରୁ ଆରମ୍ଭ କରି ଉତ୍କଳମଣି ଗୋପବନ୍ଧୁଙ୍କ ପର୍ଯ୍ୟନ୍ତ ସମସ୍ତେ ଥିଲେ ନିଷ୍କାମକର୍ମ ସହିତ ଆଧ୍ୟାତ୍ମିକତାର ସଚେଷ୍ଟ ଅଧିକାରୀ । ସେଇଥିପାଇଁ ସେମାନଙ୍କ କର୍ମ ସମାଜର ମଙ୍ଗଳସାଧନ କରିଛି ଓ ସେମାନେ ସ୍ମରଣୀୟ ହୋଇ ରହିଛନ୍ତି ଜନସମାଜରେ ।

ଆଦରଣୀୟ ଗୁରୁପ୍ରସାଦ ମହାନ୍ତି ଏ ଦିଗ ପ୍ରତି ଯଥେଷ୍ଟ ସଚେତନ ତଥା ସଚେଷ୍ଟ ଥିବାକଥା ସ୍ପଷ୍ଟ ଜଣାଯାଏ ତାଙ୍କ କର୍ମଧାରାରୁ । ସେ ଦିଗରେ ସେ କୃତକାର୍ଯ୍ୟ ହୁଅନ୍ତୁ । ତାଙ୍କର ଚିନ୍ତା ଓ ଚେତନା ଅଧିକରୁ ଅଧିକ ପରମାର୍ଥ ପୁଷ୍ଟ ହେଉ – ଏହା ହିଁ ଶ୍ରୀ ଜଗନ୍ନାଥଙ୍କ ଶ୍ରୀ ଚରଣରେ ପ୍ରାର୍ଥନା ।

*ସମ୍ପାଦକ, ନୀଳାଚଳ ମାଧୁରୀ, କଳ୍ପତରୁ ଆଶ୍ରମ, କଟକ*



# ଗୁରୁପ୍ରସାଦଙ୍କୁ ମୁଁ ଯେପରି ଜାଣେ

ଚନ୍ଦ୍ର ଶେଖର ଦାସ

ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କ ଲେଖା ବିଷୟରେ କିଛି କହିବା ଆଗରୁ, ତାଙ୍କ ବିଷୟରେ କେଇପଦ କହିବି ।

ଆପଣମାନେ ଯେଉଁ ଗୁରୁପ୍ରସାଦଙ୍କୁ ଲେଖକ-ବନ୍ଧୁଟିଏ ବୋଲି ଜାଣନ୍ତି, ମୁଁ ତାଙ୍କୁ ତାଙ୍କ ବାପା, ବୋଉ ଓ 'ଗୋରୀ ମା' (ସାଁନ୍ତ ମା')ଙ୍କ ଅତି ଆଦରର 'ବୁଢୁ' ବୋଲି ପିଲାଟି ଦିନ୍ରୁ ଜାଣେ । ଗାଁ ଦାଣ୍ଡ ଆମ୍ବ-ତୋଟା ସେପଟେ ଥିବା ପ୍ରାଥମିକ ବିଦ୍ୟାଳୟକୁ ସେ ଯିବା ଆଗରୁ ତାଙ୍କୁ ଜାଣେ ।

ଦେବୀନଈ କୂଳରେ, କଟକ ଜିଲ୍ଲାର ଜଗତ୍‌ସିଂହପୁରଠାରୁ ପାଞ୍ଚକିଲୋମିଟର ଦୂର ଆଳିପିଙ୍ଗଳ ଗାଁରେ, ୧୯୩୮ ମସିହା, କୁମାରୋତ୍ସବ ଦିନ ତାଙ୍କର ଜନ୍ମ । ସାଁନ୍ତ ବାପା ୰ ନାରାୟଣ ପ୍ରସାଦ ମହାନ୍ତି । ପୂର୍ବତନ ବିହାର-ଓଡ଼ିଶା ପ୍ରଦେଶ ସ୍ତରରେ, ଶିକ୍ଷା ବିଭାଗରେ ଜଣେ କର୍ତ୍ତବ୍ୟନିଷ୍ଠ, ସଚ୍ଚୋଟ ନାଁ-ଡାକ ହାକିମ । ସେ ଥିଲେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ପ୍ରଧାନ ଶିକ୍ଷକ । ବାପା ୰ ରାମଚନ୍ଦ୍ର ମହାନ୍ତି, ଜମିଦାର । ବୋଉ, ୰ ଆଦରମଣି ଦେବୀ ଜଣେ ସୁଗୃହିଣୀ ।

ତଉଲ ତାଉଲ, ଗୋରା ତକ ତକ, ଗଣ୍ଡି ମୋଟିଆ ଚେହେରା, ବେକରେ ତୁଳସୀ ମାଳି । ଭସା ଭସା ଆଖିରେ ନିରୀହ ଚାହାଣୀ । ମୁହଁରେ ସବୁବେଳେ ମଲ୍ଲି-ଫୁଲିଆ ମୁଚୁ ମୁଚୁ ହସ । ଧୀର-ସ୍ଥିର, ଶାନ୍ତ-ସୁଧାର ପିଲାଟିଏ 'ବୁଢୁ' । ସବୁତକ ପାଠ ପିଇଯିବା ପାଇଁ ଆଉରି ବହୁତ ପଢ଼ିବା ପାଇଁ, ଅନେକ କଥା ଜାଣିବା ପାଇଁ, ଜୀବନରେ ଭଲ ଆଉ ବଡ଼ ହେବା ପାଇଁ ଭାରି ଝୁଙ୍କ୍ । ଭାରି ଧୈର୍ଯ୍ୟ । ସର୍ବସହଣୀ ପିଲାଟିଏ । ଅଭଙ୍ଗା ମନୋବଳ । ନିଜ ଉପରେ ଅଖଣ୍ଡ ବିଶ୍ୱାସ । ଗୁରୁଜନ, ଶିକ୍ଷକ, ବାପା-ମାଙ୍କ ପ୍ରତି ଯଥାଯଥ ସମ୍ମାନ । ଦିଅଁ-ଦେବତା ଆଉ ବିଶେଷ କରି କୂଳ-ଦେବତା ଗୋପାଳଜୀଉଙ୍କ ଠାରେ ଅଚଳାଚଳ ଭକ୍ତି ।

ଗୁରୁପ୍ରସାଦଙ୍କ ଜନ୍ମ-ମାଟି, ତାଙ୍କର ଛୋଟ ଗାଁଟିର ପ୍ରାକୃତିକ ଦୃଶ୍ୟ, ପରିବେଶ ସତରେ ସୁନ୍ଦର । ସ୍ୱଚ୍ଛ-ସଲୀଳା 'ଦେବୀ ନଈ' କୋଳରେ ଅସ୍ତ ସୂର୍ଯ୍ୟର ରଙ୍ଗ, ବାଲିଘାଇ ଯୋର ଓ ସପେଇ ନାଳ ପାଣିର ଚହଲା ଢେଉରେ ଉଦ୍ଭୀଆନ୍ ସୂର୍ଯ୍ୟର ଅପୂର୍ବ ଆଭା, କାଚକେନ୍ଦୁ ପାଣିଭର୍ତ୍ତି ନୀଳ କଇଁ ଫୁଲଫୁଟା ଦାଣ୍ଡ ପୋଖରୀ, ପୋଖରୀ ହୁଡ଼ା ସେପଟେ ମୂକ, ମଉନ ଝଙ୍କାଳିଆ ବାଟ-ବର, ଧୂ ଧୂ ନିଛାଟିଆ ଖରାବେଳେ ଦାଣ୍ଡ ଆଗରେ କମନୀୟ କୃଷ୍ଣଚୂଡ଼ାର ନାଲି ହସ ଆଉ ଝର ଝର ବରଷାର ଶ୍ରାବଣୀ ସନ୍ଧ୍ୟାରେ କେଳି କଦମ୍ବର ମହକ, କିଶୋର ଗୁରୁପ୍ରସାଦଙ୍କର ମନତଳ ମହକେଇ ଦିଏ । ଲେଖକ ହେବା ପାଇଁ, ସତେ ଅବା, ତାଙ୍କ ମନ-ଗହୀରରେ ଅନ୍ତରୀଣ ଧାରାଟିଏ ଚହଲି ଉଠେ ।

ଗୁରୁପ୍ରସାଦ ମ୍ୟାଟ୍ରିକ୍ ଓ ଆଇ.ଏସ୍‌ସି. ପରେ, ଉତ୍କଳ ବିଶ୍ୱବିଦ୍ୟାଳୟରୁ ଭେଟିନାରୀ ସାଇନ୍ସ ଓ ଆନିମାଲ୍ ହଜବ୍ୟାଣ୍ଡ୍ରିରେ ବି.ଭି.ଏସ୍‌ସି. ପାସ୍ କରି, ରାଉରକେଲା ଓ ବଣେଇରେ କେଇଦିନ ପାଇଁ ପଶୁ ଡାକ୍ତର ରୂପେ ଚାକିରୀ କରନ୍ତି । Optimist, ambitious ଗୁରୁ ପ୍ରସାଦଙ୍କୁ ପଶୁ-ଡାକ୍ତରୀ ଭଳି କ୍ଷୁଦ୍ର ପରିସର, ବେଶୀ ଦିନ ବାନ୍ଧି ରଖି ପାରେନି । ମାତ୍ର ଅଢ଼େଇ ବର୍ଷ ଚାକିରୀ ପରେ ଅଚାନକ ଦିନେ ସିଏ ଆମେରିକା ଚାଲିଯା'ନ୍ତି । ସେଠି ଏମ୍.ଏସ୍. ଓ ପି.ଏଚ୍‌ଡ଼ି. କରି ନିଜ ଦେଶକୁ ପୁଣି ବାହୁଡ଼ି ଆସନ୍ତି ।

ଉଚ୍ଚାକାଂକ୍ଷା, ଶକ୍ତ ମନୋବଳ ଓ ଅତୁଟ ଈଶ୍ୱର ବିଶ୍ୱାସକୁ ପୁଞ୍ଜିକରି, ଅହରହ, ସାଲିସ୍‌ବିହୀନ ସଂଗ୍ରାମ ପଥରେ ଆଗେଇ ଗଲେ, ଏକନିଷ୍ଠ ସାଧକ କେମିତି ତାଙ୍କ ସାଧନା ଓ ସିଦ୍ଧିର ଶୀର୍ଷରେ ପହଞ୍ଚି ପାରନ୍ତି, ତାଙ୍କ ମୁଣ୍ଡରେ କେମିତି ସଫଳତାର ସୁନା କଳସ ଛାଁ କୁ ଛାଁ ଅଜାଡ଼ି ହୋଇ ପଡ଼େ, ତା'ର ଅନୁପମ ଉଦାହରଣ ନିଜେ ସେଇ ସଂଗ୍ରାମୀ ଯୁବକ ଗୁରୁପ୍ରସାଦ । ଅମୃତ-ସନ୍ଧାନ ଆଶାରେ ଆକଣ୍ଠ ବିଷପାନ କରିଥିବା ନୀଳକଣ୍ଠଙ୍କ ଭଳି, ଅନ୍ଧାରକୁ ପୋଷ ପୋଷ କରି ଶୋଷିନେଇ ଆସନ୍ତାକାଲିର ଅପୂର୍ବ ପୂର୍ବାଶାର ଆଶାରେ ଅପେକ୍ଷାରତ ସେଇ ଅଜବ ବିରଳ ମଣିଷ ଅମୃତର ସନ୍ତାନ ଗୁରୁପ୍ରସାଦ । କବି ଜାନକୀ ବଲ୍ଲଭ ପଟ୍ଟନାୟକ 'ସିନ୍ଧୁ ଉପତ୍ୟକା'ରେ ସତେ ଅବା ଗୁରୁପ୍ରସାଦଙ୍କ ଉଦ୍ଦେଶ୍ୟରେ କେତୋଟି ଧାଡ଼ି ଲେଖିଛନ୍ତି;

''ଜୀବନେ ସଳିତା ପରି
ଉଠିବି ମୁଁ ଜଳି
ଘୁମନ୍ତ ରଜନୀ ବୁକୁ ଚିରି
ଜ୍ୟୋତି ଶିଖା
ଆଶାର ମୁଁ ଜାଗ୍ରତ ପ୍ରହରୀ ।''

ସେ ଚାହିଁଥିଲେ ସେଇ ଡଲାର ହାଉଯାଉ ଦେଶ କୁବେରପୁରୀ ଆମେରିକାରେ ଖୁସିରେ ନାଗରିକତ୍ୱ ନେଇ, ଆମ ଦେଶ ଅପେକ୍ଷା ଆଶାତୀତ ମୋଟା ଦରମା ପାଇ,

ଛୁଆ-ପିଲା ସହ ଆରାମରେ ରହି ପାରିଥାନ୍ତେ । ତାଙ୍କ subject ଉପରେ ଉତ୍ତରୋତ୍ତର ଅନୁଧାନ ଓ ଗବେଷଣା କରି ବିଶିଷ୍ଟ ଆସନର ଅଧିକାରୀ ହୋଇଥାନ୍ତେ । କୋଠା, କାର, ଡଲାର, ବ୍ୟାଙ୍କ ବାଲାନ୍ସ୍, ପ୍ରତିପତ୍ତି ସବୁ ଭରପୁର ହୋଇ ରହିଥାଆନ୍ତା । ଆମେରିକା ମଧ୍ୟ ଚାହେଁ ସେମିତି ବିଶିଷ୍ଟ ବୈଜ୍ଞାନିକ ଓ ବୁଦ୍ଧିଜୀବୀମାନଙ୍କୁ ସବୁଦିନ ପାଇଁ କୋଳେଇ ନେବାକୁ ।

ଜନ୍ମ-ମାଟିର ମାୟା ତାଙ୍କୁ ଓଟାରି ଆଣେ । ନିଜ ଦେଶରେ ଚାକିରୀ ଜୀବନରେ ପୁଣି ସଂଘର୍ଷ । ଅନେକ ବାଧା ବିଘ୍ନ । ତାଙ୍କର ଯୋଗ୍ୟତା ଅନୁସାରେ ସିଏ କେବେଠାରୁ ପଶୁପାଳନ ବିଭାଗର ପରିଚାଳକ (ନିର୍ଦ୍ଦେଶକ) ଆସନରେ ବସିବା ଲୋକ । ସେ କଥା କିନ୍ତୁ ହୁଏନି । ହିଂସା, ଈର୍ଷା, ଅସହଣି ଭାବ, ପରଶ୍ରୀକାତରତା ଓ ଅବିଚାରର ବହଳ ଚେର ଏ ମାଟିର ବହୁତ ତଳକୁ ଲମ୍ବି ଲମ୍ବି ଯାଇଛି । ଏ ଦେଶରେ ଭିନ୍ନ ମାପକାଠିରେ ଗୁଣି ଲୋକର ଗୁଣ ଓ ଯୋଗ୍ୟ ବ୍ୟକ୍ତିର ଯୋଗ୍ୟତା ମାପ କରାଯାଏ । ସେଥିକି ତାଙ୍କର ଭ୍ରୂକ୍ଷେପ ନାହିଁ । 'ଗୀତା' ପରା ସତତ ଶିକ୍ଷା ଦେଉଛି, ଠିକଣା ଭାବେ କର୍ତ୍ତବ୍ୟ କରିଯାଅ । ଫଳ ପାଇଁ ଆଶା ରଖ ନାହିଁ । ଗୁରୁପ୍ରସାଦ ଚାକିରୀ ଜୀବନର ଫୁରସତ ସମୟତକ ଲେଖାଲେଖିରେ ମନ-ମୂନ ଦେଇ ଲାଗି ପଡ଼ନ୍ତି । କିନ୍ତୁ ଚାକିରୀ ଜୀବନର ଗୁରୁ ଦାୟିତ୍ୱ ଓ ଲେଖାଲେଖି କେହି କାହା ବାଟରେ ଠିଆ ହେବାକୁ ସୁଯୋଗ ପାଆନ୍ତିନି । ଉପଯୁକ୍ତ ଭାରସାମ୍ୟ ରକ୍ଷା କରନ୍ତି । ତାଙ୍କ ଲେଖା 'ସାଲବେଗର ଅଶ୍ରୁ', 'କହେ ସାଲବେଗ ହୀନ' ଓ 'ପାତାଳପୁରୀର ହାଲାଚାଲ' ମୁଁ ପଢ଼ିଛି ।

ଏବେ ସେଇ 'ପାତାଳ ପୁରୀର ହାଲଚାଲ' ବିଷୟରେ କିଛି କହିବି । ଗୁରୁପ୍ରସାଦଙ୍କର ଏଇ ଭ୍ରମଣ କାହାଣୀଟି ପଢ଼ିବା ଆଗରୁ ଆଉ କେତେ ଲେଖକଙ୍କର ଭ୍ରମଣ କାହାଣୀ ପଢ଼ିବାର ସୁଯୋଗ ପାଇଛି । ଶ୍ରୀହର୍ଷ ମିଶ୍ର, ବାରିଷ୍ଟର ଗୋବିନ୍ଦ ଦାସ ପ୍ରଭୃତିଙ୍କର ଭ୍ରମଣ କାହାଣୀ, ବେଶ୍ ଉପାଦେୟ ଓ ଶିକ୍ଷଣୀୟ ହେଲେ ବି, ସେଗୁଡ଼ିକ ମୋତେ କେମିତି ବର୍ଷ, ମାସ, ତାରିଖ ବହନ କରିଥିବା ଦିନ-ଲିପି (ଡାଏରୀ) ଭଳି ଲାଗେ ।

କେବଳ ବହିଟିଏ ତ ନୁହେଁ ସତେ ଅବା ଗିରିକନ୍ୟା, ସ୍ୱଚ୍ଛ-ନୀରା ନିର୍ଝରିଣୀଟିଏ । ପାତାଳଫୁଟା 'ପାତାଳପୁରୀ'ର, ସେ ଜାତିର ଜୀବନ-ସଙ୍ଗୀତ କୁଳୁ କୁଳୁ ତାନରେ ଗାଇ ଯାଉଛି । ସଙ୍ଗୀତ ଛଳରେ ଜିରାରୁ ଶିରା ପର୍ଯ୍ୟନ୍ତ ସବୁ କଥା ଟିକି ନିଖି କହି ଦେଇ ଯାଉଛି । କିନ୍ତୁ କେବେହେଲେ ଧରାବନ୍ଧା ଗତାନୁଗତିକ ଦିନ-ଲିପିର ଦୀନତା ଭିତରେ ଅବା ଅତିଶୟ ଉକ୍ତିର ମରୁପଥରେ ଅଟକି ଯାଇନି । ଛନ୍ଦ-ଛଡ଼ା, ପଥ-ହରା ହୋଇନି । ସହଜ, ସରଳ, ଶ୍ରୁତି ମଧୁର ତାର ସ୍ୱର, ତା'ର ଭାଷା । ସାବଲୀଳ ତା'ର ଭଙ୍ଗୀ । ସେଇ ନିଜସ୍ୱ ଭାଷା ଓ ଭଙ୍ଗୀରେ ସିଏ ଛଳ ଛଳ, ସମୁଜ୍ଜ୍ୱଳ, ସମୃଦ୍ଧ ।

ତଥ୍ୟଭିତ୍ତିକ, ବାସ୍ତବଧର୍ମୀ ମେଲାଖୋଲା ବହିଟିଏ । An open book ବିଶ୍ୱର ଏକ ବିରାଟ ଗଣତନ୍ତ୍ର ରାଷ୍ଟ୍ର ଆମେରିକାର ଚାରୁଚିତ୍ରପଟ, ସାମାଜିକ ପରିବେଶ, ଚଳଣି, ସେ ଲୋକଙ୍କର ମୁକ୍ତ, ମୁକୁଳା, ସରଳ-ମନ, ତାଙ୍କର ନୀତି-ନିୟମ, ଆଇନ-ଶୃଙ୍ଖଳା, କର୍ତ୍ତବ୍ୟନିଷ୍ଠା, ଦାୟିତ୍ୱବୋଧ, ପ୍ରତିଟି ମୁହୂର୍ତ୍ତ ସମୟର ସଦୁପଯୋଗ, ତାଙ୍କର ସତ୍ୟବାଦିତା, ସାଧୁତା, ସଙ୍କୋଚପଣିଆ ଓ ପରୋପକାର ମନୋବୃତ୍ତି, ବିଶେଷକରି ସାମଗ୍ରିକ ଭାବେ ଅଖଣ୍ଡ ଆମେରିକା ଦେଶ ଓ ଜାତି ପାଇଁ ତାଙ୍କର ଅତୁଟ ମମତା, ଆଉ ସେ ଜାତିର ମହାନ୍ ଜାତୀୟ-ଚରିତ୍ର ସମ୍ବଳିତ ବିଷୟବସ୍ତୁ ଏବଂ ସେ ଦେଶ ସହିତ ଆମର ଏବର ଏଇ ହତଶ୍ରୀ, ହତଭାଗ୍ୟ, ତଥାକଥିତ ଗଣତନ୍ତ୍ର ଦେଶର ଦୟନୀୟ ପରିସ୍ଥିତିର ତୁଳନାତ୍ମକ ଉପସ୍ଥାପନା; ମନ ଆଇନାରେ ପୃଷ୍ଠା ପରେ ପୃଷ୍ଠା ଆପେ ଆପେ ମେଲି ହୋଇଯାଏ । ଥରେ ଆରମ୍ଭ କଲେ, ଶେଷ ନ କଲା ଯାଏ ମନର ଓରିମାନା ମେଣ୍ଟେନା । ଲେଖକଙ୍କର ଲେଖାର ବାହାଦୁରୀ, ଚମତ୍କାରିତା ସେଇଠି ।

"ଆମ ଦେଶ ଭଳି, ସେ ଦେଶରେ ବି ଛବିଳ ବସନ୍ତ ଆସେ । ବସନ୍ତ ହିଲ୍ଲୋଳରେ ପ୍ରଫୁଲ୍ଲିତ ନୀଳ-ଦୂର୍ବାଦଳ ଆଉ ସାବ୍‌ଜା ସାବ୍‌ଜା ଗଛ-ଲତାରେ ଅସୁମାରି କିଶଳୟ, କୋରକ ଖୁନ୍ଦି ହୋଇଯାଏ । ଆମ କୁମ୍ଭାଟୁଆ ଭଳି, ସେଠିକାର ଲମ୍ବ-ଲାଞ୍ଜୀ ଚଢ଼େଇ, ଆଉରି କେତେ କିସମର ରଙ୍ଗୀନ୍ ଚଢ଼େଇର ମୃଦୁ ଗୁଞ୍ଜନରେ ଚାରିଆଡ଼ ଗୁଞ୍ଜରି ଉଠେ । 'ମିଓ୍ୱାକୀ' ହ୍ରଦ କୂଳରେ ଉଷୁମ ସୁନା-ଖରା ପୋଇଁବାକୁ ଭିଡ଼ ଜମେ ।

ବସନ୍ତ ଆସିଲେ ମଧ୍ୟାହ୍ନ-ସୂର୍ଯ୍ୟର ଉଜ୍ଜଳ କିରଣରେ ବରଫସବୁ ତରଳିବାକୁ ଆରମ୍ଭ କରେ । ଫୁଟ୍-ପାଥ୍, ରାସ୍ତାକଡ଼ର ସବୁ ଡ୍ରେନ୍‌ରେ ପାଣିର ସୁଅ ଛୁଟେ । ତଥାପି ତ ଘରଦ୍ୱାର, ଗାଈ, ଗୋରୁ, ମଣିଷ କାହାର କିଛି କ୍ଷତି ହୁଏ ନାହିଁ । ବନ୍ୟା, ବନ୍ୟା ବୋଲି ଚହଳ ପଡ଼ିଯାଏନି କି ଖବର କାଗଜ ଗୁଡ଼ିକର ମୁଖ୍ୟଧାଡ଼ିରେ କ୍ଷୟକ୍ଷତି ବାବଦରେ କିଛି ଲେଖା ବାହାରେନି । ଏତେ ପାଣି କୁଆଡ଼େ ଯାଏ ବୋଲି ପଚାରିବାରୁ 'ଜିମ୍ ଇଗେନ୍' ଲେଖକଙ୍କୁ କହନ୍ତି, 'ବିଗ୍‌ସୁ' ଓ 'ରକ୍' ବୋଲି 'ମିସୌରୀ' ନଈର ଦୁଇଟି ଉପନଈରେ ସବୁତକ ପାଣି ଚାଲିଯାଉଛି । ଇଏ କେବଳ 'ବୃକିଂସ କାଉଣ୍ଟି'ର କିଛି ଅଂଶ । ଏମିତି ଶତାଧିକ ରାଜ୍ୟ ମିଶିଗଲେ ଭାରତବର୍ଷର ତିନିଗୁଣ ହେବ । ଏତେ ପାଣି ଏକାବେଳେକେ ଗୋଟିଏ ନଈରେ ଗଲେ ଘରଦ୍ୱାର, ସହର ବଜାର ସବୁ ଭସେଇ ସମୁଦ୍ରରେ ପକେଇ ଦିଅନ୍ତା । ମାତ୍ର ଜାଗାକୁ ଜାଗା ବଡ଼ ବଡ଼ ଜଳ ଭଣ୍ଡାର ମାନ କରି, ପାଣି ଅଟକେଇ, ବିଦ୍ୟୁତ୍ ଉତ୍ପାଦନରେ ବିନିଯୋଗ କରାଯାଉଛି । କେବଳ ମିସୌରୀ ନଈରେ ତେରଟି ବଡ଼ ବଡ଼ ଜଳ-ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର । ସେଥିପାଇଁ ସେ ଦେଶରେ ଏତେ ଶସ୍ତାରେ ବିଜୁଳି ଯୋଗାଣ ସମ୍ଭବ ହେଉଛି ।

ଆଉ ଆମ ଦେଶରେ ବର୍ଷାଦିନେ ବେଙ୍ଗ ମୂତିଲେ ପାଣି । କେଉଁବର୍ଷ ଦଳେଇ ଘାଇ ଭାଙ୍ଗିଲାଣି ତ କେଉଁ ବର୍ଷ ବିଂଝାରପୁର ଘାଇ ଭାଙ୍ଗିଲାଣି । ହୀରାକୁଦ ବନ୍ଧ କଥା ନ କହିଲେ ଭଲ । ବଢ଼ି, ବନ୍ୟା, ମରୁଡ଼ି ଆମର ଚିର ସହଚର । ସେ ଦେଶର ପିଲାଏ ପାଠପଢ଼ା ସାଙ୍ଗ ସାଥି ଜୀବନକୁ ବି ବେଶ୍ ଉପଭୋଗ କରନ୍ତି । ସେଥିପାଇଁ କହନ୍ତି, ''ଆରେ ବସନ୍ତ ଋତୁଟାକୁ ଉପଭୋଗ କର ।........ ସୋମବାରଠାରୁ ଶୁକ୍ରବାର ଯାଏ, ପାଞ୍ଚଦିନ ଯେତେ ଗବେଷଣା କରୁଛ ମନା ନାହିଁ; ହେଲେ ଶନିବାର, ରବିବାର ଦୁଇଦିନ ପ୍ରକୃତିକୁ ଉପଭୋଗ କର । ବସନ୍ତ କାଳ ଚାଲି ଯାଉଛି ।''

ସେ ଦେଶରେ ମନ ଦେଇ ପାଠ ପଢ଼ା ସାଥିରେ ଜୀବନକୁ ବେଶ୍ ଉପଭୋଗ କରନ୍ତି ପିଲାଏ ।

ଛୁଟି ଦିନ ମାନଙ୍କରେ ଛାତ୍ରଛାତ୍ରୀ ଦଳ ଦଳ ହୋଇ ଦୁଇଶହ, ତିନିଶହ କିଲୋମିଟର ପରିକ୍ରମା କରନ୍ତି । ବଲ୍‌ଡେନ୍ସ, ମଦ୍ୟଶାଳା, ସଙ୍ଗୀତ ଆସର, ଡ୍ରାଇଭ୍‌ଇନ୍ ସିନେମା ଭିତରେ ସେଠିକା କିଶୋର-କିଶୋରୀ, ଯୁବକ-ଯୁବତୀ ଜମାରୁ ଲକ୍ଷ୍ୟଭ୍ରଷ୍ଟ ହୁଅନ୍ତିନି । କିଏ ଡାକ୍ତର ହେବ, କିଏ ହେବ ଇଞ୍ଜିନିୟର, କିଏ କୃଷକ, କିଏ ନାଟ୍ୟକାର କିଏ ବା ଗାୟକ ଅଥବା ଭ୍ରମଣକାରୀ ସେଇ ଲକ୍ଷ୍ୟ ପଥରେ ଆଗେଇ ଯା'ନ୍ତି । ସେଥିପାଇଁ ନିଷ୍ଠାର ସହ ପାଠ ପଢ଼ନ୍ତି । କଠିନ ପରିଶ୍ରମ କରନ୍ତି । ମନ ଭିତରେ ଅଜସ୍ର ସଙ୍କଳ୍ପ ଓ ବିଶ୍ୱାସ । ଅର୍ଥର ଅଭାବ ନାହିଁ ସେ ଦେଶରେ । ପାଠ-ପଢ଼ା ଖର୍ଚ୍ଚ ପୂରାପୁରି ବହନ କରିବାକୁ ବ୍ୟାଙ୍କ୍ ଆଗେଇ ଆସେ ।

ଆମ ଦେଶରେ ?

ଶିକ୍ଷାଦାନ କ୍ଷେତ୍ରରେ ଡକ୍ଟର 'ଡ୍ରେସି'ଙ୍କ ଭଳି ନ୍ୟାୟବାନ୍, ସଚ୍ଚୋଟ ଅଧ୍ୟାପକ ଆମ ଦେଶରେ ନାହାନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଏକମାତ୍ର ଅଲିଅଳ ଝିଅ 'ସୁଜେନ୍'ର ସବୁ ଅସୁବିଧା ଜାଣି ସୁଦ୍ଧା, ପରୀକ୍ଷା ଖାତାରେ ତାକୁ ସନ୍ତୁଷ୍ଟ କଲାଭଳି ନମ୍ବର ଦିଅନ୍ତିନି । ଅଥଚ ଛାତ୍ର ଗୁରୁପ୍ରସାଦଙ୍କୁ ୧୦୦ରୁ ୯୦ ନମ୍ବର ଦିଅନ୍ତି । ସେ ଦେଶର ଶିକ୍ଷକମାନଙ୍କର ସ୍ଥାନ କେଉଁଠି ? ସେମାନେ ବିଦ୍ୟାର, ଗୁଣର କେମିତି ତାରିଫ୍ କରନ୍ତି ଓ ସେଥିପାଇଁ ଉଚିତ ମୂଲ୍ୟ ବି ଦିଅନ୍ତି । ଅସଲ ସଚ୍ଚା ବଣିଆ ସୁନାର ମୂଲ୍ୟ ବୁଝେ ଓ ତା'ର ଉପଯୁକ୍ତ ମର୍ଯ୍ୟାଦା ବି ଦିଏ । ସେ ଦେଶର 'ଯୋଶେଫ୍ ନେଲ୍‌ସନ୍' ଦୁଗ୍ଧ-ବିଜ୍ଞାନ ବିଭାଗର ଅଣ୍ଡର ଗ୍ରାଜୁଏଟ୍ ଛାତ୍ର କହେ, ''ପ୍ରଫେସରଙ୍କ ଅଜାଣତରେ ଭୁଲ କାମଟିଏ କରି ମୋତେ ଚର୍ଚ୍ଚକୁ ଯାଇ କନ୍‌ଫେସ୍ କରିବାକୁ ହିଁ ପଡ଼ିଥାନ୍ତା । ତେଣୁ ଫେଲ୍ ହେବି ପଛେ, ଅନ୍ୟାୟ କରିବି ନାହିଁ ।''

କପି କରି ପାସ୍ କରିବାକୁ, ଠକାମି, ଭଣ୍ଡାମିର ଆଶ୍ରୟ ନେବାକୁ, ଅନ୍ୟାୟ, ଅନୀତି କରିବାକୁ, ଆମେରିକା ପିଲାଙ୍କର କେତେ ଘୃଣା ।

ଆଉ ଆମ ଦେଶରେ କପି କରିବାଠାରୁ ଆରମ୍ଭ କରି ଶିକ୍ଷକମାନେ ସେଥିରେ ସହାୟକ ହେବା, ପ୍ରଶ୍ନର ଉତ୍ତର ବାହାରୁ ମାଇକ୍‌ରେ ଡାକି ଦେବା, ପରୀକ୍ଷା ଖାତାରେ ଫେଲ୍ ପିଲାଙ୍କୁ ବି ପ୍ରଥମ ଶ୍ରେଣୀ ମାର୍କ ଦେଇ ପାସ୍ କରେଇବା, ଇଏସବୁ ବେଶ୍ ଦେହସୁହା ହୋଇଗଲାଣି । ଦରକାର ପଡ଼ିଲେ ଛାତ୍ର ତା'ର ଦଳବଳ ନେଇ ଦିନ ଦି ପହରରେ ସମ୍ପୃକ୍ତ ଅଧ୍ୟାପକ ଅବା ଅଧ୍ୟକ୍ଷଙ୍କୁ ଛୁରା ମାରି ଆହତ କରିବା ଅବା ପ୍ରାଣ ନେବା, ଏ ସବୁ ଆମ ଦେଶରେ ମାମୁଲି କଥା ହୋଇଗଲାଣି ।

ଆମ ଦେଶର ହିନ୍ଦୁମାନେ ମଦ ମାଂସ ଖାଆନ୍ତି ନାହିଁ ବୋଲି ଆମେରିକା ବାସୀଙ୍କର ଆମ ଉପରେ କେଡ଼େ ଉଚ୍ଚ ଧାରଣା । କିନ୍ତୁ ଆମେ ଜାଣୁ ଆମ ଦେଶର ଘରେ ଘରେ କିମିତି ମଦ ମାଂସର ସୁଅ ଛୁଟେ । କେତେ ଜଣ ହିନ୍ଦୁ ମଦ ମାଂସ ନ ଖାଆନ୍ତି ?

ସେ ଦେଶରେ କିନ୍ତୁ ସେ ଭେଜାଲ କାମ ନାହିଁ । ମଦ ମାଂସ ଖାଇବା ଲୋକ ଖାଆନ୍ତି । କିନ୍ତୁ ସେ ଦେଶର ଶୁଦ୍ଧ କ୍ୟାଥୋଲିକ୍ ଖ୍ରୀଷ୍ଟିଆନ୍ ମାନେ 'ଜିମ୍', 'ବବ୍', 'ଷ୍ଟିଫେନ୍', ଓ 'ନେନ୍‌ସି' ପରି ଛାତ୍ର-ଛାତ୍ରୀମାନେ ମଦ ପିଅନ୍ତି ନାହିଁ ।

ତାଙ୍କ ଦେଶରେ ଲୋକେ ବୁଢ଼ା-ବୁଢ଼ୀ ହେଲେ ବୃଦ୍ଧ ଆବାସରେ ରହନ୍ତି । ଅନ୍ୟ କାହା ଉପରେ ବୋଝ ନ ହୋଇ, ସ୍ୱ-ଉପାର୍ଜିତ ଅର୍ଥରେ ନିଜର ଚାହିଦା ମୁତାବକ ଖର୍ଚ୍ଚବାର୍ଚ୍ଚ କରି ଶାନ୍ତିରେ ଶେଷ ସମୟତକ କଟେଇ ଦିଅନ୍ତି । ଝିଅ-ଜୋଇଁ, ପୁଅ-ବୋହୂମାନେ ମଝିରେ ମଝିରେ ଆସି ସେମାନଙ୍କର ଦେଖାଶୁଣା କରନ୍ତି ।

ଆମେରିକାବାସୀଙ୍କର ଧାରଣା, ଆମ ଦେଶରେ ବାପ-ମା ବଞ୍ଚିଥିବା ଯାକେ ପୁଅ-ବୋହୂ, ନାତି-ନାତୁଣୀ ଧରି, ଘରର ମୁରବୀ ହୋଇ ରହନ୍ତି । ପୂଜା ପାଆନ୍ତି । ସେବା ସୁଶ୍ରୁଷା ପା'ନ୍ତି । ଈଶ୍ୱର କରନ୍ତୁ ତାଙ୍କର ଆମ ପାଇଁ ସେଇ ସୁନ୍ଦର ଧାରଣା ବଦ୍ଧମୂଳ ହୋଇ ରହୁ । ନିଃସ୍ୱ, ସମ୍ବଳହୀନ ବୁଢ଼ା-ବୁଢ଼ୀ, ବାପା-ବୋଉ ପୁଅ ପାଖରୁ ବିଲାତି ଭୁଷି ଖାଇବା ଅବା ବୋହୂଠୁ ଗଞ୍ଜଣା ଶୁଣିବା ବିଷୟରେ କିଛି ସୁରାକ୍ ନ ପାଆନ୍ତୁ ।

ପ୍ରଚୁର ରାଜସ୍ୱ ଯୋଗାଉଥିବା, ପ୍ରଖ୍ୟାତ, ମନୋରମ ରାଜପଥକୁ 'ସାଉଥ୍ ଡାକୋଟା'ରୁ ନେଇ 'ମିନେସୋଟା' ରାଜ୍ୟରେ ମିଶାଇ ଦେବା ସମ୍ପର୍କରେ ଗୁରୁପ୍ରସାଦଙ୍କ ପ୍ରଶ୍ନର ଉତ୍ତର ଦିଏ, 'ସାଉଥ୍ ଡାକୋଟା'ର 'ଫିଲିପ୍'– ''ରାସ୍ତାଟାଏ ସେ ରାଜ୍ୟରୁ ଯାଉ କିମ୍ବା ଗୋଟାଏ ବଡ଼ ଅଞ୍ଚଳ ପଡ଼ୋଶୀ ରାଜ୍ୟ ସହିତ ମିଶିଯାଉ, ସେ ବିଷୟରେ ଆମର ଲାଭ ବା କ୍ଷତି କ'ଣ ?

ଛୋଟିଆ ରାଜ୍ୟ ସାଉଥ୍ ଡାକୋଟାର ଅଧିବାସୀ ଭାବରେ ଗର୍ବ ନ କରି ବିଶାଳ ଆମେରିକାର ନାଗରିକ ଭାବରେ ଗର୍ବ କର । ସେ ଜାତିର ଚିନ୍ତା-ଚେତନା କେଡ଼େ ମହାନ୍ ?

ଆମ ଦେଶ କଥା ଛାଡ଼ ! ପାକିସ୍ଥାନ ହେଲା ପରେ ଆମ ଅଖଣ୍ଡ ଭାରତ ଦ୍ୱିଖଣ୍ଡିତ ହେଲା । ସେତିକିରେ କ'ଣ ସରୁଛି ? ଖଲିସ୍ଥାନ, ବୋଡ଼ୋ ଆନ୍ଦୋଳନ, ଝାଡ଼ଖଣ୍ଡ ଆନ୍ଦୋଳନ, ରାମ ଜନ୍ମଭୂମି ବାବରୀ ମସଜିଦ୍ ବିବାଦ, ଧର୍ମାନ୍ଧତା, ଜାତିଆଣ ବିଭେଦ, ଉଗ୍ର ବିଚ୍ଛିନ୍ନତାବାଦ ଓ ଦେଶକୁ କାଟିକୁଟି ଲହୁ-ଲୁହାଣ କରିବା ମସୁଧାର ଅନ୍ତ ନାହିଁ । କେଡ଼େ ହୀନ, ନୀଚ ଓ ଜଘନ୍ୟ ଭାବରେ ଆମେ ସବୁ ଆପଣା ସ୍ୱାର୍ଥିଆ ହୋଇ ପଡ଼ିଛୁ, ତା'ର କଳନା ନାହିଁ ।

ଅଧ୍ୟାପକ ଡକ୍ଟର ବେରି କହନ୍ତି, ''ଯେଉଁ ଦିନ ଭାବିବ, ମୁଁ ବୁଢ଼ା ହୋଇଗଲି, ଠିକ୍ ସେଇଦିନ ତମ ପରମାୟୁ ସରି ଆସିବ ।'' କେଡ଼େ ଖାଣ୍ଟି ଓ ମୂଲ୍ୟବାନ ବକ୍ତବ୍ୟ । ବଞ୍ଚିଥିବା ଯାକେ ଦେହ ମନରେ ସୁସ୍ଥ, ସବଳ, ସୁଖୀ ହୋଇ ରହିବା ପାଇଁ ଏଇ କଥା ପଦିକ ସତେ ଅବା 'ବିଶଲ୍ୟ କରଣୀ' ! ବଞ୍ଚି ଥାଉଁ ଥାଉଁ ମରଣ ପାଇଁ ଚିନ୍ତା କାହିଁକି ? ସିଏ ତା'ର ଯେତେବେଳେ ଆସିବ ଆସୁ । ସେ ଜାତିର ଜୀବନରେ ନୈରାଶ୍ୟର ସ୍ଥାନ ନାହିଁ । ସେମାନେ ସବୁ ଅତି ମାତ୍ରାରେ ଆଶାବାଦୀ । ଆଶା, ଆନନ୍ଦ ଓ ଆଲୋକ ପଥର ଯାତ୍ରୀ ।

ଆମେରିକା ଯାଇ ନଥିବା, ଆମେରିକା ବିଷୟରେ ଅନୁଭୂତି ନଥିବା ଲୋକଙ୍କ ପାଇଁ, ଏ ବହିଟି ସତେ ଅବା, ''Alice in Wonder Land'' ପ୍ରଚଣ୍ଡ ବିସ୍ମୟର ଏକ ବିରାଟ ମୂଲ୍ୟବାନ ଗନ୍ତାଘର । ତେଣୁ ଆମେରିକାର ବୟସ ଓ ସଭ୍ୟତା ମୋଟେ ୪୦୦ ବର୍ଷର ହେଲେ ବି, ଅତୀତରେ ସବୁ ଥାଇ ଏବେ କିଛି ନଥିବା, ଆମର ଏ ଦୀର୍ଘ ୫୦୦୦ ବର୍ଷର ଦୁର୍ଭାଗା ଦେଶ ଭାରତବର୍ଷର ଲୋକେ ତାଠୁ ଅନେକ କିଛି ଉପାଦେୟ କଥା ଜାଣିବାର ଅଛି, ଶିଖିବାର ଅଛି; ଗ୍ରହଣ କରିବାର ଅଛି ।

ସେଇ ଦୃଷ୍ଟିରୁ ଲେଖକ ଗୁରୁପ୍ରସାଦଙ୍କୁ, ତାଙ୍କର କମନୀୟ କୃତି ପାଇଁ ଅଭିନନ୍ଦନ ଜଣାଉଛି । ତାଙ୍କୁ ଅନ୍ତରଭରା ଆଶୀଷ ଓ ଶୁଭେଚ୍ଛା ଦେଉଛି । ତାଙ୍କ କଲମ ଅହରହ, ଅବିଶ୍ରାନ୍ତ ଭାବରେ ଆଉରି ଅନେକ ଅନେକ ଆଗକୁ ସମୃଦ୍ଧି ପଥରେ ମାଡ଼ିଚାଲୁ, ତାଙ୍କ ସ୍ୱାକ୍ଷର ବଳିଷ୍ଠ ହେଉ । ସୃଷ୍ଟି ଅନବଦ୍ୟ ହେଉ ।

*ଅବସରପ୍ରାପ୍ତ ଜିଲ୍ଲା ପଞ୍ଚାୟତ ଅଧିକାରୀ, ସୁନ୍ଦରଗଡ଼ ।*



# ଓଡ଼ିଆ ସାହିତ୍ୟ, ସଂସ୍କୃତିର ନିଷ୍ଠାପର ସେବକ ଗୁରୁପ୍ରସାଦ

ଡଃ ବିଜୟାନନ୍ଦ ସିଂହ

ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତିକୁ ନିବିଡ଼ ଭାବରେ ଭଲପାଇ ଏହାର ବିକାଶ ପାଇଁ ସମ୍ପ୍ରତି କାର୍ଯ୍ୟରତ ନିଷ୍ଠାପର ସେବକ ଡକ୍ଟର ଗୁରୁପ୍ରସାଦ ମହାନ୍ତି । ସେ ବହୁମୁଖୀ ପ୍ରତିଭାର ଅଧିକାରୀ । ଜୀବନ ତାଙ୍କର ଗତି କରିଛି ବିଭିନ୍ନ ପର୍ଯ୍ୟାୟ ମଧ୍ୟରେ । ନିରବଚ୍ଛିନ୍ନ ସାଧନା, ଗଭୀର ଆତ୍ମବିଶ୍ୱାସ, ଆନ୍ତରିକତାପୂର୍ଣ୍ଣ କଠୋର ପରିଶ୍ରମ ତାଙ୍କୁ ବିଭିନ୍ନ କ୍ଷେତ୍ରରେ ସଫଳତାର ଜୟମାଲ୍ୟ ପିନ୍ଧାଇଅଛି । ବାସ୍ତବିକ ଓଡ଼ିଶାର ସାରସ୍ୱତ, ସାଂସ୍କୃତିକ ଇତିହାସରେ ସେ ଏକ ବ୍ୟତିକ୍ରମ ପୁରୁଷ । ତାଙ୍କର ବୃତ୍ତିଗତ ଜୀବନ ଭିନ୍ନ ହୋଇଥିଲେ ମଧ୍ୟ ତାଙ୍କର ପ୍ରାଣ ଓଡ଼ିଶାର ଭାଷା ଓ ସଂସ୍କୃତି ପାଇଁ ଉତ୍ସର୍ଗୀକୃତ । ବୃତ୍ତିଗତ ଜୀବନର ଚରମ ସୋପାନରେ ସେ ଉପନୀତ । ପ୍ରବୃତ୍ତି ତାଙ୍କର ସାହିତ୍ୟ ସେବା । ଅବସର ମିଳିଲେ ସେ ଲେଖନୀ ଧରି ସାହିତ୍ୟ ସୃଷ୍ଟି କରନ୍ତି । ରାଜ୍ୟର ଜଣେ ଉଚ୍ଚପଦସ୍ଥ ପ୍ରଶାସନିକ ଅଧିକାରୀ, ବିଶିଷ୍ଟ ବୈଜ୍ଞାନିକ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ ଲେଖକ, ଭାଷା, ସଂସ୍କୃତି ସୁରକ୍ଷା ଆନ୍ଦୋଳନର ଅଗ୍ରଣୀ କର୍ମକର୍ତ୍ତା ଭାବରେ ବହୁ ପ୍ରଶଂସାର ଅଧିକାରୀ ଗୁରୁପ୍ରସାଦ ମହାନ୍ତି । ତାଙ୍କ ବ୍ୟକ୍ତିତ୍ୱର ମହିମାମୟ ଦିଗ ହେଉଛି – ବିନୟ ଭାବ । ବାହ୍ୟ ଚାକଚକ୍ୟ ପ୍ରତି ସେ ବୀତସ୍ପୃହ । କୌଣସି ପ୍ରକାର ଅହଂକାର ତାଙ୍କୁ ସ୍ପର୍ଶ କରିନାହିଁ । କର୍ମ, ନିଷ୍ଠା, ସଂକଳ୍ପ - ତାଙ୍କ ବ୍ୟକ୍ତିତ୍ୱର ଯଥାର୍ଥ ପରିଚୟ । ପଶୁପାଳନ ବିଭାଗର ଡାକ୍ତର ହୋଇ କାର୍ଯ୍ୟ ଆରମ୍ଭ କରିଥିଲେ ମଧ୍ୟ ଅବସର ସମୟକୁ ଓଡ଼ିଶାର ଏହି ବିଭାଗର ସର୍ବଶ୍ରେଷ୍ଠ ଆସନର ଦାୟିତ୍ୱ ଅର୍ଥାତ୍ ରାଜ୍ୟ ପଶୁପାଳନ ବିଭାଗର ନିର୍ଦ୍ଦେଶକ ହୋଇ ପାରିଥିଲେ ଗୁରୁପ୍ରସାଦ । ଗୁରୁପ୍ରସାଦଙ୍କ ଜୀବନ ସଂଘର୍ଷମୟ । ସଂଘର୍ଷରେ ହୁଏତ ସଂକଟ ଆସିଛି କିନ୍ତୁ ସେହି ସଂକଟକୁ ସେ ଅତିକ୍ରମ କରିଯାଇଛନ୍ତି । ଆପଣାର ଏକନିଷ୍ଠ ସାଧନା ଦର୍ଶାଇ ଦେଇଛି ତାଙ୍କୁ ସିଦ୍ଧିର ମାର୍ଗ । ଜଣେ ସଂଗ୍ରାମୀ ପୁରୁଷ ଭାବରେ ସେ ସର୍ବବିଦିତ । ଏହି ସଂଗ୍ରାମ ଜାତୀୟ ରଣକ୍ଷେତ୍ରରେ କେବଳ ନୁହେଁ ସାରସ୍ୱତ ଜଗତରେ ଓ ସ୍ୱାଧୀନତା ପରବର୍ତ୍ତୀ କାଳର ପଶୁପାଳନ ଓ ପଶୁଚିକିତ୍ସା ଆନ୍ଦୋଳନର ଯେଉଁ କ୍ଷୀଣ

ସ୍ରୋତଟିଏ ଆରମ୍ଭ ହୋଇଥିଲା, ତାହାର ପ୍ରମୁଖ କର୍ଣ୍ଣଧାର ରୂପେ ଗୁରୁପ୍ରସାଦ ବହୁ ସମ୍ମାନ ଓ ଶ୍ରଦ୍ଧାର ଅଧିକାରୀ ହୋଇପାରିଛନ୍ତି ।

**ଜୀବନ ଧାରା :**

ଆଳିପିଙ୍ଗଳ ଗ୍ରାମ ଏକ ସାଧାରଣ ଗ୍ରାମ ନୁହେଁ । ଓଡ଼ିଶାରେ ପରିଚିତ ଏହି ଗାଁଆଟି । ଗାଁଆର ପୁଣି ଭୌଗୋଳିକ ଅବସ୍ଥିତି ବେଶ୍ ଆକର୍ଷଣୀୟ । କଟକ ସହର ପରେ କାଠଯୋଡ଼ୀ ନଦୀ ସମୁଦ୍ରାଭିମୁଖୀ ହୋଇ ତଳକୁ ବୋହିଗଲା ବେଳେ ଦେବୀ ଓ କନ୍ଦଳ ଦୁଇଧାର ହୋଇଯାଇଅଛି । ଦଳେଇ ଘାଇର ପ୍ରାୟ ୧୫ କିଲୋମିଟର ତଳକୁ ଦେବୀ ନଦୀ କୂଳରେ ଆଳିପିଙ୍ଗଳ ଗ୍ରାମ ଅବସ୍ଥିତ । ଜଗତ୍‌ସିଂହପୁର ଜିଲ୍ଲାର ଏକମାତ୍ର ସବ୍ ଜେଲ୍ ଗତ ୩୦ ବର୍ଷ ତଳେ ଆଳିପିଙ୍ଗଳଠାରେ ନିର୍ମିତ ହୋଇଛି । ଇଂରେଜ ଶାସନ ସମୟରୁ ଆଳିପିଙ୍ଗଳ ଗ୍ରାମ ଓଡ଼ିଶାର ପାଗ ମାନଚିତ୍ରରେ ଗୁରୁତ୍ୱଲାଭ କରିଛି । ଆଳିପିଙ୍ଗଳଠାରେ ବୃଷ୍ଟିପାତର ପରିମାଣ ଓ ଦେବୀ ନଦୀର ବନ୍ୟାଜଳର ଗଭୀରତା ଜୁଲାଇ ମାସରୁ ଆରମ୍ଭ କରି ଅକ୍ଟୋବର ପର୍ଯ୍ୟନ୍ତ ପ୍ରତିବର୍ଷ ଏହିଠାରୁ ରେକର୍ଡ଼ କରାଯାଇ ଜନସାଧାରଣଙ୍କୁ ଜଣାଇ ଦିଆଯାଏ । ସ୍ୱାଧୀନତା ବହୁବର୍ଷ ପୂର୍ବରୁ ପି. ଡବ୍ଲ୍ୟୁ.ଡ଼ି ଜଳସେଚନ ବିଭାଗ ପକ୍ଷରୁ ଆଳି-ପିଙ୍ଗଳଠାରେ ଏକ ଡାକବଙ୍ଗଳା ରହିଥିଲା । ଏହି ପ୍ରତିଷ୍ଠିତ ଗ୍ରାମ ଡାକ୍ତର ଗୁରୁପ୍ରସାଦ ମହାନ୍ତିଙ୍କ ଜନ୍ମସ୍ଥାନ । ଜନ୍ମ ତାଙ୍କର ପବିତ୍ର କୁମାର ପୂର୍ଣ୍ଣମୀ ତିଥିରେ ଇଂରାଜୀ ତାରିଖ ୧୮ ଅକ୍ଟୋବର ୧୯୩୮ । ପିତାଙ୍କ ନାମ ବଳରାମ ମହାନ୍ତି, ମାତାଙ୍କ ନାମ ଉମାଦେବୀ । ସେ ପୁଅ ହୋଇ ଆସିଲେ ରାମଚନ୍ଦ୍ର ମହାନ୍ତି ଓ ଅଧରମଣି ଦେଈଙ୍କ ନିକଟକୁ ଜନ୍ମକାଳରୁ । ଗୁରୁପ୍ରସାଦଙ୍କ ପରିବାରର ଏକ ସୁନାମ ରହିଛି । ଜନ୍ମବୃତ୍ତାନ୍ତ ମଧ୍ୟ ତାଙ୍କର ବେଶ୍ ଚମକପ୍ରଦ । ସେ ଏହି କଥାକୁ ବେଶ୍ ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି - ''ରାମଚନ୍ଦ୍ର ଓ ଅଧରମଣିଙ୍କର କୌଣସି ପୁତ୍ର ସନ୍ତାନ ରହିଲେ ନାହିଁ । ଦୁଇ ଖୁଡ଼ୁତାଙ୍କର ମଧ୍ୟ କେବଳ ଝିଅଛଡ଼ା କୌଣସି ପୁତ୍ର ସନ୍ତାନ ନଥିଲେ । ଏହି ସମୟରେ ଦେବୀ କନ୍ଦଳ ମଧ୍ୟବର୍ତ୍ତୀ ବାଇଶ ମୌଜାର ଡିହସାହି ବିରି ଗ୍ରାମର ଜଣେ ସିଦ୍ଧବୈଷ୍ଣବ ପଣ୍ଡିତ ଗଣେଶ ମିଶ୍ର ଆସି ଇଷ୍ଟ ଦେବତା ଗୋପାଳଜୀଉଙ୍କ ମନ୍ଦିର ପରିସରରେ ରହିଲେ । ଅଧରମଣି ତାଙ୍କର ଶିଷ୍ୟା ହୋଇ ଗୁରୁଦେବଙ୍କ ସେବାରେ ମନ ଦେଲେ । ଅପୁତ୍ରିକ ହେବାର ଦୁଃଖ ତାଙ୍କୁ ବିବ୍ରତ କରୁଥିଲା । ଥରେ ଗୁରୁଦେବ ତାଙ୍କୁ କହିଲେ ତୁମ ଭାଗ୍ୟରେ ସୁପୁତ୍ର ଲାଭର ମୁହୂର୍ତ୍ତ ଆସୁଛି । ଅଧରମଣି ପଚାରିଲେ ଏହା କିପରି ସମ୍ଭବ ହେବ ? ଗୁରୁଦେବ କହିଲେ ତୁମ ଶ୍ୱଶୁରଙ୍କ ପିତା ଗୋରାମୁକ୍ତିଆର ଯେଉଁ ପରିବାରରୁ ଆସିଥିଲେ, ସେହି ପରିବାରରୁ ତୁମର ପୁତ୍ର ଆସିବ । ରାମଚନ୍ଦ୍ରଙ୍କ ଘର ପଛପଟେ ଦାଦା ବାମନ ମହାନ୍ତିଙ୍କ ଘର । ତାଙ୍କ ପୁଅ

ବଳରାମ ଓ ବୋହୂ ଉମାଙ୍କର ମାତ୍ର ଝିଅଟିଏ ଥିଲା । ବାମନ ମହାନ୍ତିଙ୍କ ପିତା ଓ ଗୋରା ମୁକ୍ତିଆର (ଦୀନବନ୍ଧୁ ମହାନ୍ତି) ଦୁହେଁ ଦୁଇ ଭାଇ ଥିଲେ । ବଳରାମଙ୍କର ମଧ୍ୟ ପୁତ୍ର ସନ୍ତାନ ନଥିଲା । ତେଣୁ ଅଧରମଣି ପଚାରିଲେ ଗୁରୁଦେବ ଉମା ଓ ବଳରାମଙ୍କର ତ କେବଳ ଝିଅଟିଏ ଅଛି, ତାଙ୍କଠୁ ପୁଅଟିଏ ମିଳିବ କିପରି ? ଗୁରୁଦେବ କହିଲେ, ଅପେକ୍ଷା କର ତାଙ୍କଠାରୁ ତୁମ ପାଇଁ ପୁଅଟିଏ ମିଳିବ । ଅଳ୍ପଦିନପରେ ଉମା ଗର୍ଭବତୀ ହେଲେ । ରାମଚନ୍ଦ୍ରଙ୍କ ଉଭଣୀମାନେ ତାଙ୍କୁ କହିଲେ, 'ଏ ଯେଉଁ ପୁଅଟିଏ ହେବ, ସେ ହେବ ଆମ ପୁଅ ।' ଉମା ହସି ହସି କହିଲେ, ଆଗେ ପୁଅଟିଏ ହେଉ, ତା' ପରେ ଯାଇ ତୁମେ ନେଇଯିବ । ଏହାପରେ ଉମା ଯାଇ ଗୁରୁ ଶ୍ରୀ ଗଣେଶ ମିଶ୍ରଙ୍କୁ ପଚାରିଲେ ନନା, ମୋ ପାଇଁ ଆପଣଙ୍କର କ'ଣ ନିର୍ଦ୍ଦେଶ ? ସେ କହିଲେ ଏ ପୁଅଟି ନାରାୟଣ ପ୍ରସାଦ ମହାନ୍ତିଙ୍କର ବଂଶରକ୍ଷା କରିବ । ଉମା ପଚାରିଲେ ମୁଁ କଣ କରିବି ? ଗୁରୁଦେବ କହିଲେ - ଏହା ପରେ ତୋର ବଂଶରକ୍ଷକ ପୁତ୍ରଟି ଆସିବ । ଏହି ଭବିଷ୍ୟତ ବାଣୀ ଶୁଣି ଉମା ସନ୍ତୁଷ୍ଟ ହେଲେ ଓ ପୁଅଟିକୁ ଅଧରମଣିଙ୍କ କୋଳରେ ସମର୍ପି ଦେବାକୁ ମନସ୍ଥ କରି ରହିଲେ । କୁମାର ଉତ୍ସବ ଦିନ ସୂର୍ଯ୍ୟୋଦୟ ପୂର୍ବରୁ ଉମାଙ୍କ ଗର୍ଭରୁ ପୁତ୍ରସନ୍ତାନଟିଏ ଜନ୍ମ ହେଲା । ରାମଚନ୍ଦ୍ର ଓ ଅଧରମଣି ଆନନ୍ଦରେ ଇଷ୍ଟଦେବତା ଗୋପାଳଜୀଉଙ୍କ ନିକଟରେ ଧୂପଦୀପ ନୈବେଦ୍ୟ ବଢ଼ାଇ ଗୁରୁଦେବଙ୍କ ଜରିଆରେ ପୂଜା ଆରାଧନା କଲେ । ଏକୋଇଶା ଦିନ ଇଷ୍ଟ ଦେବତା ଗୋପାଳଜୀଉ ମନ୍ଦିରରେ ପୂଜାର୍ଚ୍ଚନା ସାରି ନାମ ସଂକୀର୍ତ୍ତନ, ଶଂଖ, ହୁଳହୁଳି ଓ ତେଲିଙ୍ଗି ବାଜା ବଜାଇ ପୁରୋହିତ ଓ ଗୁରୁଦେବଙ୍କ ଗହଣରେ ବଳରାମଙ୍କ ଗୃହକୁ ଯାଇ ରାମଚନ୍ଦ୍ର ଓ ଅଧରମଣି ଉମା ଓ ବଳରାମଙ୍କ ହାତରୁ ଧର୍ମକୁ ସାକ୍ଷୀରଖି ପୁତ୍ର ସନ୍ତାନଟି ଗ୍ରହଣ କଲେ । ଗୁରୁଦେବଙ୍କ କୃପାରୁ ଏହା ସମ୍ଭବ ହେଲା ବୋଲି ପୁଅଟିର ନାମ ଗୁରୁପ୍ରସାଦ ରଖାଗଲା ।''

ଗୁରୁପ୍ରସାଦଙ୍କୁ ତିନିବର୍ଷ ପୂରିଲା ପରେ ଗାଆଁ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ କାଶୀନାଥ ସାହୁ ତାଙ୍କୁ ଅକ୍ଷର ଶିଖାଇବାକୁ ନିଯୁକ୍ତ ହେଲେ । ପ୍ରାୟ ଛଅମାସ ପରେ ଅକ୍ଷର ଓ ସଂଖ୍ୟା ଲିଖନ ଶିଖିବା ପରେ ଘର ସାମନାରେ ଥିବା ପ୍ରାଥମିକ ବିଦ୍ୟାଳୟରେ ଗୁରୁପ୍ରସାଦଙ୍କର ନାମ ଲେଖା ହେଲା । ଶ୍ରଦ୍ଧାରେ ଗୁରୁପ୍ରସାଦଙ୍କୁ ସମସ୍ତେ ବୁଡୁ ବୋଲି ଡାକୁଥିଲେ । ସେ ଛଅମାସ ପରେ ପ୍ରଥମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲେ । ଭାରତ ସ୍ୱାଧୀନ ହେଲାବେଳକୁ ଗୁରୁପ୍ରସାଦ ପଞ୍ଚମ ଶ୍ରେଣୀର ଛାତ୍ର । ଉତ୍ସବମୁଖରିତ ସ୍ୱାଧୀନତା ଦିବସର ସ୍ମୃତି ଏବେ ବି ତାଙ୍କ ମାନସ ପଟରେ ଉଜ୍ଜୀବିତ - ''୧୯୪୭ ଜୁଲାଇ ମାସରେ ମୁଁ ପଞ୍ଚମ ଶ୍ରେଣୀରେ ପଢ଼ିଲି । ଅଗଷ୍ଟ ୧୫ ତାରିଖ ଦିନ ଦେଶ ସ୍ୱାଧୀନ ହେଲା ।

ଆମଦାଣ୍ଡରେ ଲୋକ ଭରପୂର ହୋଇଗଲେ । ବାଜା ବଜାଇ ଖୋଳ, କରତାଳ ବଜାଇ ସଂକୀର୍ତ୍ତନ କରି, ଶଙ୍ଖ, ତୁରୀ ଆଦି ବଜାଇ ଲୋକମାନେ ଗାଆଁ ସାରା ପ୍ରତି ପଡ଼ାରେ ବୁଲି ବୁଲି ଭାରତମାତା, ଗାନ୍ଧୀ, ନେହେରୁ ଓ ସୁବାଷ ବୋଷଙ୍କର ଜୟଗାନ କଲେ । ଆମେ ସବୁ ପିଲାମାନେ ସେଇ ଶୋଭାଯାତ୍ରା ସାଙ୍ଗରେ ଗାଆଁ ସାରା ବୁଲି ଜୟଧ୍ୱନି କଲୁ ।''

ପଞ୍ଚମ ଶ୍ରେଣୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ପରେ ଗୁରୁପ୍ରସାଦଙ୍କ ଗାଁ ନିକଟରେ ମାଇନର ସ୍କୁଲ ନଥିବାରୁ ତାଙ୍କ ମାମୁଁଘର କଟକ ନିକଟସ୍ଥ ବେଣ୍ଟକାର ମାଇନର ସ୍କୁଲରେ ସେ ଅଧ୍ୟୟନ କଲେ । ବାଲ୍ୟାବସ୍ଥାରେ ବାପା ମାଆଙ୍କୁ ଛାଡ଼ି ଜୀବନ ବିତାଇବା କେତେ କଷ୍ଟ, ତାହା ଏବେ ବି ତାଙ୍କ ମନକୁ ଆସେ - ''ବାପା ବୋଉ ମୋତେ ସେଠି ଛାଡ଼ିଦେଇ ଗାଆଁକୁ ଫେରିଗଲେ । ମାତ୍ର ମୁଁ ଘରକଥା ଆଦୌ ଭୁଲି ପାରୁନଥାଏ । ବାପା, ବୋଉ, ମାଆଙ୍କ କଥା ମନେପଡ଼େ । ମୁଁ ଲୁଚେଇ ଲୁଚେଇ କାନ୍ଦେ । ମାମୁ ଘରଠୁଁ ଅଳ୍ପଦୂରରେ ମାଇନର ସ୍କୁଲ । ପାଠପଢ଼ିବାରେ ମୋର ମନ ଲାଗେ ନାହିଁ । ସବୁବେଳେ ଘରକଥା ମନେପଡ଼େ ।'' ଯାହା ଫଳରେ ଗୁରୁପ୍ରସାଦ ମାମୁଘର ଗାଁରୁ ଚାଲିଆସିଲେ । ତାଙ୍କ ନାମ ଜଗତସିଂହପୁର ମାଇନର ସ୍କୁଲରେ ଲେଖାଗଲା । ଗୁରୁପ୍ରସାଦଙ୍କ ସପ୍ତମଶ୍ରେଣୀ ସମୟକୁ ଏହି ମାଇନର ସ୍କୁଲଟି ଶ୍ରୀକୃଷ୍ଣ ଏକାଡ଼େମୀ ସହିତ ମିଶିଗଲା । ୧୯୫୪ ମସିହାରେ ସେ ଏହି ଏକାଡ଼େମୀରୁ ମାଟ୍ରିକ ପାଶ୍ କରି ରେଭେନ୍‌ସା କଲେଜରେ ବିଜ୍ଞାନ ଶ୍ରେଣୀରେ ନାମ ଲେଖାଇଲେ ।

ଗୁରୁପ୍ରସାଦଙ୍କ ଜୀବନ ଥିଲା ସଂଘର୍ଷମୟ । ଧନଧାନ୍ୟରେ ପରିପୂର୍ଣ୍ଣ ଥିବା ଏକ ପ୍ରତିଷ୍ଠିତ ପରିବାର ସମୟକ୍ରମେ ନାହିଁ ନଥିବା ଅସୁବିଧାର ସମ୍ମୁଖୀନ ହେଲେ । ପ୍ରଥମ ପ୍ରତିବନ୍ଧକ ଆର୍ଥିକ ଅନଟନ । ଏପରିକି ପରିବାରର ଅଲିଅଳ ସନ୍ତାନ ଗୁରୁପ୍ରସାଦଙ୍କ ପାଠପଢ଼ାରେ ଆବଶ୍ୟକୀୟ ଅର୍ଥ ବି ମିଳିଲାନାହିଁ । ସେଦିନର ସେହି ଅସୁବିଧାକୁ ଏବେବି ମନେରଖିଛନ୍ତି ଗୁରୁପ୍ରସାଦ - ''ମୋନାମ ଲେଖା ପୂର୍ବରୁ ବାପା ଜମି ବିକିବାପାଇଁ ଠିକଣା କଲେ । ସେତେବେଳେ ଜମିଦାରୀ ଉଠିଯାଇଥିଲା । ଆମଘରେ ଆଉ ଗୁମାସ୍ତା ନଥିଲେ । ମଝିରେ ମଝିରେ ଜଗୁ ରାଉତ ଆସି ବାପାଙ୍କୁ ସାହାଯ୍ୟ କରୁଥିଲେ । ଜମିଦାରୀ ଉଠିବା ପରେ ବାପା ବହୁତ ଜମି ବିକ୍ରି କରି ସାରିଥିଲେ । ଦେଖିଲି, ବାପା ମୋର କଲେଜ ଖର୍ଚ୍ଚ ବାବଦ ପ୍ରତିମାସରେ ଜମି ବିକ୍ରି କରିବେ । ମାଆକୁ କହିଲି, ବାପାଙ୍କୁ କହ ମୋ ପାଇଁ କେବଳ ଥରେ ମାତ୍ର ଜମିବିକ୍ରୀ କରନ୍ତୁ । ବାପା, ବୋଉ, ମାଆ ଓ ଜଗୁ ବସି ଗୋଟିଏ ଏକର ଜମି ବିକିବାକୁ ଠିକ୍ କଲେ । ଆମ ସାହିର ଜଣେ ଦାଦା କଟକରେ ଚାକିରୀ

କରୁଥାନ୍ତି । ସେ ମୋତେ ମାସିକ ଟ ୪୦ ହାରରେ ଦୁଇବର୍ଷ ଦେବାକୁ ସମ୍ମତି ଦେଲେ ଓ ତାଙ୍କ ନାମରେ ଜମି କବଲା ହେଲା । ସେହି ଟଙ୍କା ଭିତରେ ମୋର ଖର୍ଚ୍ଚ ଚଳିଗଲା । ମୁଁ ଆଇ.ଏସ୍‌ସି. ପାଶକଲି ।''

୧୯୫୬ ମସିହାରେ ଗୁରୁପ୍ରସାଦ ରେଭେନ୍ସା କଲେଜରୁ ଆଇ.ଏସ୍‌ସି. ପାଶ୍‌କରି ଭବିଷ୍ୟତ ପାଇଁ ନିଜକୁ ପ୍ରସ୍ତୁତ କଲେ । ପିତାଙ୍କର ଇଚ୍ଛାଥାଏ ପୁଅ ତାଙ୍କ ଅଣଜେଜେଙ୍କ ପରି ଓକିଲ ହେବ । କିନ୍ତୁ ବିଧିର ବିଧାନ ବଡ଼ ବିଚିତ୍ର । ରେଭେନ୍ସା କଲେଜରେ ବି.ଏସ୍‌ସି. ପଢ଼ିବା ପାଇଁ ଫର୍ମ ପକାଇ ଗୁରୁପ୍ରସାଦ ନିଶ୍ଚିନ୍ତ ହେଲେନାହିଁ । ସେତେବେଳେ ବୁର୍ଲାସ୍ଥ ଇଞ୍ଜିନିୟରିଂ ମହାବିଦ୍ୟାଳୟ ପାଇଁ ମଧ୍ୟ ଦରଖାସ୍ତ ଆହ୍ୱାନ କରାଯାଉଥାଏ । ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟରେ ନାମ ଲେଖା ପାଇଁ ମଧ୍ୟ ଖବର କାଗଜ ମାନଙ୍କରେ ବିଜ୍ଞାପନ ପ୍ରକାଶ ପାଇଥାଏ । ଈଶ୍ୱରବିଶ୍ୱସୀ ଗୁରୁପ୍ରସାଦ ନିଜର ଇଷ୍ଟ ଦେବତାଙ୍କ ପ୍ରତି ଗଭୀର ବିଶ୍ୱାସ କ୍ରମେ ସେ କଟକସ୍ଥିତ ପଶୁଚିକିତ୍ସା ମହାବିଦ୍ୟାଳୟରେ ନାମ ଲେଖାଇଲେ — ଗୁରୁପ୍ରସାଦ ମଧ୍ୟ ନିଜ ଜୀବନାନୁଭୂତି କିୟଦଂଶ ଉପସ୍ଥାପିତ କରିଛନ୍ତି ।-

''ମଙ୍ଗଳାବାଗ ପଶୁଚିକିତ୍ସା ନିର୍ଦ୍ଦେଶାଳୟ ହତା ଭିତରେ ପଶୁଚିକିତ୍ସା ମହାବିଦ୍ୟାଳୟ ଖୋଲିଥାଏ । ତିନି ଦାଣ୍ଡି ଲମ୍ବା ଘର । ଗେଟ୍ ପାଖରେ ଅଧ୍ୟକ୍ଷ ଡକ୍ଟର ଗଣେଶ୍ୱର ବିଶ୍ୱାଳଙ୍କ କୋଠରୀ । ପାଖକୁ ଲାଗି କଲେଜ ଅଫିସ୍ ।"ବୁଝିଲି ଆଜି ଫର୍ମ ପକାଇବାର ଶେଷ ତାରିଖ । ମୁଁ କାଗଜପତ୍ର କିଛି ଆଣି ନଥାଏ । ଅଫିସ୍‌ରେ ବଡ଼ବାବୁ କହିଲେ, ତୁମେ ଫର୍ମ ନେଇପାର, ମାତ୍ର ଆଜି ସନ୍ଧ୍ୟାସୁଦ୍ଧା ଫର୍ମଟି ଦଖଲ କରିବାକୁ ହେବ । କିଛି ଅସୁବିଧା ଥିଲେ ପ୍ରିନ୍ସିପାଲ୍‌ଙ୍କୁ ଦେଖାକର । ଚିଠା ଦେଇ ଅଧ୍ୟକ୍ଷଙ୍କୁ ଦେଖାକଲି । ସେ ଅତ୍ୟନ୍ତ ସୌମ୍ୟକାନ୍ତ ଉଚ୍ଚଶିକ୍ଷିତ ସମ୍ଭ୍ରାନ୍ତ ବ୍ୟକ୍ତି ପରି ଜଣାପଡୁଥାନ୍ତି । ରେଭେନ୍ସା କଲେଜରେ ଦେଖିଥିବା ଅଧ୍ୟାପକମାନଙ୍କ ତୁଳନାରେ ତାଙ୍କର ବେଶ ପାରିପାଟୀ ଉଚ୍ଚଧରଣର । ପଚାରିଲେ ତୁମେ ଏ କଲେଜ ପଢ଼ିବାକୁ ଇଚ୍ଛା କରୁଛ ? କହିଲି, ମୁଁ ପଢ଼ିବାକୁ ଚାହିଁଲେ ମଧ୍ୟ ମୋର ବାପାଙ୍କର ଇଚ୍ଛା ନାହିଁ । ପଚାରିଲେ କାହିଁକି ? କହିଲି ବାପା ଚାହାନ୍ତି, ତାଙ୍କର ବାପା, ଜେଜେ ଓ ଅଣଜେଜେମାନଙ୍କ ପରି ଜଣେ ଖ୍ୟାତନାମା ଲୋକ ହେବାଭଳି ମୁଁ ପାଠ ପଢ଼ିବି । ସେ ହସିଦେଇ କହିଲେ ଖୁବ୍ ଭଲ କଥା । ତୁମେ ଯେକୌଣସି ବିଦ୍ୟା ପଢ଼ିଲେ ମଧ୍ୟ ଯଦି ତହିଁରେ ପାଣ୍ଡିତ୍ୟଲାଭ କରିପାରିବ, ତା'ହେଲେ ତୁମର ସମ୍ମାନ ବଢ଼ିବ । ତେଣୁ ଏ କଲେଜରେ ପଢ଼ିସାରି ତୁମକୁ ଯଦି ଉଚ୍ଚଶିକ୍ଷା ଲାଭକରିବାକୁ ଯୁକ୍ତରାଷ୍ଟ୍ର ଆମେରିକା ତୁମବାପା ପଠାଇ ପାରିବେ, ତା'ହେଲେ ତୁମର ନିଶ୍ଚୟ ସମ୍ମାନ ବଢ଼ିବ । ଚାହିଁଲେ ଦେଶକୁ ଫେରିବ, ନୋହିଲେ ଆମେରିକା ସମେତ ଯେକୌଣସି ଦେଶରେ ତୁମେ ଖୁବ୍ ଭଲ ଚାକିରୀ ପାଇ ପାରିବ । ତାଙ୍କ କଥା ଶୁଣି ମୁଁ ସାଙ୍ଗେ ସାଙ୍ଗେ ଫର୍ମ ପୂରଣ

କରି ଦାଖଲ କରିଦେଲି । ପ୍ରାୟ ୧୫ ଦିନ ପରେ ସାକ୍ଷାତକାର ପାଇଁ ଚିଠି ପାଇ କଟକ ଆସିଲି । ସାକ୍ଷାତକାର ପରେ ସେଦିନ ଅପରାହ୍ନରେ ନାମଲେଖାପାଇଁ ବଛା ଯାଇଥିବା ପିଲାମାନଙ୍କର ନାମ ତାଲିକା ପ୍ରକାଶ ପାଇଲା । ପ୍ରଥମ ଛଅଜଣ ଛାତ୍ର ସରକାରୀ ବୃତ୍ତି ପାଇବେ ଓ ବିନା ଦରମାରେ ପାଠପଢ଼ିବେ ବୋଲି ଲେଖାଥିଲା । ସେମାନଙ୍କ ମଧ୍ୟରେ ମୋ ନାଁଟା ଥିଲା । ଘରକୁ ଫେରିଆସି ବାପାଙ୍କୁ କହିଲି । ହେଲେ ବାପା ମୁହଁ ଶୁଖାଇ ଦେଇ କହିଲେ, ଏପାଠ ପଢ଼ିଲେ ତୁ କ'ଣ ମୋ ବାପା, କେଜେଙ୍କ ପରି ହୋଇ ପାରିବୁ ? କହିଲି, ତାଙ୍କଠାରୁ ଆଉ ମଧ୍ୟ ଉପର ପାହ୍ୟାକୁ ଯାଇପାରେ । ବାପା ତାଟକା ହୋଇ ମୋତେ ଚାହିଁଲେ । କହିଲି କଲେଜର ପିନ୍ସିପାଲଙ୍କ ସାଙ୍ଗରେ ସାକ୍ଷାତ କରି ଯାହା ବୁଝିଲି, ଆମେରିକା ଯାଇ ଉଚ୍ଚଶିକ୍ଷା ପାଇବାପାଇଁ ମଧ୍ୟ ଯଥେଷ୍ଟ ସୁବିଧା ଅଛି । ସେ ନିଜେ ଯାଇ ସେଠି ଛଅବର୍ଷ ପାଠପଢ଼ି ଆସିବା ପରେ ନୂଆକରି ପ୍ରିନ୍ସିପାଲ୍ ହୋଇଛନ୍ତି, ବାପାଙ୍କ ମୁହଁର ଢ଼ଙ୍ଗ ବଦଳିଗଲା । ସେ ଆଉ କିଛି କହିଲେ ନାହିଁ ।''

ଚାରିବର୍ଷ ଅଧ୍ୟୟନ ପରେ ୧୯୬୦ ମସିହାରେ ସେ ପଶୁଚିକିତ୍ସା ବିଜ୍ଞାନ ମହାବିଦ୍ୟାଳୟରୁ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ ।

**କର୍ମନିଯୁକ୍ତି :**

୧୯୬୦ ମସିହାରେ ପଶୁପାଳନ ବିଭାଗର ଡାକ୍ତର ହେବାର ଯୋଗ୍ୟତା ହାସଲ କଲାପରେ ସୁନ୍ଦରଗଡ଼ ଜିଲ୍ଲାରେ ଗୁରୁପ୍ରସାଦ କାର୍ଯ୍ୟରେ ଯୋଗଦେଲେ । ବଣାଇଗଡ଼ରେ ଦଶମାସ କାର୍ଯ୍ୟ କରିସାରିଲା ପରେ ରାଉରକେଲାକୁ ତାଙ୍କର ବଦଳି ହେଲା । କିନ୍ତୁ ଜ୍ଞାନ ଆହରଣର ପିପାସା ଗୁରୁପ୍ରସାଦଙ୍କୁ ଉଦ୍‌ବେଳିତ କଲା । ତେଣୁ ସେ ଯୁକ୍ତରାଷ୍ଟ୍ର ଆମେରିକାର ଓହିଓ ବିଶ୍ୱବିଦ୍ୟାଳୟରେ ଦୁଗ୍ଧ ବିଜ୍ଞାନ ପଢ଼ିବାପାଇଁ ୧୯୬୪ ମସିହା ମାର୍ଚ୍ଚ ୧୭ ତାରିଖରେ ଆମେରିକା ଯାତ୍ରାକଲେ । ସେଠାରେ ସେ ଦୁଗ୍ଧବିଜ୍ଞାନରେ ଡକ୍ଟର ଟମ ଲଡ୍‌ୱିକ୍‌ଙ୍କ ଅଧୀନରେ ମାଷ୍ଟର୍ସ ଡିଗ୍ରୀ ପାଇଁ ନାମ ଲେଖାଇଲେ । ସେଠାରେ ମଧ୍ୟ ସେହି ଆର୍ଥିକ ସମସ୍ୟା ଦେଖାଦେଲା । କିନ୍ତୁ ଏକନିଷ୍ଠ ସାଧକମାନଙ୍କ ପକ୍ଷରେ ସମସ୍ୟା ପ୍ରତିବଂଧକହୁଏ ନାହିଁ । ବରଂ ତାଙ୍କର ନିରନ୍ତର ଉଦ୍ୟମ ଓ ସାଧନା ନିକଟରେ ସକଳ ବାଧାବିଘ୍ନ ବ୍ୟର୍ଥହୁଏ । ଗୁରୁପ୍ରସାଦଙ୍କ ଜୀବନରେ ଏହାହିଁ ଘଟିଥିଲା । ଆମେରିକା ଅଧ୍ୟୟନ କାଳରେ ଗୁରୁପ୍ରସାଦଙ୍କ ଜୀବନରେ ନୂତନ ଅଧ୍ୟାୟ ଉନ୍ମୋଚିତ ହେଲା । ତାଙ୍କ ନିଜ ଭାଷାରେ - ''ମୋର ପରାମର୍ଶଦାତା ଡକ୍ଟର ଲଡ୍‌ୱିକ୍ ତାଙ୍କର ଜଣେ ପୁରାତନ ଛାତ୍ର ଅଧୀନରେ ମୋତେ କାମ ଯୋଗାଇଦେଲେ । ଗ୍ରୀଷ୍ମ କାଳରେ କାମ କରି ଅର୍ଥ ସଞ୍ଚୟ କଲାପରେ ହେମନ୍ତ କାଳୀନ ପାଠ୍ୟକ୍ରମରେ ନାମ ଲେଖାଇଲି । ଇତି ମଧ୍ୟରେ ଡକ୍ଟର

ଲଡ୍‌ୱିକ୍ ମୋପାଇଁ ବୃତ୍ତି ଯୋଗାଡ଼ କରିବା ପାଇଁ ଅନ୍ୟ କେତେକ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନଙ୍କ ସହିତ ଯୋଗାଯୋଗ କରିଥିଲେ । ଭାଗ୍ୟକୁ ସାଉଥ୍‌ଡାକୋଟା ବିଶ୍ୱବିଦ୍ୟାଳୟରେ ମୋ ପାଇଁ ଦୁଗ୍ଧବିଜ୍ଞାନ ବିଭାଗରୁ ବୃତ୍ତି ମିଳିବାର ଚିଠି ଆସିଲା । ଦୁଃଖର ସହିତ ମୋର ସେହି ହିତାକାଙ୍କ୍ଷୀ ସ୍ନେହୀ ପରାମର୍ଶଦାତା ଡଃ ଲଡ୍‌ୱିକ୍‌ଙ୍କୁ ଛାଡ଼ି ସାଉଥ୍‌ଡାକୋଟାର ଅଧ୍ୟାପକ ଡକ୍ଟର ହାୱାର୍ଡ଼ ଭୋକର୍‌ଙ୍କ ଅଧୀନରେ ମାଷ୍ଟର୍ସ ଡିଗ୍ରୀ ପାଇଁ ପଢ଼ାଆରମ୍ଭ କଲି । ତେବେ ସେହି ବଭାଗର ମୁଖ୍ୟ ଡକ୍ଟର ବ୍ରାଭିଲ୍ ମୋତେ ପୁଅଭଳି ଭଲ ପାଉଥିଲେ । ଭାଗ୍ୟବଶତଃ ସେଠାକାର ସବୁ ଲୋକଙ୍କର ସ୍ନେହ ସହାନୁଭୂତି ମୋ ଉପରେ ଅଧିକରୁ ଅଧିକ ଅଜାଡ଼ି ହୋଇ ପଡ଼ିଲା । ମୋର ପରାମର୍ଶଦାତା ଡଃ ଭୋକର୍‌ଙ୍କୁ ତାଙ୍କ ଗବେଷଣାରେ ସାହାଯ୍ୟ କରି ପୂରାଦମ୍‌ରେ ପାଠପଢ଼ାରେ ଲାଗିପଡ଼ିଲି । ଫଳରେ ପରୀକ୍ଷାରେ ଖୁବ୍ ଭଲ ଫଳମିଳିଲା । ଡଃ ଭୋକର୍ ମୋତେ ଗୋଖାଦ୍ୟ ଉପରେ ଗବେଷଣା କରିବାକୁ କହିଲେ । ସେଦିଗରେ ବିଶ୍ୱବିଦ୍ୟାଳୟର ଜୈବରସାୟନ ବିଭାଗ, ପଶୁବିଜ୍ଞାନ ଓ ଜୀବାଣୁତତ୍ତ୍ୱ ବିଭାଗର ଅଧ୍ୟାପକମାନେ ମୋତେ ସାହାଯ୍ୟ କଲେ । ଫଳରେ ଏକବର୍ଷ ମଧ୍ୟରେ ମୋର ମାଷ୍ଟର୍ସ ଡିଗ୍ରୀ କାର୍ଯ୍ୟ ସରିଗଲା । ମୋର ସନ୍ଦର୍ଭ ଅତି ଉଚ୍ଚକୋଟୀର ହୋଇଥିବାରୁ ସେବର୍ଷ ଟେନିସି ରାଜ୍ୟରେ ହେବାକୁ ଥିବା ଦୁଗ୍ଧବିଜ୍ଞାନ କଂଗ୍ରେସରେ ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରୁ ଯୋଗ୍ୟ ବିବେଚିତ ସନ୍ଦର୍ଭଗୁଡ଼ିକ ମଧ୍ୟରେ ଏହା ସ୍ଥାନପାଇଲା । ତାପରେ ପି.ଏଚ୍.ଡ଼ି ଡିଗ୍ରୀପାଇଁ ପାଠପଢ଼ା ଓ ଗବେଷଣା ଚାଲିଲା । ଏଇ ସମୟ ମଧ୍ୟରେ ମୋର ଗବେଷଣାଲବ୍ଧ ତଥ୍ୟଗୁଡ଼ିକୁ ଆଧାରକରି ଯୁକ୍ତରାଷ୍ଟ୍ର ଆମେରିକାର କେତେକ ବିଜ୍ଞାନ ପତ୍ରିକାରେ ଗବେଷଣାତ୍ମକ ପ୍ରବନ୍ଧମାନ ଲେଖିଲି । ଫଳରେ ସାଉଥ୍‌ଡାକୋଟା ବିଶ୍ୱବିଦ୍ୟାଳୟର କୃଷିଗବେଷଣା କ୍ଲବ ପକ୍ଷରୁ ମୋତେ ''ଗାମ୍ମା-ସିଗମା-ଡେଲ୍‌ଟା''ର ସମ୍ମାନିତ ସଭ୍ୟ ଭାବେ ନିଆଗଲା । ତାପରେ ସାଉଥ୍‌ଡାକୋଟା ବିଜ୍ଞାନ ସମିତି ପକ୍ଷରୁ ମୋତେ ''ସିଗମା-ଜାଇ'' ଓ ରୟାସନ ସମିତି ପକ୍ଷରୁ ମଧ୍ୟ ''ଠାଉ-ଲାମ୍‌ଡ଼ା-ଉପ୍‌ସିଲନ୍'' ସମ୍ମାନ ମିଳିଲା । ଡକ୍ଟରେଟ୍ ହାସଲ କରିବା ପାଇଁ ୧୩୫ କ୍ରେଡ଼ିଟ୍‌ର ପାଠ୍ୟକ୍ରମ ସାରିବାକୁ ପଡ଼େ । ସେଥିଲାଗି ମୋତେ ବିଭିନ୍ନ ବିଭାଗରେ ଛବିଶଟି ପାଠ୍ୟକ୍ରମ ପଢ଼ିବାକୁ ହେଲା । ଗ୍ରାଜୁଏଟ୍ ସ୍କୁଲରେ ପ୍ରତିବର୍ଷ ଯେଉଁ ଦୁଇଜଣ ଛାତ୍ରଙ୍କୁ କୃତୀଛାତ୍ରଭାବେ ବଛାଯାଏ, ୧୯୬୭ ବର୍ଷରେ ତନ୍ମଧ୍ୟରୁ ମୁଁ ଜଣେ ହେବାର ସୌଭାଗ୍ୟ ଲାଭ କଲି । ସେଥିଲାଗି ମୋତେ ସାଉଥ୍‌ଡାକୋଟା ବିଶ୍ୱବିଦ୍ୟାଳୟର ''ଫାଇ-କାପ୍ପା-ଫାଇ'' ସମ୍ମାନ ମିଳିଲା । ନ୍ୟୁୟର୍କର ଏକ ଖାଦ୍ୟ ଗବେଷଣା ସଂସ୍ଥାପକ୍ଷରୁ ମୋତେ ଚାକିରୀ ମିଳିଗଲା । ମାତ୍ର ସେଠାରେ ଯୋଗ ଦେବା ପୂର୍ବରୁ ମୋ ବୋଉ ବାପାଙ୍କର ଅନୁମତି ପାଇଁ ଚିଠି ଲେଖିଲି । ମୋତେ ଶୀଘ୍ର ଘରକୁ ଫେରିଯିବା ପାଇଁ ବୋଉ

ଚିଠି ଦେଲା । ଦୀର୍ଘ ସାଢ଼େଚାରିବର୍ଷ କାଳ ଘରଛାଡ଼ି ରହିବାପରେ ୧୯୬୮ ମସିହା ଅଗଷ୍ଟ ମାସ ଶେଷ ଭାଗରେ ମୁଁ ଦେଶକୁ ଫେରି ଆସିଲି । ପୁଣିଥରେ ଆମେରିକା ଫେରିବାର ଇଚ୍ଛା ଆଉ ନଥିଲା । ତେଣୁ ଆମ ଦେଶରେ ଚାକିରି ପାଇଁ ଚେଷ୍ଟା କଲି ।''

ଭାରତ ବର୍ଷକୁ ଫେରିବାପରେ ସେ ହରିଆନା ରାଜ୍ୟର କର୍ଣ୍ଣାଲଠାରେ ଥିବା ଭାରତୀୟ ଦୁଗ୍ଧ ଗବେଷଣା ପ୍ରତିଷ୍ଠାନର ସିନିୟର ସାଇଣ୍ଟିଷ୍ଟ ଭାବେ ନିଯୁକ୍ତି ପାଇଲେ । କିଛି ପାରିବାରିକ ସମସ୍ୟା ହେତୁ ଏହି ନିଯୁକ୍ତିରେ ଯୋଗଦେବା ସଂଭବ ହେଲା ନାହିଁ । କିନ୍ତୁ ସେ ଯୋଗଦେଲେ ଗବେଷକ ଭାବରେ ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରରେ । ଜଣେ ଜ୍ଞାନୀ, ଅଧ୍ୟୟନଶୀଳ ମଣିଷ ହିସାବରେ ସେ ପରମ ସନ୍ତୋଷ ଲାଭକଲେ । ଗୁରୁପ୍ରସାଦ ଶିକ୍ଷାଦାନ କରି ପାଇଥିଲେ ସୁଖ ଓ ଶାନ୍ତି । ପୁଣି ଏହି ଗବେଷକଙ୍କ ଦୂରଦୃଷ୍ଟି ଭାରତୀୟ ଦୁଗ୍ଧ ବିଜ୍ଞାନ କଂଗ୍ରେସରେ ଓଡ଼ିଶାପାଇଁ ଆଣିଦେଲା ଏକ ନୂତନ ସୁଯୋଗ । ଗୁରୁପ୍ରସାଦ ଏହି କଥା ବର୍ଣ୍ଣନା କରିଛନ୍ତି - ''୧୯୬୯ ଡିସେମ୍ବର ମାସରେ ଗୁଜୁରାଟର ବରୋଦାଠାରେ ଭାରତୀୟ ଦୁଗ୍ଧ ବିଜ୍ଞାନ କଂଗ୍ରେସର ସପ୍ତମ ଅଧିବେଶନରେ ଯୋଗଦେବାକୁ ମୁଁ ବରୋଦା ଗଲି । ସେଠାରେ ଅମୁଲ୍‌ର ପ୍ରତିଷ୍ଠାତା ଡକ୍ଟର୍ କୁରୀଆନ୍‌ଙ୍କ ଅଧ୍ୟକ୍ଷତାରେ ଜାତୀୟ ଦୁଗ୍ଧ ବନ୍ୟା ଯୋଜନା ପ୍ରସ୍ତାବ ଆଲୋଚନା ବେଳେ ଓଡ଼ିଶା ରାଜ୍ୟକୁ ଏହି ଯୋଜନାର ଅନ୍ତର୍ଭୁକ୍ତ କରିବାକୁ ମୁଁ ଯୁକ୍ତି ବାଢ଼ିଲି । ଓଡ଼ିଶା ପଶୁପାଳନ ବିଭାଗର ନିର୍ଦ୍ଦେଶକ ଡକ୍ଟର ଗଣେଶ୍ୱର ବିଶ୍ୱାଳ ଓ ଉପ ନିର୍ଦ୍ଦେଶକ ରାଧାକୃଷ୍ଣ ସାହୁ ସେହି ଅଧିବେଶନରେ ଯୋଗଦେଇ ମୋର ଯୁକ୍ତି ଶୁଣିବା ପରେ ମୋତେ କଲେଜ ଛାଡ଼ି ବିଭାଗକୁ ଫେରିବା ପାଇଁ ଉପଦେଶ ଦେଲେ । ରାଧାକୃଷ୍ଣ ବାବୁ କହିଲେ, ଓଡ଼ିଶା ପଶୁପାଳନ ବିଭାଗରେ ତୁମପରି ଜଣେ ଉଚ୍ଚଶିକ୍ଷିତ ଉଦ୍ୟମୀ ଯୁବକର ଆବଶ୍ୟକତା ଅଧିକ । ତେଣୁ ତୁମପାଇଁ ଯୋଗ୍ୟ ପଦବୀ ସୃଷ୍ଟି କରାଇ ଠିକଣା ବେଳେ ଜଣାଇ ଦିଆଯିବ ।''

''ପଶୁଚିକିତ୍ସା ମହାବିଦ୍ୟାଳୟରେ ମୋ ଅଧୀନରେ ଜଣେ ଛାତ୍ର ମାଷ୍ଟର୍ସ କରି ବିଶ୍ୱବିଦ୍ୟାଳୟରୁ ସ୍ୱର୍ଣ୍ଣପଦକ ହାସଲ କଲା । ମୋର ଅନେକ ଛାତ୍ର ଭାରତୀୟ ଦୁଗ୍ଧ ବିଜ୍ଞାନ ପ୍ରତିଷ୍ଠାନରେ ଉଚ୍ଚଶିକ୍ଷା ପାଇଁ ସ୍ଥାନ ପାଇଗଲେ । କେତେକ ଛାତ୍ର ଭାରତୀୟ ଜୈବ ଗବେଷଣା ସେବାରେ ଯୋଗ୍ୟ ବିବେଚିତ ହୋଇ କେନ୍ଦ୍ରୀୟ ପଦପଦବୀରେ ଅଧିଷ୍ଠିତ ହେଲେ ।''

ଗୁରୁପ୍ରସାଦ କୃଷି ବିଶ୍ୱବିଦ୍ୟାଳୟରେ ଦୁଇବର୍ଷ ଦଶମାସ କାର୍ଯ୍ୟ କରିବା ପରେ ପଶୁପାଳନ ବିଭାଗର ଦୁଗ୍ଧଉତ୍ପାଦନ ସହକାରୀ ନିର୍ଦ୍ଦେଶକ ଭାବେ ଯୋଗଦେଲେ ।

ଏଠାରେ ଚାରିମାସ କାର୍ଯ୍ୟ କରିସାରିଲା ପରେ ଭାରତୀୟ କୃଷି ଗବେଷଣା ସଂସ୍ଥାର ଦୁଗ୍ଧଶୀତଳୀକରଣ ମୁଖ୍ୟ ଗବେଷକଭାବେ କଟକ ଦୁଗ୍ଧ ଯୋଗାଣ ସଂସ୍ଥା ଫୁଲନଖରାଠାରେ ଅବସ୍ଥାପିତ ହେଲେ । ଗୁରୁପ୍ରସାଦଙ୍କ ମନୋବୃତ୍ତି ଓ ଦୂରଦୃଷ୍ଟି ପ୍ରମାଣିତ ହେଲା ଏହି ଅନୁଷ୍ଠାନରେ । ନିଜର ପରିକଳ୍ପନାକୁ ସେ କାର୍ଯ୍ୟକାରୀ କଲେ । ତାଙ୍କ ଚେଷ୍ଟାରେ ଓଡ଼ିଶାର ଚାରିଟି 'ଜିଲାରେ ଦୁଗ୍ଧ ଉତ୍ପାଦନ ସଂଘ' ସୃଷ୍ଟି କରାଇ ସେମାନଙ୍କ ସହଯୋଗରେ ''ଓମ୍‌ଫେଡ୍'' ସୃଷ୍ଟି ପାଇଁ ସମସ୍ତ ପ୍ରାଥମିକ କାର୍ଯ୍ୟକରି ଉପନିର୍ଦ୍ଦେଶକଭାବେ ପଶୁପାଳନ ନିର୍ଦ୍ଦେଶାଳୟରେ ସେ ଯୋଗଦେଲେ । ୧୯୮୪ରେ ଗୁରୁପ୍ରସାଦ ପୋଲ୍‌ଟ୍ରି ଫେଡ଼େରେସ୍‌ର ପରିଚାଳନା ନିର୍ଦ୍ଦେଶକ ଭାବେ ନିଯୁକ୍ତି ପାଇଲେ । ପୋଲ୍‌ଟ୍ରି ଫେଡ଼େରେସନ୍ ନୂତନ ରୂପଲାଭ କଲା ତାଙ୍କ ଚେଷ୍ଟାରେ । ୧୯୯୦ ମସିହାରେ ସେ ଉତ୍ତରାଞ୍ଚଳର ଯୁଗ୍ମନିର୍ଦ୍ଦେଶକ ଭାବେ ସମ୍ବଲପୁର ଆସିଲେ । ଚିପିଲିମା ଠାରେ ୨୦୦୦ ଏକର ବିଶିଷ୍ଟ ରାଜ୍ୟ ପଶୁପ୍ରଜନନ ଫାର୍ମ ସହିତ ଉତ୍ତରାଞ୍ଚଳରେ ଦଶଟି ଜିଲ୍ଲା ତାଙ୍କ ଦାୟିତ୍ୱରେ ରହିଲା । ଏଠାରେ ତାଙ୍କ ଦକ୍ଷତା ପ୍ରମାଣିତ ହେଲା । ଫାର୍ମ ଓ ଜିଲ୍ଲା ମାନଙ୍କରେ ପଶୁପାଳନ ଓ ପ୍ରଶାସନିକ ଦିଗରୁ ହିଁ ବିଭାଗର ଉନ୍ନତି ସାଧିତ ହେଲା । ୧୯୯୩ ମସିହାରେ ସେ ପୁଣି ପଦୋନ୍ନତି ପାଇଲେ ଅତିରିକ୍ତ ନିର୍ଦ୍ଦେଶକ ପଦକୁ । ଫଳରେ କଟକସ୍ଥିତ ନିର୍ଦ୍ଦେଶାଳୟକୁ ସେ ଫେରିଆସିଲେ । ମଣିଷର ନିଷ୍ଠା ଓ କର୍ମଦକ୍ଷତା କେବେ ବ୍ୟର୍ଥ ଯାଏନାହିଁ - ତାହା ପ୍ରମାଣିତ ହେଲା ଗୁରୁପ୍ରସାଦଙ୍କ ଜୀବନରେ । ସେ ୧୯୯୪ରେ ପଦୋନ୍ନତି ପାଇ ପଶୁପାଳନ ଓ ଚିକିତ୍ସା ବିଭାଗର ନିର୍ଦ୍ଦେଶକ ଭାବେ ଦାୟିତ୍ୱ ଗ୍ରହଣ କଲେ । ସେ ନିର୍ଦ୍ଦେଶକ ଭାବେ ବହୁ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି ଏହି ବିଭାଗରେ । ସେଥିପାଇଁ ସେ ସ୍ମରଣୀୟ ହୋଇଛନ୍ତି । କର୍ମ ବହୁଳ ସରକାରୀ ଚାକିରୀରୁ ସେ ସୁନାମର ସହ ଅବସର ଗ୍ରହଣ କଲେ ଅକ୍ଟୋବର ୧୯୯୬ ମସିହାରେ ।

## ସାହିତ୍ୟ ସେବା

ଗୁରୁପ୍ରସାଦ ଓଡ଼ିଆଭାଷା, ସାହିତ୍ୟର ଜଣେ ଏକନିଷ୍ଠ ସେବକ । ସାହିତ୍ୟ ଭିତରେ ସେ ଆତ୍ମପ୍ରକାଶ କରିଛନ୍ତି ମଣିଷର କଥା କହିବାପାଇଁ । ସାହିତ୍ୟ ତାଙ୍କର ଚିନ୍ତା ଚେତନାର ପରିପ୍ରକାଶ ଲାଗି ଶ୍ରେଷ୍ଠ ମାଧ୍ୟମ । ଛାତ୍ରାବସ୍ଥାରୁ ସେ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ସରଳ, କୋମଳମତି ଗୁରୁପ୍ରସାଦଙ୍କ ହୃଦୟର ସ୍ୱର ପ୍ରତିଧ୍ୱନିତ ହୋଇଥିଲା ସାହିତ୍ୟରେ । ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କାଳରେ ସେ ପ୍ରଥମେ କବିତା ଲେଖିଥିଲେ । କବିତା ଲେଖାରୁ ହିଁ ତାଙ୍କ ସାହିତ୍ୟର ଶୁଭାରମ୍ଭ । ସେ ମଧ୍ୟ ଏହା ସ୍ୱୀକାର କରି ଲେଖିଛନ୍ତି - ''ଅଷ୍ଟମ ଶ୍ରେଣୀରେ ପଢୁଥିଲାବେଳେ ମୁଁ କବିତା ଲେଖିବାକୁ ଆରମ୍ଭ କଲି । ମୋର ପ୍ରଥମ କବିତା 'ବର୍ଷା' ଆମ ବିଦ୍ୟାଳୟ ପତ୍ରିକା 'ଅଳକା'ରେ ପ୍ରକାଶ ପାଇଲା । ମଝିରେ ମଝିରେ ମୁଁ ମୀନାବଜାରରେ କବିତା ଦେଉଥିଲି ।''

ନିଜର କର୍ମବହୁଳ ଜୀବନରେ ବୈଷୟିକ ପୁସ୍ତକ ରଚନା କରି ପ୍ରଶଂସିତ ହୋଇଥିଲେ ସେ । ଏହି ସୁନ୍ଦର ରଚନା ଦେଖି ତାଙ୍କର ଘନିଷ୍ଠ ବନ୍ଧୁ ଓ ସହଯୋଗୀ ବିଶିଷ୍ଟ ଅନୁବାଦକ ଶ୍ରୀ ଯୁଗଳ କିଶୋର ଦତ୍ତ ତାଙ୍କୁ ଗଳ୍ପ ଲେଖିବାପାଇଁ କହିଲେ । ଏହି କେତୋଟି ଉତ୍ସାହ ବାଣୀରେ ସେ ମୁଗ୍ଧହୋଇ ଗଳ୍ପ ଲେଖିବା ଆରମ୍ଭ କଲେ ଏବଂ ତାହା ବିଭିନ୍ନ ପତ୍ର/ପତ୍ରିକାରେ ପ୍ରକାଶିତ ହେଲା । ୧୯୮୮ ମସିହାରେ ତାଙ୍କର ପ୍ରଥମ ଗଳ୍ପ ସଂକଳନ ''ସାଲବେଗର ଅଶ୍ରୁ'' ପ୍ରକାଶ ପାଇଲା । ସାରସ୍ୱତ ଜୀବନର କଥା କହିବାକୁ ଯାଇ ଗୁରୁପ୍ରସାଦ ତାଙ୍କ ସୃଷ୍ଟିର ସଂକ୍ଷିପ୍ତ ପରିଚୟ ପ୍ରଦାନ କରିଛନ୍ତି – ''୧୯୮୪ ମସିହାରେ ପ୍ରଖ୍ୟାତ ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦ ମୋତେ ଡାକି ଯୁକ୍ତରାଷ୍ଟ୍ର ଆମେରିକା ଉପରେ ଶିଶୁ ଓ କିଶୋରମାନଙ୍କ ପାଇଁ ସଂସାର ପତ୍ରିକାରେ ପ୍ରତିମାସରେ ଲେଖିବାକୁ ଅନୁରୋଧ କଲେ । ପ୍ରଥମ ଦୁଇ ତିନିଟା ଲେଖା ପ୍ରକାଶ ପାଇବାପରେ ପାଠକ ମହଲରୁ ବହୁ ପ୍ରଶଂସା ପତ୍ର ମିଳିଲା । ତାପରେ ବର୍ଷ ବର୍ଷ ଧରି ସାତବର୍ଷ ମୁଁ ସଂସାରରେ ଲେଖିଲି । ୧୯୯୦ ମସିହାରେ ବିଗତ ପାଞ୍ଚବର୍ଷର ଲେଖା ସଂକଳିତ କରି ''ପାତାଳ ପୁରୀର ହାଲଚାଲ'' ୧ମ ଓ ୨ୟ ଭାଗ ବହି ଦୁଇଟି ପ୍ରକାଶ ପାଇଲା । ଭାଗ୍ୟକୁ ସେହି ପୁସ୍ତକ ଦୁଇଟି ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଗି ମନୋନୀତ ହେଲା ।

ଗୁରୁପ୍ରସାଦଙ୍କ ସାରସ୍ୱତ ରଚନା ଓଡ଼ିଆ ସାହିତ୍ୟକୁ ବିଭିନ୍ନ ଦୃଷ୍ଟିକୋଣରୁ ସମୃଦ୍ଧ କରିଛି । ସେ ଜଣେ ମୌଳିକ ସ୍ରଷ୍ଟା । ତାଙ୍କ ରଚିତ ଗଳ୍ପ ସଂକଳନ 'ସାଲବେଗର ଅଶ୍ରୁ', 'କହେ ସାଲବେଗହୀନ', 'ନୀଳଚକ୍ରର ଆହ୍ୱାନ', 'ବିଧ୍ୱସ୍ତ କଳିକା', 'ଦୁଃଖ କହିବି କି ସୁଖ କହିବି', ଉପନ୍ୟାସ – 'ଯେ ଯଥା ମାଂ ପ୍ରପଦ୍ୟନ୍ତେ', 'ମୋହନବଂଶୀ', 'ଗାନ୍ଧିବାଦର ହତ୍ୟା', ଉନ୍ନତ କଥାଶିଳ୍ପୀର ପରିଚୟ ପ୍ରଦାନ କରେ । ଗୁରୁପ୍ରସାଦଙ୍କ ଲିଖିତ ଭ୍ରମଣ କାହାଣୀ – 'ପାତାଳପୁରୀର ହାଲଚାଲ' ୧ମ ଭାଗ, ୨ୟ ଭାଗ, 'ଯେଦେଶେ ଯାଇ', 'ଦୂର ସାଗର ପାରେ' ଭିନ୍ନ ସ୍ୱାଦର ରଚନା । ଭ୍ରମଣ କାହାଣୀରେ ତାଙ୍କ ବର୍ଣ୍ଣନା ସତ୍ୟନିଷ୍ଠ; ସହଜ ଓ ସରଳ ମନେହୁଏ । ''ବନ୍ଦେ ଉତ୍କଳ ଜନନୀ'' ତାଙ୍କର ଏକ ଅନବଦ୍ୟ ପ୍ରବନ୍ଧ ସଂକଳନ ।

## ଅନ୍ୟାନ୍ୟ ରଚନା :

ବୈଷୟିକ ରଚନା କ୍ଷେତ୍ରରେ ତାଙ୍କର କୃତିତ୍ୱ ବେଶ୍ ସ୍ୱୀକୃତ – 'ଗୋଖାଦ୍ୟ', 'ଉନ୍ନତ ବାଛୁରୀପାଳନ', 'ଛାଗପାଳନ', 'ମେଷ ପାଳନ', 'ଗୋପାଳନ', 'ସବୁଜ ଗୋଖାଦ୍ୟ' ପ୍ରଭୃତି ପଶୁପାଳନ ଓ କୃଷିକ୍ଷେତ୍ରରେ ଉଲ୍ଲେଖନୀୟ ରଚନା । ବିଜ୍ଞାନ କ୍ଷେତ୍ରରେ ତାଙ୍କର ଦୁଇଟି ସନ୍ଦର୍ଭ ପ୍ରକାଶନପରେ ଆମେରିକାର ବିଜ୍ଞାନ ପତ୍ର ପତ୍ରିକାରେ

୧୧ଟି ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶିତ ହୋଇଛି । ଭାରତୀୟ ବିଜ୍ଞାନ ପତ୍ର ପତ୍ରିକାରେ ୧୮ଟି ଗବେଷଣାତ୍ମକ ପ୍ରବନ୍ଧ ମଧ୍ୟ ସ୍ଥାନପାଇବା ସହ ଗୁରୁପ୍ରସାଦଙ୍କ ବୈଜ୍ଞାନିକ ଦୃଷ୍ଟିକୋଣର ସୂଚନା ପ୍ରଦାନ କରିଛନ୍ତି ।

**ଉତ୍କଳ ସମ୍ମିଳନୀର ଅଗ୍ରଣୀ କର୍ମକର୍ତ୍ତା :**

ମାତୃଭାଷା ମାତୃଭୂମିର ସେବା କରିବାପାଇଁ ସଂକଳ୍ପବଦ୍ଧ ହୋଇଛନ୍ତି ଗୁରୁପ୍ରସାଦ । ନିରବଛିନ୍ନ ଭାବରେ ସେ ଓଡ଼ିଶାର ସ୍ୱାଭିମାନ ଓ ବିକାଶ ପାଇଁ କର୍ମରତ । ସରକାରୀ କର୍ମରେ ଥିଲାବେଳେ ଏବଂ ଅବସର ନେଲାପରେ ଅଧିକ ସକ୍ରିୟ ହୋଇଛନ୍ତି ସେ । ଉତ୍କଳମାତାର ସୁଯୋଗ୍ୟ ସନ୍ତାନ ଆମ ଜାତିର ଗୌରବ ମଧୁସୂଦନଙ୍କ ପ୍ରତିଷ୍ଠିତ ଉତ୍କଳ ସମ୍ମିଳନୀକୁ ଗତିଶୀଳ କରାଇବାରେ ସଂପ୍ରତି ଗୁରୁପ୍ରସାଦଙ୍କ ଭୂମିକା ପ୍ରଶଂସନୀୟ । ମଧୁବାବୁଙ୍କୁ ନିଜ ଆଦର୍ଶର କେନ୍ଦ୍ରବିନ୍ଦୁ ମନେକରି ସେ ଆନ୍ତରିକତାର ସହ କାର୍ଯ୍ୟ କରୁଛନ୍ତି । ଉତ୍କଳ ସମ୍ମିଳନୀର ଶତାବ୍ଦୀ ସମାରୋହ ପାଳନରେ ସେ ତାଙ୍କର ଦାୟିତ୍ୱ ଓ ନେତୃତ୍ୱର ପରାକାଷ୍ଠା ଦେଖାଇଛନ୍ତି । ଓଡ଼ିଆ ଭାଷାର ସୁରକ୍ଷା, ଏହାର ବିକାଶ ଓ ସର୍ବୋପରି ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆଭାଷାଭାଷୀ ମାନଙ୍କର ସ୍ୱାର୍ଥରକ୍ଷା ପାଇଁ ସେ ସଦାଜାଗ୍ରତ ଓ କର୍ମତତ୍ପର । ଉତ୍କଳ ସମ୍ମିଳନୀର ସାମଗ୍ରିକ ଉନ୍ନତିପାଇଁ ସେ ସଦା ଚେଷ୍ଟିତ । ଗୁରୁପ୍ରସାଦ ଏ ପ୍ରସଙ୍ଗରେ କହିଛନ୍ତି - ''ଉତ୍କଳ ସମ୍ମିଳନୀ କର୍ଯ୍ୟପାଇଁ ପ୍ରବଳ ଅର୍ଥାଭାବ, ଏପରିକି କାର୍ଯ୍ୟାଳୟ ଗୃହର ଭଡ଼ା ପଇଠ କରିବାକୁ ଟଙ୍କା ନଥାଏ । ତେଣୁ ୧୯୯୮ ମସିହାରେ ମୋର ଯୁକ୍ତରାଷ୍ଟ୍ର ଆମେରିକା ଯିବା ସମୟରେ ଆମେରିକାର ମିନିଆପଲିସ୍, ଡେଟ୍ରୟେଟ୍, ନାସଭିଲ୍ଲେ, ଡଲାସ୍, ନ୍ୟୁୟର୍କ, ୱାଶିଂଟନ ଏବଂ କାନାଡ଼ାର ମଣ୍ଟ୍ରିଲ୍‌ଠାରେ ଆଠଟି ଉତ୍କଳ ସମ୍ମିଳନୀ ଶାଖା ପ୍ରତିଷ୍ଠା କରି ଦୁଇଶହ କୋଡ଼ିଏ ଜଣ ଆଜୀବନ ସଦସ୍ୟଙ୍କଠାରୁ ଦୁଇଲକ୍ଷ ଟଙ୍କା ଆଣି ଉତ୍କଳ ସମ୍ମିଳନୀ ନାମରେ ସ୍ଥାୟିଜମା କରିଥିଲି । ପୁଣି ୨୦୦୨ ମସିହାରେ ଦ୍ୱିତୀୟ ଥର ଆମେରିକା ଗଲାବେଳେ ଉତ୍କଳ ସମ୍ମିଳନୀ ଜରିଆରେ ଝାଡ଼ଖଣ୍ଡରେ ଓଡ଼ିଆ ବିଦ୍ୟାଳୟ ଖୋଲିବାକୁ ପୁଣି ପାଞ୍ଚଲକ୍ଷ ଟଙ୍କା ମିଳିଲା । ଏ ସମସ୍ତ ଟଙ୍କା ଏ ପର୍ଯ୍ୟନ୍ତ ସ୍ଥାୟି ଜମା ହୋଇ ରଖାଯାଇଛି । ସୁଧ ଟଙ୍କାରେ ଝାଡ଼ଖଣ୍ଡରେ ୨୦୦୫ ମସହା ମାର୍ଚ୍ଚ ଶେଷପର୍ଯ୍ୟନ୍ତ ଦୁଇଟି ଓଡ଼ିଆ ବିଦ୍ୟାଳୟର ଶିକ୍ଷକ ମାନଙ୍କୁ ଦରମା ଦିଆଯାଉଛି । ପରବର୍ତ୍ତୀ ସମୟରେ ଏହି ଅର୍ଥ ମେଦିନୀପୁର ଜିଲ୍ଲାରେ ଖର୍ଚ୍ଚ ହେବାକୁ ସ୍ଥିର ହୋଇଛି । ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷାଭାଷୀମାନଙ୍କର ମର୍ମବେଦନାକୁ ଯଥାର୍ଥ ଭାବରେ ଉପଲବ୍ଧି କରିଛନ୍ତି ଗୁରୁପ୍ରସାଦ । ତାଙ୍କର ନିଜ ଭାଷାରେ - ''ବିଚ୍ଛିନ୍ନାଞ୍ଚଳରେ ଥିବା ଓଡ଼ିଆମାନଙ୍କୁ ମୁଁ ଭଲପାଏ । ସେମନେ ମୂଳ ଭୂଖଣ୍ଡରୁ ଅଲଗା

ହୋଇ ପଡ଼ୋଶୀ ରାଜ୍ୟମାନଙ୍କରେ ଯେଭଳି କାଳାତିପାତ କରୁଛନ୍ତି, ନ ଦେଖିଲା ଲୋକ ବୁଝିପାରିବ ନାହିଁ । ସେମାନଙ୍କ ମାତୃଭାଷା ଓ ସଂସ୍କୃତି ଉପରେ ଶତାଧିକ ବର୍ଷ ଧରି ଆକ୍ରମଣ ଅବ୍ୟାହତ ରହିଛି । ଏବେ ସେମାନେ ସଂପୃକ୍ତ ରାଜ୍ୟମାନଙ୍କର ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଆପଣେଇ ନେଇଥିଲେ ମଧ୍ୟ ଓଡ଼ିଆ ବୋଲି ସେମାନଙ୍କୁ ଭିନ୍ନ ଦୃଷ୍ଟିରେ ଦେଖାଯାଉଛି । ଫଳରେ ଚାକିରୀ, ବ୍ୟବସାୟ ବା ସରକାରୀ ପ୍ରୋତ୍ସାହନ ଲାଭ କରିବା କ୍ଷେତ୍ରରେ ସେମାନଙ୍କପ୍ରତି ବୈମାତୃକ ଭାବ ପ୍ରଦର୍ଶନ କରାଯାଉଛି । ଫଳରେ ଅଧିକାଂଶ ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ପରିବାର ଦାରିଦ୍ର୍ୟ-ପଙ୍କରେ ଜଡ଼ସଡ଼ ହୋଇ ଦୁଃଖରେ ଅଛନ୍ତି । ସେମାନଙ୍କ ଲାଗି କିଛି କରିବା ଓଡ଼ିଶା ସରକାର ତଥା ଓଡ଼ିଶାର ଜନ ସାଧାରଣଙ୍କର ନୈତିକ ଦାୟିତ୍ୱ ।''

ଉତ୍କଳ ସମ୍ମିଳନୀର କେନ୍ଦ୍ରୀୟ ଉପସଭାପତି ଭାବେ କାର୍ଯ୍ୟରତ ଗୁରୁପ୍ରସାଦଙ୍କ ଅଧିକାଂଶ ସମୟ ଅତିବାହିତ ହେଉଛି ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନଙ୍କର ସ୍ୱାର୍ଥ ରକ୍ଷାପାଇଁ ।

## ଏକ ନୁହେଁ ଅନେକ ସଂଗଠନ

'ଉତ୍କଳ ସମ୍ମିଳନୀ' ପାଇଁ ନିଜକୁ ନିୟୋଜିତ କରିଥିବା ଗୁରୁପ୍ରସାଦ ଓଡ଼ିଶାର ବହୁ ସାରସ୍ୱତ, ସାଂସ୍କୃତିକ ସଂଗଠନ ସହ ଜଡ଼ିତ ଥାଇ ଅନେକ ଅନୁଷ୍ଠାନର ନେତୃତ୍ୱ ନେଇଛନ୍ତି । ଓଡ଼ିଶାର ଲେଖକ ମାନଙ୍କଦ୍ୱାରା ପରିଚାଳିତ କଟକ ଲେଖକ ସହଯୋଗ ସମିତିର ସଭାପତି ଭାବେ ୧୯୯୭ ମସିହାରୁ ଏଯାବତ୍ ସେ କାର୍ଯ୍ୟ କରିବାସହ ଏହାର ସ୍ଥାୟୀ ଗୃହ ନିର୍ମାଣ ଓ ପ୍ରକାଶନର ଅଗ୍ରଗତିରେ କାର୍ଯ୍ୟ କରିଛନ୍ତି । ଶତାୟୁ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ସେ ଆଜୀବନ ସଦସ୍ୟ । ସେହିପରି ଓଡ଼ିଶା ଲେଖକ ସାମ୍ମୁଖ୍ୟ, ଉତ୍କଳ ଗୋମଙ୍ଗଳ ସମିତି, ବିଜ୍ଞାନ ପ୍ରଚାର ସମିତି ବହୁ ପ୍ରସିଦ୍ଧ ଅନୁଷ୍ଠାନର ସେ କର୍ମକର୍ତ୍ତା ଭାବେ କାର୍ଯ୍ୟକରିଛନ୍ତି । ଜୀବପ୍ରତି ଦୟା - ଜୀବପ୍ରତି କରୁଣାଭାବ – ଗୁରୁପ୍ରସାଦଙ୍କ କାର୍ଯ୍ୟଧାରାର ଏକ ଅଙ୍ଗବିଶେଷ । ଜୀବମାନଙ୍କୁ ଦୟାପ୍ରଦର୍ଶନ କରିବା ପାଇଁ ଗଠିତ ଅନୁଷ୍ଠାନ 'ଓଡ଼ିଶା ଜୀବେ ହିତୈଷୀ ସଂଘ'ର ସଭାପତି ଭାବେ ୧୯୯୬ ମସିହାରୁ ଏପର୍ଯ୍ୟନ୍ତ କାର୍ଯ୍ୟ କରିଆସୁଛନ୍ତି ଗୁରୁପ୍ରସାଦ । ସେହିପରି ତାଙ୍କ ଜୀବନ ଗଠନର ପବିତ୍ର ପୀଠସ୍ଥଳୀ ଶ୍ରୀକୃଷ୍ଣ ଏକାଡ଼େମୀ ପୁରାତନ ଛାତ୍ର ସଂସଦର ସଭାପତି ଭାବେ ଦାୟିତ୍ୱ ସଂପାଦନ କରିଆସିଛନ୍ତି ।

ଏତଦ୍ ବ୍ୟତୀତ ସେ ଆମେରିକା, ଇରାନ୍, ଇସ୍ରାଏଲ, ଫ୍ରାନ୍ସ, ଜାପାନ, ହଂକଂ, କାନାଡ଼ା, ୟୁନାଇଟେଡ୍ କିଙ୍ଗଡ଼ମ୍ ପ୍ରଭୃତି ପରିଭ୍ରମଣ କରି ବିପୁଳ ଅଭିଜ୍ଞତା ଅର୍ଜନ କରିପାରିଛନ୍ତି ।

## ସମ୍ମାନ ଓ ସ୍ୱୀକୃତି

ଗୁରୁପ୍ରସାଦଙ୍କ କର୍ମ ବହୁଳ ଜୀବନ ଓ ସ୍ମରଣୀୟ ଅବଦାନକୁ ବହୁ ଅନୁଷ୍ଠାନ, ବ୍ୟକ୍ତିବିଶେଷ ଶ୍ରଦ୍ଧା ଓ ଶୁଭେଚ୍ଛା ଜଣାଇବା ସହ ସ୍ୱୀକୃତି ମଧ୍ୟ ଜଣାଇଛନ୍ତି ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କୁ ''ପାତାଳପୁରୀର ହାଲ୍‌ଚାଲ୍'' ପୁସ୍ତକ ପାଇଁ ୧୯୯୦ ରେ ପୁରସ୍କାର ପ୍ରଦାନ କରିଛନ୍ତି । ବିଜ୍ଞାନ ସାହିତ୍ୟକୁ ତାଙ୍କର ଅନବଦ୍ୟ ଅବଦାନକୁ ସ୍ୱୀକୃତି ଜଣାଇ ସମ୍ମାନିତ କରିଛନ୍ତି ଶତାବ୍ଦୀ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ ଓ 'ସଂସାର' ପତ୍ରିକା । କେବଳ ଦେଶନୁହେଁ ଦେଶ ବାହାରେ ମଧ୍ୟ ତାଙ୍କର କୃତିକୁ ସ୍ୱୀକୃତି ମିଳିଛି । ବିଜ୍ଞାନକ୍ଷେତ୍ରରେ ଅବଦାନ ପାଇଁ ଯୁକ୍ତରାଷ୍ଟ୍ର ଆମେରିକାର 'ଫାଇ କାପ୍ପା ଫାଇ', 'ଗାମ୍ମାସିଗ୍‌ମା ଡ଼େଲ୍‌ଟା', 'ସିଗ୍‌ମା-ଜାଇ' ଏବଂ 'ଠାଉ-ଲାମ୍ବଡ଼ା-ଉପ୍‌ସିଲୋନ୍' ସମ୍ମାନ ଗୁରୁପ୍ରସାଦ ଗ୍ରହଣ କରି ଗୌରବାନ୍ୱିତ ହୋଇଛନ୍ତି ।

## ପାରିବାରିକ ଜୀବନ

ଗୁରୁପ୍ରସାଦଙ୍କ ପାରିବାରିକ ଜୀବନ ସୁଖ, ଶାନ୍ତିର ଜୀବନ । ସଂଘର୍ଷ ଭିତରେ ଜୀବନ ବିତାଇଥିବା ଗୁରୁପ୍ରସାଦଙ୍କ ଉତ୍ତର ଜୀବନ ବେଶ୍ ଆନନ୍ଦମୟ । ଈଶ୍ୱରଙ୍କ କରୁଣା ତାଙ୍କ ଉପରେ ଝରିପଡ଼ିଛି । ତାଙ୍କର ବିବାହ ହୋଇଥିଲା ଛାତ୍ରାବସ୍ଥାରେ ଅର୍ଥାତ୍ ପଶୁଚିକିତ୍ସା ବିଜ୍ଞାନ ମହାବିଦ୍ୟାଳୟର ତୃତୀୟ ବର୍ଷ ଛାତ୍ର ଥିବା ସମୟରେ । ୧୯୫୯ ମସିହା ଜୁଲାଇ ୨ ତାରିଖରେ କେନ୍ଦ୍ରାପଡ଼ାର ହାଟବାଣପୁର ଗ୍ରାମର ଯୋଗେନ୍ଦ୍ର ନାଥ ମହାନ୍ତିଙ୍କ ଜ୍ୟେଷ୍ଠା କନ୍ୟା ସ୍ନେହଲତାଙ୍କ ସହିତ । ସ୍ନେହଲତା ସ୍ନେହ ରଜ୍ଜୁରେ ବାନ୍ଧି ଦେଇଛନ୍ତି ସମଗ୍ର ପରିବାରକୁ । ସ୍ନେହଲତାଙ୍କ ଘନିଷ୍ଠ ସହଯୋଗ ଓ ଭରସା ଗୁରୁପ୍ରସାଦଙ୍କୁ ସଫଳକାମୀ କରାଇଛି । ସକଳ ଅସୁବିଧା, ସମସ୍ୟାକୁ ସେ ଆମୂଳ କରି ପ୍ରଦାନ କରିଛନ୍ତି ଅମୃତମୟ ପାରିବାରିକ ଜୀବନ । ସ୍ନେହଲତାଙ୍କ ଅବଦାନ ବାସ୍ତବିକ ଅବର୍ଣ୍ଣନୀୟ । ତାଙ୍କ ପୁତ୍ର ଏହି କଥାକୁ ସ୍ୱୀକାର କରି ଯଥାର୍ଥରେ ଲେଖିଛନ୍ତି – ''ଯେତେବେଳେ ବାପାଙ୍କ ସଫଳତାର କାରଣ ସଂପର୍କରେ ମନ ଭିତରେ ପ୍ରଶ୍ନଉଠେ, ସେତେବେଳେ ମୋ ବୋଉର ମୁହଁ ନାଚିଯାଏ ଆଖିଆଗରେ, ବିଗତ ୪୫ ବର୍ଷଧରି ଏକୁଟିଆ ମୋ ବୋଉ ସ୍ନେହଲତା ବିନାଦ୍ୱିଧାରେ ନିଃସ୍ୱାର୍ଥପର ଭାବେ ବାପାଙ୍କୁ ସାହାଯ୍ୟ କରିଆସିଛି । ଗୁରୁପ୍ରସାଦ ଏକ କନ୍ୟା ଓ ଦୁଇପୁଅଙ୍କ ଜନକ । କନ୍ୟାଙ୍କ ନାମ ଦେବଶ୍ରୀ । ଜାମାତା – ବାଣୀପ୍ରସନ୍ନ ଆମେରିକାର ଏକ ଖ୍ୟାତନାମା ମେଟାଲ କଂପାନିର ମୁଖ୍ୟ କାର୍ଯ୍ୟନିର୍ବାହୀ । ଜ୍ୟେଷ୍ଠପୁତ୍ର-ବିଭୂତି ପ୍ରସାଦ କଟକ ବାଦାମବାଡ଼ିର ଆଲିପିଙ୍ଗଳ ନିବାସରେ ରହନ୍ତି । ବଡ଼ବୋହୁ ସେବାରାଣୀ ଜଣେ ସୁପରିଚିତା ଗାୟିକା । ସାନପୁଅ ଇଂ ଡକ୍ଟର ଗୋପାଳ ପ୍ରସାଦ ମହାନ୍ତି ଆମେରିକାରେ ଅବସ୍ଥାପିତ । ସେ ଏକ ପ୍ରସିଦ୍ଧ

ମେଡ଼ିକାଲ ଯନ୍ତ୍ରପାତି ପ୍ରସ୍ତୁତକାରୀ ସଂସ୍ଥାରେ କାର୍ଯ୍ୟନିର୍ବାହୀ ଭାବରେ କର୍ମରତ । ସେ ସ୍ମିତାଙ୍କୁ ବିବାହ କରିଛନ୍ତି । ଗୋପାଳ ପ୍ରସାଦଙ୍କ ଦୃଷ୍ଟିରେ ତାଙ୍କ ପିତା ମହାନ୍ । ପିତାଙ୍କ ମହନୀୟ ଗୁଣାବଳୀ ତାଙ୍କୁ ଅନୁପ୍ରାଣିତ କରିଛି । ଗୁରୁପ୍ରସାଦ ଜଣେ ଭଲ ବାପା – ଏକଥା ସ୍ୱୀକାର କରିଛନ୍ତି ତାଙ୍କ ପିଲାମାନେ । ପୁତ୍ର ଗୋପାଳ ପ୍ରସାଦ ତେଣୁ କୁହନ୍ତି – ମୁଁ ବାପାଙ୍କୁ ଦେଖିଲା ବେଳେ, ପୁଅକୁ କିପରି ମଣିଷକରି ଠିଆ କରିବାକୁ ହୁଏ ସେ କଥା ତାଙ୍କୁ ଠିକ୍ ଜଣାଥିଲା ବୋଲି ଅନୁଭବ କରେ । ବାପା ମାଆଙ୍କୁ କିପରି ସ୍ନେହ ଶ୍ରଦ୍ଧା ଓ ଭକ୍ତି କରିବାକୁ ହୁଏ ତାହା ମୁଁ ବାପାଙ୍କଠାରୁ ଶିଖିଛି । ମୋ ଶିକ୍ଷାର ମାଧ୍ୟମ ଥିଲା ତାଙ୍କର ନିଜ ପିତାମାତାଙ୍କ ପ୍ରତି ସ୍ନେହଶ୍ରଦ୍ଧା ଓ ଭକ୍ତି କରିବାର ପ୍ରୟାସ । ନିଜର ସାଙ୍ଗସାଥି ଓ ବନ୍ଧୁବାନ୍ଧବଙ୍କ ସହିତ ବିସ୍ତୃତ ପରିବାରବର୍ଗଙ୍କ ସହିତ୍ କିପରି ସଂପର୍କ ରଖିବାକୁ ହୁଏ ତାହା ମୁଁ ଶିଖିଥିଲି ବାପାଙ୍କଠାରୁ । ସବୁ ସଫଳତାର କାରଣଥିଲା ତାଙ୍କର ନିଷ୍ଠା ଓ ଦୂରଦୃଷ୍ଟି ।'' ପିଲାମାନେ କେବଳ ସଂପତ୍ତି, ଅର୍ଥର ଉତ୍ତାରଧିକାରୀ ହୋଇଥାନ୍ତି । ସେଥିପାଇଁ ପିତାଙ୍କ ଆଦର୍ଶ ଓ ଆଚରଣକୁ ସେ ମୁକ୍ତ କଣ୍ଠରେ ପ୍ରଶଂସା କରିଛନ୍ତି । ଆମେରିକାରେ ରହୁଥିବା ତାଙ୍କର ସୁଯୋଗ୍ୟ ସନ୍ତାନ ଗୋପାଳ ପ୍ରସାଦ କହନ୍ତି –''ମାତୃଭୂମି ଓଡ଼ିଶା ଏବଂ ଓଡ଼ିଆ ଭାଷାପ୍ରତି ମୋ ମନରେ ଆଗ୍ରହ ଓ ମମତା ସୃଷ୍ଟି କରିବାର କାରଣ ଥିଲେ ବାପା । ଭାରତର ଉନ୍ନତି ଲାଗି ଅର୍ଥନୈତିକ ଦିଗରୁ ଓଡ଼ିଶାବାସୀଙ୍କ ଉନ୍ନତିର ଆବଶ୍ୟକତା ବିଷୟରେ ମୁଁ ଶିଖିଥିଲି ବାପାଙ୍କଠାରୁ ।''

## ଶେଷକଥା

ଗୁରୁପ୍ରସାଦଙ୍କ ଜୀବନ କର୍ମମୟ । କର୍ମବିନା ତାଙ୍କର ମୁକ୍ତିନାହିଁ । ସେ କର୍ମ ବ୍ୟକ୍ତିଗତ କର୍ମ ନୁହେଁ । ତାହା ପୁଣି ସାମୂହିକ ଜାତୀୟ କାର୍ଯ୍ୟ । ''ଜୀବନ ଜଣଙ୍କ ସ୍ୱାର୍ଥପାଇଁ ନୁହେଁ ଗଣଙ୍କ ସ୍ୱାର୍ଥପାଇଁ ଉଦ୍ଦିଷ୍ଟ ।'' ସେ ଏହା ଉପଲବ୍ଧି କରି କର୍ମପଥରେ ଅଗ୍ରସର ହୋଇଛନ୍ତି । ସେ ଏଥିପାଇଁ ପ୍ରସ୍ତୁତ କରିଛନ୍ତି ବ୍ୟାପକ ଯୋଜନା ଓ କାର୍ଯ୍ୟକ୍ରମ । ନିଜର ଗଭୀର ଆତ୍ମବିଶ୍ୱାସ ରହିଛି । ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆମାନଙ୍କ ସେବାରେ ନିଜକୁ ନିୟୋଜିତ କରିବାରେ ଓଡ଼ିଆ ସଂସ୍କୃତି, ସ୍ୱାଭିମାନ ସୁରକ୍ଷା ପାଇଁ ସେ ସଂକଳ୍ପବଦ୍ଧ । ତାଙ୍କ ଭାଷାରେ ବିଚ୍ଛିନ୍ନାଞ୍ଚଳରେ ଥିବା ଓଡ଼ିଆ ମାନଙ୍କୁ ମୁଁ ଭଲପାଏ । ସେମାନେ ମୂଳ ଭୂଖଣ୍ଡରୁ ଅଲଗା ହୋଇ ପଡ଼ୋଶୀ ରାଜ୍ୟମାନଙ୍କରେ ଯେଉଁଭଳି କାଳାତିପାତ କରୁଛନ୍ତି, ନ ଦେଖିଲା ଲୋକ ବୁଝି ପାରିବ ନାହିଁ । ସେମାନଙ୍କ ମାତୃଭାଷା ଓ ସଂସ୍କୃତିଉପରେ ଶତାଧିକ ବର୍ଷଧରି ଆକ୍ରମଣ ଅବ୍ୟାହତ ରହିଛି । ଏବେ ସେମାନେ ସଂପୃକ୍ତ ରାଜ୍ୟମାନଙ୍କର ଭାଷା ସାହିତ୍ୟ ଓ ସଂସ୍କୃତିକୁ ଆପଣେଇ ନେଇଥିଲେ ମଧ ଓଡ଼ିଆ ବୋଲି ସେମାନଙ୍କୁ ଭିନ୍ନ ଦୃଷ୍ଟିରେ ଦେଖାଯାଉଛି । ଫଳରେ ଚାକିରୀ, ବ୍ୟବସାୟ ବା ସରକାରୀ ପ୍ରୋତ୍ସାହନ ଲାଭ କରିବା

କ୍ଷେତ୍ରରେ ସେମାନଙ୍କ ପ୍ରତି ବୈମାତୃକଭାବ ପ୍ରଦର୍ଶନ କରାଯାଉଛି । ତେଣୁ ଅଧିକାଂଶ ଓଡ଼ିଆ ପରିବାର ବିଚ୍ଛିନ୍ନାଞ୍ଚଳ ମାନଙ୍କରେ ଦାରିଦ୍ର୍ୟ ପଙ୍କରେ ଜଡ଼ସଡ଼ ହୋଇ ଦୁଃଖରେ ଅଛନ୍ତି । ସେମାନଙ୍କ ଲାଗି କିଛି କରିବା ଓଡ଼ିଶା ସରକାର ତଥା ଓଡ଼ିଶାର ଜନସାଧାରଣ ଙ୍କର ନୈତିକ ଦାୟିତ୍ୱ ।''

ଏ ବିଶାଳ ସୃଷ୍ଟିରେ ଯାହା ହୋଇଛି, ହେଉଛି, ହେବ ତାହା ଈଶ୍ୱରଙ୍କ ଇଚ୍ଛା ବୋଲି ଗୁରୁପ୍ରସାଦ ଭାବନ୍ତି । ଜୀବନର ଉଠାଣି, ଗଡ଼ାଣିରେ ଈଶ୍ୱର ତାଙ୍କୁ ସହାୟ ହୁଅନ୍ତି ବୋଲି ସେ କହିଛନ୍ତି । ଏପରିକି ନିଶ୍ଚିତ ମୃତ୍ୟୁମୁଖରୁ ସେ ଅସଂଭବ ଭାବେ ରକ୍ଷା ପାଇଛନ୍ତି । ତାହା କେବଳ ସେହି ସମ୍ଭବ-ଅସମ୍ଭବର କର୍ତ୍ତା ଈଶ୍ୱରଙ୍କ ଆଶୀର୍ବାଦ ବିନା ହୁଅନ୍ତାନାହିଁ । ସ୍ୱକୀୟ ଅନୁଭବକୁ ସେ ଉଲ୍ଲେଖ କରିଛନ୍ତି - ''୧୯୫୯ ବଡ଼ଦିନ ଛୁଟିରେ ଆମ ଶ୍ରେଣୀର ଛାତ୍ରମାନେ ଭାରତ ଭ୍ରମଣରେ ଗଲେ । କଲେଜର ଦୁଇଜଣ ଅଧ୍ୟାପକ ଆମ ଦାୟୀତ୍ୱରେ ଥାଆନ୍ତି । କଲିକତା, ପାଟନା, ଝାନ୍ସୀ, ବରେଲୀ ବୁଲି ଆମେ ଆଲାହାବାଦର ନୈନୀ କୃଷି ମହାବିଦ୍ୟାଳୟ ହଷ୍ଟେଲରେ ରହିଲୁ । କାର୍ତ୍ତିକପୂର୍ଣ୍ଣମାଦିନ ଦୁଇଟି ଡଙ୍ଗା ଭଡ଼ାକରି ଆମେ ପ୍ରୟାଗରେ ସ୍ନାନ କରିବାକୁ ଭୋର୍‌ସକାଳୁ ବାହାରିଗଲୁ । ପ୍ରୟାଗଠାରେ ଗଙ୍ଗା ଓ ଯମୁନା ନଦୀ ସଂଗମ ସ୍ଥଳରେ ପ୍ରବଳ ଲୋକାରଣ୍ୟ ହୋଇଥାଏ । ଲୋକମାନେ ସମସ୍ତେ ଯମୁନାରେ ସ୍ନାନ କରୁଥାନ୍ତି । ମୁଁ ଭାବିଲି ଯେଉଁ ସ୍ଥାନରେ ଦୁଇନଦୀର ଜଳସ୍ରୋତ ମିଳିତ ହୋଇଛି ସେଇଠି ଗାଧୋଇବି । ଏହା ଭାବି ସେହି ସ୍ଥାନକୁ ଚାଲିଗଲି । ସେଠାରେ ପାଦ ଦେଉଦେଉ ନିମ୍ନରେ ପ୍ରବାହିତ ପ୍ରଖର ଜଳସ୍ରୋତ ମୋତେ ଟାଣି ନେଲା । ମୁଁ ଗଙ୍ଗାନଦୀ ଭିତ୍‌ରକୁ ଟାଣି ହୋଇଗଲି । ଘଣ୍ଟାରେ ପ୍ରାୟ ୪୦ କି.ମି. ବେଗରେ ପ୍ରବାହିତ ନଦୀସ୍ରୋତରେ ମୁଁ ପାଞ୍ଚମିନିଟ୍ ଭିତରେ ପ୍ରୟାଗଠାରୁ ପ୍ରାୟ ଚାରି କିଲୋମିଟର ତଳକୁ ଭାସିଗଲି । ମୁଁ ଜାଣିଗଲି ଯେ, ମୋର ମୃତ୍ୟୁ ଅନିବାର୍ଯ୍ୟ । ତେଣୁ ଆମ ଇଷ୍ଟ ଦେବତା ଗୋପାଳଜୀଉଙ୍କୁ ପ୍ରାର୍ଥନା କଲି । ଭାବିଲି ଗଙ୍ଗାନଦୀରେ ରହିଲେ ପ୍ରବଳ ବେଗରେ ମୁଁ ଭାସିଯିବି । ତେଣୁ ସବୁତକ ବଳ ଖର୍ଚ୍ଚ କରି ଯମୁନା ଆଡ଼କୁ ପହଁରିଗଲି । ଯମୁନା ସ୍ରୋତରେ ପହଞ୍ଚିଯାଇ ମୁଁ ଟିକେ ନିଃଶ୍ୱାସ ନେଲା ବେଳକୁ ମୋ ମୁଣ୍ଡ ଉପରେ ଏକ ବାଉଁଶ ବାଜିଲା । ସେହି ବାଉଁଶକୁ ଧରି ନେଲି । ସେ ବାଉଁଶଟି ଗୋଟିଏ ଡ଼ଙ୍ଗାର କାତ ଥିଲା । ଡଙ୍ଗାପାଖକୁ ମୋତେ ଟାଣିନେଇ ଦୁଇଜଣ ଲୋକ ଉପରକୁ ଟେକି ନେଲେ । ଦେଖିଲି ଗେରୁଆ ଲୁଗା ପିନ୍ଧି ଦାଢ଼ିନିଶ ରଖିଥିବା ୭/୮ ଜଣ ସନ୍ୟାସୀ ଡଙ୍ଗାରେ ରାଧାକୃଷ୍ଣ, ଆଣ୍ଠୁଆ ଗୋପାଳକୁ ନେଇ ସଙ୍ଗମ ଆଡ଼କୁ ଯାଉଛନ୍ତି । ସେମାନେ ମୋତେ ଠାକୁରଙ୍କ ଭୋଗ ଖାଇବାକୁ ଦେଲେ । କହିଲେ, ଏଇ ଠାକୁର ତୁମକୁ ବଞ୍ଚାଇଦେଲେ । କହିଲି, ହଁ ବାବା, ମୁଁ ତାଙ୍କୁ ହିଁ ଡାକୁଥିଲି । ସେମାନେ

କହିଲେ, ଯେ କୁମ୍ଭୀରଠାରୁ ଗଜକୁ ଉଦ୍ଧାର କରିଥିଲା । କୁରୁସଭାରେ ଦ୍ରୌପଦୀଙ୍କର ସମ୍ମାନ ରଖିଥିଲା । ଆଜି ତୁମକୁ ଗଙ୍ଗାନଦୀରୁ ସେଇ ରଖିଲା । ମୁଁ ଲମ୍ବ ହୋଇ ଠାକୁରଙ୍କୁ ପ୍ରଣାମ କରିବା ଭିତରେ ଡଙ୍ଗାଯାଇ ସଂଗମରେ ପହଞ୍ଚିଲା । ଗୋଟିଏ ପୋଲିସଡଙ୍ଗା ମୋତେ ସାଧୁମାନଙ୍କଠାରୁ ନେଇଯାଇ ମୋର ସହପାଠୀମାନଙ୍କ ପାଖରେ ପହଞ୍ଚାଇ ଦେଲା । ମୋର ମୃତ୍ୟୁ ହୋଇଛି ବୋଲି ସମସ୍ତେ ପ୍ରାର୍ଥନା କରିବାକୁ ଯାଉଥିଲେ । ମୋତେ ଦେଖି ଖୁସି ହୋଇଗଲେ । ତାପରେ ଆମେ ଯାଇ ମଥୁରା, ଦିଲ୍ଲୀ, ବମ୍ବେ, ହାଇଦ୍ରାବାଦ ଓ ମାନ୍ଦ୍ରାଜ ବୁଲି ଭୁବନେଶ୍ୱର ଫେରି ଆସିଲୁ ।

ଈଶ୍ୱରବିଶ୍ୱାସୀ ଗୁରୁପ୍ରସାଦ ଦୀର୍ଘାୟୁ ହୁଅନ୍ତୁ, ସୁସ୍ଥସବଳ ହୁଅନ୍ତୁ । ନିଜର କର୍ମନିଷ୍ଠା, ଆନ୍ତରିକ ପ୍ରୟାସରେ ଉତ୍କଳ ମାତାର ବନ୍ଦନା କରି ଜାତି ଭାଷା ସାହିତ୍ୟର ଶ୍ରୀବୃଦ୍ଧିରେ ସହାୟକ ହୁଅନ୍ତୁ ।

*ଯଶୁଆପୁର, ମାହାଙ୍ଗା, କଟକ*



# ମୁଁ ତାଙ୍କୁ ଯେପରି ଜାଣେ

ଯୁଗଳ କିଶୋର ଦତ୍ତ

କୌଣସି ବ୍ୟକ୍ତିଙ୍କ ସହିତ ପରିଚିତ ହୋଇ ମିଶିବାର ସୁଯୋଗ ନ ପାଇବା ପର୍ଯ୍ୟନ୍ତ ସେହି ବ୍ୟକ୍ତିଙ୍କୁ ଜାଣି ହୁଏନା । ତାପରେ ସେହି ବ୍ୟକ୍ତିର ବ୍ୟବହାର ଆକର୍ଷଣର ମୋହଦ୍ୱାରା ବନ୍ଧୁତା, ତାପରେ ଆତ୍ମିୟତା ଆରମ୍ଭ ହୋଇଥାଏ । ସେହି ସୁଯୋଗ ମୋର ଆସିଥିଲା, ୧୯୮୫ ମସିହାରେ, ଯେତେବେଳେ ମୁଁ ଚାକିରିଦୃଷ୍ଟିରୁ ବଦଳି ହୋଇ ଆସିଥିଲି କଟକସ୍ଥିତ ମଙ୍ଗଳାବାଗର ପଶୁଚିକିତ୍ସା ବିଭାଗର ନିର୍ଦ୍ଦେଶକଙ୍କ ଅଫିସକୁ । ମୁଁ ସମବାୟ ବିଭାଗର ଜଣେ ସହକାରୀ ନିବନ୍ଧକ, ଅର୍ଥାତ୍ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର, କୋଅପରେଟିଭ ସୋସାଇଟି, ଓଡ଼ିଶା ।

ସେହି ଅଫିସରେ ସମବାୟ ବିଭାଗର ଦୁଇଜଣ ସହକାରୀ ନିବନ୍ଧକ ଥାଆନ୍ତି । ଜଣେ ସହକାରୀ ନିବନ୍ଧକ (ଦୁଗ୍ଧ) ଓ ଜଣେ ସହକାରୀ ବିବନ୍ଧକ (କୁକୁଡ଼ାପାଳନ) ବିଭାଗପାଇଁ । ମୁଁ ଯେଉଁଦିନ ସେହି ଅଫିସରେ ଯାଇ ଜଏନ୍ କଲି ସେତେବେଳେ ମୁଁ କେବଳ ଜଣେ ଯାଇଥାଏ । ଆଉଜଣଙ୍କର ବଦଳି ଅର୍ଡର ହୋଇନଥାଏ । ତେଣୁ ପ୍ରଥମଦିନ ମୁଁ ଚାକିରୀରେ ଜଏନ୍ କରି ଯେଉଁ ଘରେ ଯାଇ ବସିଲି ସେଠାରେ ଥିଲେ ଡେପୁଟୀ ଡାଇରେକ୍ଟର ପାତ୍ରବାବୁ । ସେହି ସେକସନ୍ ଥିଲା ଅନ୍ୟ ସମବାୟ ଇନ୍ସପେକ୍ଟର ମାନଙ୍କର । ପ୍ରଥମ ଦିନ ସେହି ପାତ୍ରବାବୁଙ୍କ ସହିତ ମୋର ପରିଚୟ ହୋଇଥିଲା । ଏହା ପଶୁଚିକିତ୍ସା ବିଭାଗର ଅଫିସ ଓ ମୁଁ ଆସିଛି ସମବାୟ ବିଭାଗରୁ ତେଣୁ ନୂଆସ୍ଥାନ ନୂଆ ପରିବେଶ । କିନ୍ତୁ ଉକ୍ତଦିନ ପାତ୍ରବାବୁ ମୋ ପାଖକୁ ଗୁଡ଼ାଏ ଫାଇଲ ପିଅନ ହତରେ ପଠାଇଦେଲେ । ମୁଁ ସେହି ସେକସନ୍‌ର ହେଡ୍ ଆସିଷ୍ଟାଣ୍ଟ ଜଗବନ୍ଧୁ ମିଶ୍ରଙ୍କୁ ଦେଖାକଲି । ଅତି ଭଦ୍ରଲୋକ ଯାହା ମୁଁ ପ୍ରଥମ ଦେଖାରେ ବୁଝି ପାରିଥିଲି । କିନ୍ତୁ ପ୍ରଥମ ଦେଖାରେ ସେହି ଡେପୁଟୀ ଡାଇରେକ୍ଟର ପାତ୍ରବାବୁଙ୍କୁ ମୋତେ ଆଦୌ ଭଲ ଲାଗିନଥିଲା । ଏହିପରି ପନ୍ଦର ଦିନ ବିତିଯିବାପରେ ଭାବିଲି ଏଠାରେ ମୋର କାମକରିବା ସୁବିଧା ହେବନାହିଁ । ତେଣୁ ମୋର ନିଜ ବିଭାଗର ଅଫିସରେ କହି ଅନ୍ୟ କୌଣସି ସ୍ଥାନକୁ ଚାଲିଯିବାପାଇଁ ବ୍ୟବସ୍ଥା କରିବି । ଏହି ସମୟରେ ଏହି ଅଫିସକୁ ସମବାୟ ବିଭାଗରୁ ଆଉଜଣେ ସରକାରୀ ନିବନ୍ଧକ ଆସି ପହଞ୍ଚିଯାଇଥାନ୍ତି । ଆମେ ଦୁହେଁ ଗୋଟିଏ ରୁମ୍‌ରେ ବସିଥାଉ ।

ମୋ ଟେବୁଲ ଉପରେ ଗୋଟିଏ ଫୋନଥିଲା । ତାହା ଛଡ଼ି ମଧ୍ୟରେ କାଢ଼ି ନିଆଯାଇଥିଲା । ଏମିତି ଅବସ୍ଥାରେ ଏଠାରେ ଚାକିରୀ କରିବା ଅନ୍ତତଃ ମୋପାଇଁ ସମ୍ମାନ ନାହିଁ ବୋଲି ଭାବି ଚିନ୍ତିତ ଥାଏ । ଦିନେ ଏହି ଅଫିସରେ ଥିବା ଆଡିସନାଲ ଡେପୁଟୀ ଡାଇରେକ୍ଟର ଡାଃ ଗୁରୁପ୍ରସାଦ ମହାନ୍ତିଙ୍କ ରୁମ୍‌ରେ ଯାଇ ଦେଖାକରି ବସିଥିଲି । ମୋର ଏଠାରେ ଆସି ଜଏନ୍ କରିବାର ଦ୍ୱିତୀୟ ଦିନ ମଧ ଏହାଙ୍କ ସହିତ ଦେଖା ହୋଇ ପରିଚୟ ଘଟିଥିଲା । ପ୍ରଥମ ଦେଖାରେ ମୋତେ ତାଙ୍କ ବ୍ୟବହାର ଅତି ଭଲ ଲାଗିଥିଲା । ଉକ୍ତ ଦିନ ଡଃ. ମହାନ୍ତିଙ୍କ ପାଖରେ ବସିଥିବା ବେଳେ ମୁଁ ତାଙ୍କୁ ମୋର ମନକଥା କଣ ଜଣାଇ କହିଥିଲି – ଆଜ୍ଞା ମୋର ଆଉ ଏଠି ଆପଣଙ୍କ ଅଫିସରେ ରହିବା ସମ୍ଭବ ହେବନାହିଁ । ଉପରେ ବ୍ୟବସ୍ଥା କରି ଶୀଘ୍ର ଚାଲିଯିବାପାଇଁ ହେବ କାରଣ ଏ.ଆର.ସି.ଏସ୍ (ଦୁଗ୍ଧ) ଭାବରେ କାମ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ତିନିଦିନ ବିତିଯାଇଥାଏ ଡେପୁଟୀ ଡାଇରେକ୍ଟର ଡଃ. ଗୁରୁପ୍ରସାଦ ମହାନ୍ତିଙ୍କ ସହିତ ପ୍ରତିଦିନ ତାଙ୍କ ରୁମ୍‌ରେ ଦେଖାହୁଏ । ଅତି ମେଳାପି ଭଦ୍ରଲୋକ ବୋଲି ମୁଁ ବୁଝି ନେଇଥାଏ । ହଠାତ୍ ଗୋଟିଏ ଫାଇଲ ମୋ ପାଖକୁ ଆସିଲା ଯେଉଁଥିରେ ମୋତେ ଡଃ. ଗୁରୁପ୍ରସାଦ ମହାନ୍ତି ଡେପୁଟୀ ଡାଇରେକ୍ଟରଙ୍କ ଅଧୀନରେ ଏ.ଆର.ସି.ଏସ୍ (କୁକୁଡ଼ା) ଅର୍ଥାତ ପୋଲଟ୍ରି ଭାବରେ କାମ କରିବା ପାଇଁ ଡାଇରେକ୍ଟରଙ୍କ ନିର୍ଦ୍ଦେଶ ଥିଲା । ମୁଁ ସେହି ଫାଇଲ ନେଇ ତାଙ୍କ୍ ରୁମକୁ ଯାଇ ଦେଖାକଲି । ସେ ମୋତେ ନମସ୍କାର କରି କହିଲେ – ଦତ୍ତବାବୁ ଆଉ କାହିଁକି ଆପଣ ଏଠାରୁ ଚାଲିଯିବେ ? ସାଙ୍ଗହୋଇ କାମ କରିବା । ବାସ୍, ମୋର ଚାକିରୀ କାଳ ଆଉ ମାତ୍ର ଚାରିବର୍ଷ ବାକିଥିଲା । ଡଃ ମହାନ୍ତିଙ୍କ ଯୋଗୁଁ ମୋର ଏହି ଚାରିବର୍ଷ ଏହି ପଶୁଚିକିତ୍ସା ବିଭାଗର ଡାଇରେକ୍ଟରଙ୍କ ଅଫିସରେ ଏ.ଆର.ସି.ଏସ (ପୋଲଟ୍ରି) ଭାବରେ ବିତିଯାଇ ଏହିଠାରେ ଅବସର ନେଇ ମୋତେ ଯିବାପାଇଁ ଯୋଗଥିଲା । ତାହା ଥିଲା ଡଃ ମହାନ୍ତିଙ୍କ ଚରିତ୍ରର ଗୋଟିଏ ଦିଗ; ଗୁଣର ଗୋଟିଏ ଦିଗ ଯାହା ମୁଁ ତାଙ୍କୁ ଭଲଭାବରେ ଜାଣିବାପାଇଁ ସୁଯୋଗ ପାଇଥିଲି । ସେ ଥିଲେ ଜଣେ ଲେଖକ, ସାହିତ୍ୟିକ ତାହା ଜାଣିବାପରେ ତାଙ୍କ ସହିତ ମୋର ବନ୍ଧୁତାର ସୂତ୍ରପାତ ହୋଇଥିଲା ଯଦିଓ ସେ ମୋର ଉଚ୍ଚକର୍ମକର୍ତ୍ତା ଥିଲେ । ଦିନକୁ ଦିନ ବନ୍ଧୁତା ବୃଦ୍ଧି ପାଇଥିଲା ।

ଡଃ. ମହାନ୍ତିଙ୍କର ଆଉ ଗୋଟିଏ ଗୁଣ ଜାଣିବାର ସୁଯୋଗ ମିଳିଥିଲା ମୋତେ । ଏ.ଆର.ସି.ଏସ (ପୋଲଟ୍ରି) ଭାବରେ ପ୍ରତିମାସରେ ବିଭିନ୍ନ ଜିଲ୍ଲାର ସମବାୟ ସମିତି (ପୋଲଟ୍ରି) ଦେଖିବାପାଇଁ ଯାଇଥାଏ । ମୁଁ ଗୋଟିଏ ମାସରେ କେନ୍ଦ୍ରାପଡ଼ା ଯାଇଥିଲି । ମୋର ଟୁର୍ ପ୍ରୋଗ୍ରାମ୍ ମଧ୍ୟ ପୂର୍ବରୁ ପଠା ଯାଇଥିଲା । ମୁଁ ସେଠାରେ ଦିନ ଦଶଟା ସମୟରେ ବସ୍‌ରୁ ଓହ୍ଲାଇ ଏସ୍.ଡ଼ି.ଭି.ଓଙ୍କ ଅଫିସ୍‌ରେ ପହଞ୍ଚିଲି । ଗୋଟିଏ ଘଣ୍ଟା ବସିବାପରେ ଜଣେ ଭେଟେରନାରୀ ଆସିଷ୍ଟାଣ୍ଟ ସର୍ଜନ ଅଫିସକୁ ଆସିଲେ । ମୁଁ ତାଙ୍କୁ

ମୋର ପରିଚୟ ଜଣାଇଦେଲି । ସମବାୟ ସମିତି ଚାର୍ଜରେ ଥିବା ଭି.ଏ.ଏସ୍. ଜଣଙ୍କ ଦିନ ସାଢ଼େ ଏଗାରଟା ସମୟରେ ଆସିଲେ । ତାଙ୍କୁ ମୋର ପରିଚୟ ଦେଇ ସମିତିର ଖାତା ରେକର୍ଡ଼ ଦେଖିବା ପାଇଁ କହିଲି । ଯାହା ଦେଖିଲି ସେଥିରେ ମୁଁ ଆଦୌ ସନ୍ତୋଷ ହୋଇ ପାରିନାହିଁ । କାରଣ ସମବାୟ ଆଇନର ନିୟମ ଆଦୌ ଏଠାରେ ପାଳିତ ନ ହେଉଥିବା କଥା ଦେଖିଲି । ଯାହାହେଉ ଏଥିଲାଗି ଦିନ ଦେଢ଼ଟା ବାଜିଲା । ତାଙ୍କ ଭି.ଏ.ଏସ ଡେରି ହୋଇଯାଉଛି କହି ଚାଲିଗଲେ । ଏସ୍.ଡ଼ି.ଭି ଓଙ୍କ ଦେଖା ପାଇନଥିଲି । ଶେଷରେ ସେହି ଅଫିସର ପିଅନକୁ ପଚାରି ହୋଟେଲକୁ ଯାଇ ଗଣ୍ଡିଏ ଖାଇ ସନ୍ଧ୍ୟା ସୁଦ୍ଧା କଟକ ଫେରି ଆସିଥିଲି । ମୋର ଟୁର୍ ଡ଼ାଇରୀରେ ଏହି ସମବାୟ ସମିତି ବିଷୟରେ ଲେଖି ଜଣାଇଥିଲି । ତାହାର ଦୁଇମାସ ପରେ ଅଫିସରେ ଦିନ ବାରଟା ସମୟରେ ହଠାତ ଡଃ. ମହାନ୍ତି ମୋତେ ଡାକି କହିଲେ ଦତ୍ତବାବୁ ଆସନ୍ତୁ କେନ୍ଦ୍ରାପଡ଼ା ଯିବା । କହିଲି ଆଜ୍ଞା ମୁଁ ଦୁଇମାସ ତଳେ ଯାଇଥିଲି । ଆପଣ ଯେତେବେଳେ ଯାଉଛନ୍ତି ମୋର ଯିବା ଆବଶ୍ୟକ ନାହିଁ । କିନ୍ତୁ ସେ କହିଲେ ଏ. ଆର.ସି.ଏସ୍. (ପୋଲଟ୍ରି) ଙ୍କୁ ବାଦଦେଇ ମୋର ଯିବା କଣ ଭଲ ହେବ । ଏହା କହି ହସି ଉଠିଥିଲେ । ମୁଁ ଜାଣେ ଡଃ. ମହାନ୍ତି ସବୁବେଳେ ହସ ହସ ମୁହଁରେ କଥା କୁହନ୍ତି । ଯାହାହେଉ ସାଥିରେ ଗଲି । ସେଠାରେ ସେହି ଭି.ଏ.ଏସ୍ ଓ ଅନ୍ୟାନ୍ୟ ଅଫିସରମାନେ ଉପସ୍ଥିତ ଥିଲେ । ଡଃ.ମହାନ୍ତି ତାଙ୍କ କାମ ଶେଷ କରିବା ବେଳକୁ ଦିନ ଚାରିଟା ବାଜି ଯାଇଥିଲା । ଜଳଖିଆ ଆସିଲା । ସମସ୍ତେ ଖାଇବାପାଇଁ ବସିଲେ । ମୁଁ ଗୋଟିଏ ଚେୟାର ଉପରେ ବସିଥିଲି । ଡଃ. ମହାନ୍ତି ଖାଇବାପାଇଁ ଆରମ୍ଭ କରି ମୋତେ କହିଲେ, ଆରେ ଦତ୍ତବାବୁ ଖାଉନାହାନ୍ତି ? ମୁଁ ଅଳ୍ପ ହସି କହିଲି ଆପଣମାନେ ଖାଆନ୍ତୁ । ପୁଣି କିଛି ସମୟ ବିତିଗଲା । ଡଃ. ମହାନ୍ତି ମୋତେ କହିଲେ, କଣ ହୋଇଛି ? ଖାଉ ନାହାନ୍ତି କାହିଁକି ? ମୋର ହଠାତ ସବୁ ଧୈର୍ଯ୍ୟ ଭାଙ୍ଗିଯାଇଥିଲା । ମୁଁ କହିଲି ଆଜ୍ଞା ଏହି ଜଳଖିଆ ଆପଣଙ୍କ ସମ୍ମାନରେ ଆସିଛି । କାରଣ ଆପଣ ଡେପୁଟୀ ଡାଇରେକ୍ଟର ଆସିଛନ୍ତି ବୋଲି ଏତେ ପରିମାଣରେ ଜଳଖିଆ ଆସିଛି । ଦୁଇମାସ ପୂର୍ବେ ମୁଁ ଯେତେବେଳେ ଏଠାକୁ ଆସିଥିଲି S.D.V.O ଆସିନଥିଲେ, ଆଉ ଉପସ୍ଥିତ ଥିବା ଏହି V.A.S ମଧ ପାଣି ଗିଲାସେ ମୋତେ ଦେଇ ନଥିଲେ । ତେଣୁ ମୋର ଏଠାରେ ଜଳଖିଆ ଖାଇବା ଉଚିତ ବୋଲି ମୁଁ ମନେ କରୁନାହିଁ । ହଠାତ୍ ଡଃ. ମହାନ୍ତି ଆଉ ଜଳଖିଆ ନଖାଇ ଉଠିପଡ଼ିଲେ । ମୁଁ ବିବ୍ରତ ହୋଇ ଉଠିଥିଲି । ଭାବିଲି ମୋର ଏତିକି କହିବା ଠିକ ହେଲାନାହିଁ । କିନ୍ତୁ ଡଃ ମହାନ୍ତି ଆଉ ନଖାଇ ଉପସ୍ଥିତ ସମସ୍ତ ଅଫିସରମାନଙ୍କୁ ଗାଳିଦେଇ ଚାଲି ଆସିଲେ । ବାଟରେ ଆସିବା ବେଳେ କହିଲି ସାର୍ ମୋତେ କ୍ଷମା କରିବେ । ମୋର ସେଠାରେ କିଛି କହିବା ଉଚିତ ନଥିଲା । କିନ୍ତୁ ଡଃ. ମହାନ୍ତି ମୋତେ କହିଲେ, ଦତ୍ତବାବୁ ଆପଣ ସମବାୟ ବିଭାଗରୁ ଆସିଛନ୍ତି ସତ କଥା । କିନ୍ତୁ ବର୍ତ୍ତମାନ

ଆପଣ ଜଣେ ପଶୁଚିକିତ୍ସା ବିଭାଗର କର୍ମଚାରୀ । ଆମ୍ଭମାନଙ୍କ ସହିତ ସମାନ । ଆପଣଙ୍କର ଅପମାନ କଣ ମୋର ଅପମାନ ନୁହେଁ ।

ସେହିଦିନ ଡଃ. ମହାନ୍ତିଙ୍କର ଆଉ ଗୋଟିଏ ପରିଚୟ ପାଇଥିଲି । ମୋର ଅବସର ନେବା ପର୍ଯ୍ୟନ୍ତ ସେଠାରେ ରହିବାପାଇଁ ତାଙ୍କର ଅବଦାନ ଆଦୌ ଭୁଲିପାରିବି ନାହିଁ । ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଭ୍ରମଣ କାହାଣୀ ପାଇଁ ପୁରସ୍କାର ପାଇଲେ । ସମସ୍ତଙ୍କର ଉପସ୍ଥିତିରେ କହିଥିଲେ ଆଜି ମୋର ଏହି ସମ୍ମାନ କେବଳ ଦତ୍ତବାବୁଙ୍କ ପାଇଁ । ଉକ୍ତ ଭ୍ରମଣ କାହାଣୀ ''ପାତାଳପୁରୀର ହାଲଚାଲ'' ବହି ସେତେବେଳେ ବଙ୍ଗଳାଭାଷାରେ ଅନୂଦିତ ହୋଇ କଲିକତାର ପୁସ୍ତକମେଳାରେ ଉନ୍ମୋଚନ ହେବାର ବ୍ୟବସ୍ଥା ମୁଁ କରାଇ ଦେଇଥିଲି । ଡଃ. ମହାନ୍ତି ମଧ୍ୟ କଲିକତା ପୁସ୍ତକମେଳାରେ ଉକ୍ତଦିନ ଉପସ୍ଥିତ ଥିଲେ ମୋ ସହିତ ।

କର୍ମମୟ ଜୀବନର ଦିନ ଗଡ଼ିଯାଉଥିବା ବେଳେ ଡଃ ଗୁରୁପ୍ରସାଦ ମହାନ୍ତିଙ୍କ ସହିତ ମୋର ବନ୍ଧୁତା ଘନିଷ୍ଠରୁ ଘନିଷ୍ଠତର ହୋଇ ଚାଲିଥାଏ । ଶେଷରେ ଅବସର ନେଇ ଆସିଲି । ସମୟର ଚକ ଗଡୁଛି । ମୋର ଅବସର ନେବାର ଷୋହଳ ବର୍ଷ ହୋଇଗଲା କିନ୍ତୁ ଡଃ.ଗୁରୁପ୍ରସାଦ ମହାନ୍ତିଙ୍କର ମୋ ପ୍ରତି ଶ୍ରଦ୍ଧା ଟିକିଏ ବି କମନାହିଁ ସେ ମୋ ଘରକୁ ଆସନ୍ତି । ସେହି ହସହସ ମୁହଁ ।

ଡଃ. ମହାନ୍ତିଙ୍କୁ ଜାଣିବାପାଇଁ ମୋତେ ଅଧିକ ସମୟ ଲାଗିନଥିଲା । ଗୁଣୀର ଗୁଣ ଲୁଚି ରହେନାହିଁ । ତେଣୁ ତାଙ୍କୁ ଜାଣିବାପାଇଁ ମୋତେ ଆଦୌ ସମୟ ଲାଗି ନଥିଲା ।

*ଓଡ଼ିଆ ଲେଖକ ସାମ୍ମୁଖ୍ୟ, ଭୁବନେଶ୍ୱର*



# ମୋ ବାପା

ଡକ୍ଟର ଗୋପାଳ ପ୍ରସାଦ ମହାନ୍ତି

ଆମ ଭାରତୀୟ ସଂସ୍କୃତି ପିତାମାତାଙ୍କୁ ଈଶ୍ୱରଙ୍କ ସହିତ ସମାନ ଆସନ ଦିଏ । ସେମାନେ ହେଉଛନ୍ତି ପୂଜନୀୟ ଓ ମହାନ୍ । କିନ୍ତୁ କାହିଁକି ସେମାନେ ମହାନ୍, ସେ କଥା ଜାଣିବାକୁ ସମୟ ଲାଗେ । ପୁଅ ଝିଅଙ୍କ ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେମାନଙ୍କର ଅଭିଜ୍ଞତା ହିଁ ଏ ସତ୍ୟକୁ ପ୍ରମାଣିତ କରିଦିଏ । ଯୁକ୍ତରାଷ୍ଟ୍ର ଆମେରିକାରେ ମୋର ସମସ୍ତ ସାଫଲ୍ୟ ବିଷୟରେ ଭାବି ବସିଲେ ମୋ ମନରେ ଉଙ୍କିମାରେ ମୋ ବାପାଙ୍କ ମୁହଁ । ୧୯୮୮ ମସିହାରେ କୁରୁକ୍ଷେତ୍ର ବିଶ୍ୱବିଦ୍ୟାଳୟରୁ ଇଂଜିନିୟରିଂ ପାଶ୍‌କରି ଆମେରିକାକୁ ଆସି ଏମ.ଏସ୍ ଓ ପି.ଏଚ୍.ଡ଼ି ଡ଼ିଗ୍ରୀ ହାସଲ କରିବା ପରେ ବ୍ୟବସାୟିକ ଦିଗରୁ ଏତେ ସଫଳତା ହାସଲ କରିବା କେବଳ ଯେ ମୋର ପରିଶ୍ରମର ଫଳ, ତାହା ନୁହେଁ । ଏସବୁ ମୋ ବାପାଙ୍କ ଅତୀତ ଜୀବନର ପୁନରାବୃତ୍ତି ପରି ମୋତେ ଲାଗେ । ଆମ ବାପ ପୁଅଙ୍କ ଭିତରେ ଏତେ ଯେ ସାମଞ୍ଜସ୍ୟ ରହିଛି ତାହା ମୁଁ ମର୍ମେ ମର୍ମେ ଅନୁଭବ କରେ । ପ୍ରତି କ୍ଷେତ୍ରରେ ଯାହାସବୁ ଘଟିଗଲା ସେସବୁ ଯେ ମୁଁ କରିଛି ସେପରି ମୁଁ ଭାବି ପାରେନା । ମୁଁ ଅନୁଭବ କରେ ସତେଯେପରି ମୋ ଭିତରେ ବାପାଙ୍କର ପୂର୍ଣ୍ଣ ସତ୍ତା ଅଛି, ଯାହାକି ଏସବୁ କରେଇ ଦଉଚି । ଯାହା ସବୁ ମୁଁ କରୁଛି ସେସବୁ ହୁଏତ ଚାଳିଶବର୍ଷ ତଳେ ଘଟି ସାରିଛି ବୋଲି ମୋର ମନେ ହେଉଛି । ଆଳିପିଙ୍ଗଳ ନିବାସୀ ସ୍ୱର୍ଗତଃ ରାମଚନ୍ଦ୍ର ମହାନ୍ତି ଓ ଅଧରମଣୀ ଦେବୀଙ୍କର ବାପାଥିଲେ ଏକ ମାତ୍ର ପୁତ୍ର ଓ କେନ୍ଦ୍ରାପଡ଼ା ହାଟବାଣପୁର ଯୋଗେନ୍ଦ୍ରନାଥ ମହାନ୍ତି ଓ ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀଙ୍କର ସେ ହେଉଛନ୍ତି ଜ୍ୟେଷ୍ଠ ଜାମାତା । ୧୯୫୯ ମସିହାରେ ସେ ଯେତେବେଳେ ପଶୁଚିକିତ୍ସା ବିଜ୍ଞାନ ମହାବିଦ୍ୟାଳୟର ତୃତୀୟ ବାର୍ଷିକ ଛାତ୍ରଥିଲେ ସେତେବେଳେ ସେ ବିବାହ କରିଥିଲେ । ୧୯୬୪ ମସିହା ବେଳକୁ ତାଙ୍କର ସନ୍ତାନ ସନ୍ତତି ଦେବଶ୍ରୀ, ବିଭୂତିପ୍ରସାଦ ଓ ଗୋପାଳ ଆଦିଙ୍କୁ ଓଡ଼ିଶାରେ ଛାଡ଼ିଦେଇ ୨୫ ବର୍ଷ ବୟସରେ ବାପା ଆମେରିକା ଆସିଥିଲେ । ଆମେରିକାର ସାଉଥଡ଼ାକୋଟା ବିଶ୍ୱବିଦ୍ୟାଳୟର ଏମ୍.ସ୍ ଓ ପି.ଏଚ୍.ଡ଼ି ଡ଼ିଗ୍ରୀ ଲାଭ କରି ୧୯୬୯ ମସିହାରେ ସେ ଜନ୍ମଭୂମି ଓଡ଼ିଶାକୁ ଫେରିଯାଇଥିଲେ । ଜୀବନର ଏକ ସ୍ୱଚ୍ଛ ଲକ୍ଷ୍ୟ ଓ ଦୃଢ଼ ମନୋବଳହିଁ ତାଙ୍କ ସଫଳତାର କାରଣ ହୋଇପାରିଛି ।

ବାପା ଚାହିଁଥିଲେ ଯୁକ୍ତରାଷ୍ଟ୍ର ଆମେରିକାରେ ରହି କୋଟି କୋଟି ଟଙ୍କା ରୋଜଗାର କରିପାରିଥାନ୍ତେ । ମାତ୍ର ତାଙ୍କର ବଳିଷ୍ଠ ଦେଶପ୍ରେମ ଓ ଦେଶବାସୀଙ୍କ ଲାଗି କିଛି କରିବାର ଆକାଂକ୍ଷା ଉଚ୍ଚଶିକ୍ଷା ପରିସମାପ୍ତିପରେ ଓଡ଼ିଶାକୁ ଫେରିଯିବାର ମୂଳ କାରଣ ଥିଲା । ଜଣେ ଦକ୍ଷ ପ୍ରଶାସକ, ଲେଖକ, ସୁବକ୍ତା ଓ ସମାଜସେବୀ ଭାବେ ମୁଁ ବାପାଙ୍କୁ ଦେଖିଲା ବେଳେ, ପୁଅକୁ କିପରି ମଣିଷ କରି ଠିଆ କରିବାକୁ ହୁଏ ସେ କଥା ତାଙ୍କୁ ଠିକ୍ ଜଣାଥିଲା ବୋଲି ମୁଁ ଅନୁଭବ କରେ ।

ବାପା ମାଆଙ୍କୁ କିପରି ସ୍ନେହ, ଶ୍ରଦ୍ଧା ଓ ଭକ୍ତି କରିବାକୁ ହୁଏ ତାହା ମୁଁ ବାପାଙ୍କଠାରୁ ଶିଖିଛି । ମୋ ଶିକ୍ଷାର ମାଧ୍ୟମ ଥିଲା ତାଙ୍କର ନିଜ ପିତା ମାତାଙ୍କ ପ୍ରତି ସ୍ନେହ ଶ୍ରଦ୍ଧା ଓ ଭକ୍ତି କରିବାର ପ୍ରୟାସ । ନିଜର ସାଙ୍ଗସାଥି ଓ ବନ୍ଧୁବାନ୍ଧବ ସହିତ ବିସ୍ତୃତ ପରିବାର ବର୍ଗଙ୍କ ସହିତ କିପରି ସମ୍ପର୍କ ରଖିବାକୁ ହୁଏ ତାହା ମୁଁ ଶିଖିଥିଲି ବାପାଙ୍କଠାରୁ । ସବୁ ସଫଳତାର କାରଣ ଥିଲା ତାଙ୍କର ନିଷ୍ଠା ଓ ଦୂରଦୃଷ୍ଟି ।

ସରକାରୀ ଚାକିରୀରୁ ଅବସର ନେବାପରେ ସେ ଉପାର୍ଜନମୁଖୀ ହୋଇ ପାରିବାରିକ ସ୍ୱାର୍ଥ ଦେଖିବା ଦିଗରେ ବ୍ରତୀ ହୋଇ ପାରିଥାନ୍ତେ ମାତ୍ର ନିଜର ସମସ୍ତ ସମୟ ଓ ପ୍ରତିଷ୍ଠାକୁ ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ସେ ଲଗାଇ ଦେଲେ । ଅବସର ନେବାର ମାତ୍ର ଏକ ବର୍ଷ ପରେ ସେ ମୋ ପାଖକୁ ଆମେରିକା ଆସି ଆମ ଭାଇଭଉଣୀ ଦୁହିଁଙ୍କ ପରିବାର ଭିତରେ ସୁଖରେ ସମୟ ଅତିବାହିତ ନ କରି ଯୁକ୍ତରାଷ୍ଟ୍ର ଆମେରିକାର ବିଭିନ୍ନ ସହର ଓ କାନାଡ଼ାରେ 'ଉତ୍କଳ ସମ୍ମିଳନୀ' ଶାଖାମାନ ପ୍ରତିଷ୍ଠା କରିବାରେ ଲାଗିପଡ଼ିଲେ । ତାଙ୍କର ଓଡ଼ିଆଜାତି ପାଇଁ କିଛି କରିବାର ନିଷ୍ଠାପର ଉଦ୍ୟମ ସମ୍ମୁଖରେ ଆମ୍ଭମାନଙ୍କ ସହିତ କିଛି ମାସ ଆରାମରେ ରହିବାର ସୁଖ ହାର ମାନିଗଲା । ମୁଁ ଓ ମୋ ଭଉଣୀ ତାଙ୍କପାଇଁ ଯାହା କିଛି ଖର୍ଚ୍ଚ କରିବାକୁ ଚାହିଁଲୁ ସେ ସବୁ କେବଳ ଉତ୍କଳ ସମ୍ମିଳନୀ ଶାଖା ପ୍ରତିଷ୍ଠା ଖର୍ଚ୍ଚରେ ସରିଗଲା । ଉତ୍କଳ ସମ୍ମିଳନୀ ପାଇଁ ତାଙ୍କର ନିଷ୍ଠା ପ୍ରତି ଆମେ ସମ୍ମାନ ଜଣାଇଲୁ ।

ମାତୃଭୂମି ଓଡ଼ିଶା ଏବଂ ଓଡ଼ିଆଭାଷା ପ୍ରତି ମୋ ମନରେ ଆଗ୍ରହ ଓ ମମତା ସୃଷ୍ଟି କରିବାର କାରଣ ଥିଲେ ମୋ ବାପା । ଭାରତର ଉନ୍ନତି ଲାଗି ଅର୍ଥନୈତିକ ଦିଗରେ ଓଡ଼ିଶାବାସୀଙ୍କ ଉନ୍ନତିର ଆବଶ୍ୟକତା ବିଷୟରେ ମୁଁ ଶିଖିଥିଲି ବାପାଙ୍କଠାରୁ । ପଶୁପାଳନ ବିଭାଗର ପ୍ରଶାସନିକ ମୁଖ୍ୟ ଭାବେ ଓଡ଼ିଶାର ଚାଷୀ ମାନଙ୍କ ଅର୍ଥନୈତିକ ଉନ୍ନତିଲାଗି ସେ ନାନାଜାତିର ପଶୁ ଓ ପକ୍ଷୀ ପାଳନ ଉପରେ ଗୁରୁତ୍ୱ ଦେଇ ଓଡ଼ିଶାର ଅନୁନ୍ନତ ଜିଲାମାନଙ୍କୁ ସବୁବେଳେ ଧାଉଁଥିଲେ । କୋରାପୁଟ, କଳାହାଣ୍ଡି, ବଲାଙ୍ଗୀର, ଫୁଲବାଣୀ ଆଦି ଜିଲ୍ଲାକୁ ପ୍ରାୟତଃ ପ୍ରତି ମାସରେ ସେ ଯାଇ ଦୁଗ୍ଧ ଓ ଅଣ୍ଡା ଉତ୍ପାଦନ ଉପରେ

ଯେପରି ପ୍ରାଧାନ୍ୟ ଦେଉଥିଲେ ତାଦ୍ୱାରା ତାଙ୍କର ସ୍ପଣ୍ଡିଲାଇଟିସ୍ ରୋଗ ବାହାରି ପଡ଼ିଥିଲା । ବାପା ସମ୍ବଲପୁର ଡ଼ିଭିଜନର ଯୁଗ୍ମ ନିର୍ଦ୍ଦେଶକ ଥିଲାବେଳେ ସେସବୁ ଅଞ୍ଚଳରେ ତାଙ୍କ ଦ୍ୱାରା ସୃଷ୍ଟ ଛେଳି, ମେଣ୍ଢା ଓ ଘୁଷୁରୀ ଫାର୍ମମାନ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ଏସବୁ କରିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଗରିବଲୋକଙ୍କ ଆର୍ଥିକ ଉନ୍ନତି ପାଇଁ ଲାଗିପଡ଼ିବା । ଓଡ଼ିଶାରୁ ଗରିବୀ ହଟାଇବାର ବାଟରେ ସେ ଜଣେ ସକ୍ରିୟ କର୍ମୀ ଥିଲେ । ନିଜର ଉନ୍ନତ ବ୍ୟକ୍ତିତ୍ୱ ତଥା ଜାତୀୟ ମୂଲ୍ୟବୋଧକୁ ପାଥେୟ କରି ଓଡ଼ିଆ ଜାତିର ଗୌରବ ବୃଦ୍ଧିକୁ ଆଖି ଆଗରେ ରଖି ସମାଜରେ ନିଜକୁ ଜଣେ ସୁପୁରୁଷ ଭାବେ ପ୍ରତିଷ୍ଠିତ କରିବା କଥା ମୁଁ ବାପାଙ୍କଠାରୁ ଶିଖିଛି ।

ଓଡ଼ିଆଜାତି ହେଉଛି ପୃଥିବୀର ଅନ୍ୟତମ ବଳିଷ୍ଠ ଜାତି । ଅବଶ୍ୟ ବିଗତ କେତେ ଶତାବ୍ଦୀର ପରାଧୀନତା ଭିତରେ ଅଧିକାଂଶ ଓଡ଼ିଆଲୋକ ନିଜର ମନୋବଳ ହରାଇଛନ୍ତି । ମାତ୍ର ସେଇ ବଳିଷ୍ଠ ଜାତିକୁ ବିଶ୍ୱସ୍ତରରେ ପରିଚିତ କରାଇବାର ମାଧ୍ୟମ ହେଉଛି "ଉତ୍କଳ ସମ୍ମିଳନୀ" । ସେହି ମହାନ୍ ଅନୁଷ୍ଠାନର ଜଣେ କର୍ମୀ ଭାବରେ ଯୁକ୍ତରାଷ୍ଟ୍ର ଆମେରିକା ତଥା କାନାଡ଼ାର ବିଭିନ୍ନ ସହର ବୁଲିବୁଲି ଆମ ପିଲାଙ୍କୁ ଓଡ଼ିଆଭାଷା ଶିଖାଇବାର ମନ୍ତ୍ର ଫୁଙ୍କିଛନ୍ତି ମୋ ବାପା । ତାଙ୍କରି ପ୍ରଚେଷ୍ଟାରେ ବିଦେଶରେ ଓଡ଼ିଆଭାଷା ଓ ସଂସ୍କୃତିର ଉନ୍ନତି ହେବାର ଦୃଢ଼ ବିଶ୍ୱାସ ମୋର ରହିଛି ।

ତଥାପି ଯେତେବେଳେ ବାପାଙ୍କ ସଫଳତାର କାରଣ ସମ୍ପର୍କରେ ମନ ଭିତରେ ପ୍ରଶ୍ନ ଉଠେ, ସେତେବେଳେ ମୋ ବୋଉର ମୁହଁ ନାଚିଯାଏ ଆଖିଆଗରେ । ବିଗତ ୪୫ ବର୍ଷ ଧରି ଏକୁଟିଆ ମୋ ବୋଉ ସ୍ନେହଲତା ବିନାଦ୍ୱିଧାରେ ନିଃସ୍ୱାର୍ଥପରଭାବେ ବାପାଙ୍କୁ ସାହାଯ୍ୟ କରି ଆସିଛି । ଯେତେବେଳେ ବାପା ଯୁକ୍ତରାଷ୍ଟ୍ର ଆମେରିକାରେ ରହି ପାଠ ପଢୁଥିଲେ ସେତେବେଳେ ଆମ ତିନିଭାଇ ଭଉଣୀଙ୍କୁ ଅତି ଛୋଟ ବୟସରେ ବୋଉ ବିନା ଦ୍ୱିଧାରେ ଚଳାଇ ନେଇଥିଲା । ତା ବିଷୟରେ ଭାବି ବସିଲେ ଅନେକ ଘଟଣା ମନକୁ ଆସେ ।

ଆଜି ମୋ ବାପାଙ୍କର ପବିତ୍ର ଜୟନ୍ତୀ ଅବସରରେ ମୁଁ ଇଷ୍ଟ ଦେବତା ଗୋପାଳଜୀଉଙ୍କ ପାଖରେ ବୋଉ ଓ ତାଙ୍କର କଲ୍ୟାଣ ଭିକ୍ଷା କରି ଦେଶ ବିଦେଶରେ ଓଡ଼ିଆଜାତିର କିପରି ଅଗ୍ରଗତି ହୋଇପାରିବ ସେହି କାମନା କରୁଛି ।

*ନିର୍ଦ୍ଦେଶକ - ବାକ୍‌ଷ୍ଟର, ଯୁକ୍ତରାଷ୍ଟ୍ର ଆମେରିକା (ଚିକାଗୋ)*



# ବନ୍ଧୁବତ୍ସଳ : ଡଃ ଗୁରୁପ୍ରସାଦ ମହାନ୍ତି

ଶ୍ରୀ ରାସବିହାରୀ ମହାପାତ୍ର

ଡଃ ଗୁରୁପ୍ରସାଦ ମହାନ୍ତି ଅନେକ ବ୍ୟକ୍ତିଙ୍କ ନିକଟରେ ଅନେକ ଭାବରେ ପରିଚିତ । ସାହିତ୍ୟିକ ଗହଣରେ ଜଣେ ବିଶିଷ୍ଟ ସାହିତ୍ୟିକ; ସାଂଗଠନିକ କ୍ଷେତ୍ରରେ ଜନୈକ ସୁସଙ୍ଗଠକ, ଆଧ୍ୟାତ୍ମିକ ,କ୍ଷେତ୍ରରେ ଜନୈକ ବିଶିଷ୍ଟ ବ୍ୟକ୍ତିବିଶେଷ ଓ ସାଂସାରିକ କ୍ଷେତ୍ରରେ ଜଣେ ପ୍ରଶଂସନୀୟ ବ୍ୟକ୍ତି । ତାଙ୍କର ପ୍ରତିଭା ସୁଦୂର ପ୍ରସାରୀ । ତାଙ୍କର ବଳିଷ୍ଠ ଉଦ୍ୟମ ଯୋଗୁ ଆଜି ଉକ୍ରଳ ସମ୍ମିଳନୀ ପ୍ରାଣବନ୍ତ ହୋଇ ପାରିଛି କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରତ୍ୟେକ ଉତ୍ସାହୀ ଓଡ଼ିଆ ଆଜି ଉକ୍ରଳ ସମ୍ମିଳନୀର ସ୍ପନ୍ଦନ ଅନୁଭବ କରିପାରୁଛି । ତାଙ୍କର ସାରସ୍ୱତ କୃତୀ ଓଡ଼ିଆ ସାହିତ୍ୟକୁ ଏକ ଅମୂଲ୍ୟ ଅବଦାନ । ଏ ପ୍ରବନ୍ଧ ତାଙ୍କର ବନ୍ଧୁବତ୍ସଳତା ଓ ଆଧ୍ୟାତ୍ମିକ ସୂକ୍ଷ୍ମ ଚେତନାର ଏକ ଝଲକ ମାତ୍ର ।

୧୯୯୧ ମସିହା ଜୁଲାଇ ୮ ତାରିଖ ଦିନ ଆମେ ଦୁହେଁ ସମୁଦି ସୂତ୍ରରେ ଛନ୍ଦି ହେଲୁ । ତାଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀମାନ ବିଭୂତି ପ୍ରସାଦ ମହାନ୍ତିଙ୍କ ସହିତ ମୋର କନ୍ୟା ଆୟୁଷ୍ମତୀ ସେବାରାଣୀ ମହାପାତ୍ରଙ୍କର ବିବାହ ବନ୍ଧନ ଅନୁଷ୍ଠିତ ହେଲା ।

ଗୁରୁବାବୁଙ୍କ ଶିକ୍ଷାଦିକ୍ଷା ପଦବୀ ଓ ପ୍ରତିଷ୍ଠା ସମ୍ମୁଖରେ ମୋର ସ୍ଥାନ ସମତୁଲ ନୁହଁ । ତଥାପି କେବେହେଲେ ମୁଁ ହୀନମନନ୍ୟତାର ସୁରାକ୍ ମଧ୍ୟ ଅଦ୍ୟାବଧି ଅନୁଭବ କରିବାର ସୁଯୋଗ ପାଇନାହିଁ । ଉଭୟ ପରସ୍ପରକୁ ଯଥେଷ୍ଟ ସମ୍ମାନ ଦେଇଥାଉ । ପହଞ୍ଚିଗଲେ ତାଙ୍କର ଦରହାସ ବଦନରୁ ପଦେ କଥା ଶୁଣିଲେ ବହୁ ଦିନର ସାଇତା ଦୁଃଖ ଓ ଗ୍ଲାନିସବୁ ପୋଛି ହୋଇଯାଏ । ମୁଁ କେବଳ ତାଙ୍କର ବନ୍ଧୁ ସୁଲଭ ଗୁଣଟିକୁ ଟିକିଏ ଆଲୋକପାତ କରିବାର ଉଦ୍ୟମ କରୁଅଛି । ସାହିତ୍ୟିକ ହିସାବରେ ସେ ହେଉଛନ୍ତି ପାଠ୍ୟ ଓ ମୁଁ ପାଠକ । ତେବେ ଉଭୟ ଉଭୟଙ୍କର ପରିପୂରକ ।

ସମୁଦି ହିସାବରେ ଆମର ହାସ ପରିହାସ ବହୁତ ସମୟରେ ଚାଲେ । ଏଭଳି ସରସ ସରଳଭାବ ଜୀବନ ଭାରାକୁ ହାଲୁକା କରିଦିଏ । ବେଳେ ବେଳେ ସେ କହି ଉଠନ୍ତି, ''ସମୁଦୀ ଆମେ ହେଉଛୁ ଜଗତସିଂହପୁରୀଆ ଅର୍ଥାତ ଜଗତର ସିଂହ । ଉତ୍ତରରେ ମୁଁ ପରିଚୟ ଦେଇଥାଏ ''ହଉ, ଆମେ ଭଦ୍ରକୀଆ ଦଲାରୀ, ଆମେ ହଡ଼ାକୁ, ଛଡ଼ା ଓ

ଛଡ଼ାକୁ ହଡ଼ା କଲାବାଲା – ଆମେ କିଛି କମ୍‌ତିରେ ନାହୁଁ । ଉଚ୍ଚ ହାସ୍ୟରୋଳରେ ଘର ଭରିଯାଏ ।

ମୁଁ ତାଙ୍କ ସହ ବନ୍ଧୁତ୍ୱ ସୂତ୍ରରେ ଆବଦ୍ଧ ହେଲାବେଳକୁ ସେ ପଶୁପାଳନ ବିଭାଗର ଯୁଗ୍ମ ନିର୍ଦ୍ଦେଶକ ପଦବୀରେ ଅଧିଷ୍ଠିତ ଥିଲେ । ପରେ ପରେ ଅତିରିକ୍ତ ନିର୍ଦ୍ଦେଶକ ଓ ପରିଶେଷରେ ନିର୍ଦ୍ଦେଶକ ପଦବୀରେ ସରକାରୀ କାର୍ଯ୍ୟକାଳ ସମାପ୍ତ କଲେ ।

ନିର୍ଦ୍ଦେଶକ ପଦବୀ ଆଦେଶ ପାଇ ହଠାତ୍ ଦିନେ ସନ୍ଧ୍ୟା ସମୟରେ ଭୁବନେଶ୍ୱରରେ ମୋର ସରକାରୀ ବାସ ଭବନରେ ପହଞ୍ଚିଲେ । ମୁଁ ମୋର ଭାଗବତ ଟୁଙ୍ଗୀରେ ପୂଜାରତ । ସମୁଦିଙ୍କ ସ୍ୱର ଶୁଣି ଏକ ଅପୂର୍ବ ଆନନ୍ଦରେ ତରଙ୍ଗ ମୋ ଶରୀରରେ ଖେଳିଗଲା । ଯଥାଶୀଘ୍ର ସନ୍ଧ୍ୟାସାରି ଆଗମନର ଉଦ୍ଦେଶ୍ୟ ଜାଣିବାକୁ ଚାହିଁଲାରୁ କହିଲେ ଜଲ୍‌ଦି ଆସନ୍ତୁ ଗୋଟାଏ ଯାଗାକୁ ଯିବା । ଆସନ୍ତୁ ଆସନ୍ତୁ ବୋଲି ବ୍ୟସ୍ତ ହେଲେ ସେ ପୁଣି କହିଲେ ଦାନ୍ତଘଷା ଚିଜ ଗୋଟିଏ ଜରୀରେ ଧରିନିଅନ୍ତୁ । କିଛି ନ ବିଚାର ମୁଁ ମାନିନେଲି । ମନେ ମନେ ଭାବିଲି ବୋଧହୁଏ ସାନ ପୁଅ, କାବୁଲିବାବୁଙ୍କ ନିମିତ୍ତ କୌଣସି ସୁପାତ୍ରୀ ବାଛିବାପାଇଁ ଏ ଆୟୋଜନ । ଗାଡ଼ି ଯେତେବେଳେ ଉତ୍ତରାଛକ ଧରିଲା ତାଙ୍କ ଆଡୁ ପ୍ରଶ୍ନ ହେଲା ''ସମୁଦି କେଉଁ ଆଡ଼େ ଆମର ଗତି ?'' ଶ୍ରୀକ୍ଷେତ୍ର ବୋଲି ଉତ୍ତର ଦେଲି । ହଁ କହି ସେ ହସିଉଠିଲେ । ସେ ଦିନ ଥାଏ ମାଘ ପୂର୍ଣ୍ଣମୀ । ତେଣୁ ମହାପ୍ରଭୁଙ୍କର ଗଜୋଦ୍ଧାରଣ ବେଶ । ଉଭୟ ଶ୍ରୀମନ୍ଦିରକୁ ଗଲୁ । ବେଶ ଦର୍ଶନ କଲୁ । ସମୁଦି ସରକାରୀ ନିର୍ଦ୍ଦେଶନାମାକୁ ମହାପ୍ରଭୁଙ୍କୁ ସମର୍ପଣ କଲେ । ମହାପ୍ରସାଦ ପାଇସାରି ବିଶ୍ରାମ ପାଇଁ ସମୁଦ୍ରକୂଳ ନିକଟ ଏକ ସରକାରୀ ଅତିଥିଭବନକୁ ଗଲୁ । ଠିକ୍ ସେହି ସମୟ ପୁରୀରେ ଲୋକ ଅଦାଲତ ଚାଲୁଥାଏ । ତାଙ୍କୁ ଯୁଗ୍ମ ଶଯ୍ୟାବିଶିଷ୍ଟ କୋଠରୀଟିଏ ମିଳିଲା । ଉଭୟ ରାତ୍ରିଯାପନ କଲୁ ।

ସମୁଦୀ ବିଛଣା ଧରୁ ଧରୁ ନିଦମାଉସୀ କୋଳକୁ ଯାଇ ଜୋରରେ ଘୁଙ୍ଗୁଡ଼ି ମାରିବା ଆରମ୍ଭ କରିଦେଲେ । ମୋତେ ନିଦ ହେଲାନାହିଁ । କିପରି ହେବ ? ପାଖରେ ତ ରେଳଗାଡ଼ି ଚାଲିବାର ଶବ୍ଦ । ରାତି ନପାହୁଣୁ ୪.୩୦ ମିରେ ସମୁଦି ଉଠି ମୋତେ ତାଙ୍କ ସଙ୍ଗେ ବେଳାଭୂମି ପରିଭ୍ରମଣ ଓ ସୂର୍ଯ୍ୟୋଦୟ ଦର୍ଶନ ନିମିତ୍ତ ଡାକିଲେ । ମୁଁ କହିଲି ସମୁଦି ''ମୋର ତ ବର୍ତ୍ତମାନ ସମୟ ରାତି ୨.୦୦ ଘଣ୍ଟା । ତେଣୁ ମୁଁ ଶୋଉଛି ଆପଣ ଯା'ନ୍ତୁ । ଆସିଲାବେଳକୁ ଦୁଇଖଣ୍ଡ କଡ଼ାପାନ ସାଙ୍ଗରେ ଆଣିବାକୁ ଭୁଲିବେ ନାହିଁ ।'' ମୁଁ ଲକ୍ଷ୍ୟ ରଖିଛି – ସମୁଦୀ ଗଲେ । ସେତେବେଳକୁ ଫାଟକରେ ତାଲା ଝୁଲୁଛି । ଯୁବ ସୁଲଭ ଭଙ୍ଗିରେ ଫାଟକ ଡେଇଁ ସମୁଦୀ ତାଙ୍କର ଗନ୍ତବ୍ୟ ସ୍ଥଳକୁ ଚାଲିଲେ । ମୁଁ ଟିକିଏ ନିରାପଦରେ ଶୋଇଲି । ସକାଳ ସାତଟା ବେଳକୁ ସେ ଫେରିଲେ । ନିତ୍ୟକର୍ମ ସମାପନ

କରିସାରି ସଙ୍ଗେ ସଙ୍ଗେ ତାଙ୍କର କାର୍ଯ୍ୟାଳୟ ପରିଦର୍ଶନରେ ଚାଲିଗଲେ । ମୁଁ ଝାଞ୍ଜପିଟା ମଠକୁ ଗଲି । ସେଠାରେ ମଧ୍ୟାହ୍ନ ଭୋଜନର ବନ୍ଦୋବସ୍ତ ହୋଇଥାଏ ।

ମଧ୍ୟାହ୍ନ ଭୋଜନ ସମୟରେ ସମୁଦା ଉପସ୍ଥିତ ହେଲେ । ଉଭୟ ପ୍ରସାଦ ସେବନ କରି ସେଦିନ ଭୁବନେଶ୍ୱର ଫେରିଲୁ ।

ଏହିପରି ଅନେକ ଘଟଣା ଏବେବି ମନେ ପଡ଼ିଲେ ଖୁବ୍ ଆନନ୍ଦ ଲାଗେ । ଗୁରୁବାବୁଙ୍କର ଜଗନ୍ନାଥଙ୍କଠାରେ ଅଚଳାଭକ୍ତି ଓ ନିଷ୍ଠା ତଥା ସବାନ୍ଧବେ ସେ ସୁଯୋଗର ସ୍ୱାଦୁ ଗ୍ରହଣ କରିବା ପଣିଆଁ ଖୁବ୍ କ୍ୱଚିତ୍ ଉଚ୍ଚ ପଦବୀଧାରୀ କତିପୟ ବ୍ୟକ୍ତିଙ୍କଠାରେ ଥାଏ ।

ସେହି ମହାପ୍ରଭୁଙ୍କ କୃପାବାରି ସଦା ସର୍ବଦା ସମୁଦାଙ୍କ ଉପରେ ବର୍ଷୁଥାଉ -ଏତିକି ଅଳି ଚକାଡ଼ୋଳାଙ୍କ ଶ୍ରୀପୟରେ କରୁଛି ।



# ପୂଜ୍ୟ ବାପା

ଶ୍ରୀମତୀ ସେବାରାଣୀ ମହାନ୍ତି

ବାପାଙ୍କର ଏହି ପୁଣ୍ୟ ଜନ୍ମତିଥିରେ ମୁଁ ତାଙ୍କୁ ବା କଣ ଉପହାର ଦେଇପାରିବି । କିନ୍ତୁ ମୋର ପ୍ରଭୁ ଗୋପାଳଙ୍କ ନିକଟରେ ଏତିକି ପ୍ରାର୍ଥନା ଯେ ସେ ମୋତେ ଜନ୍ମ ଜନ୍ମାନ୍ତର ପାଇଁ ତାଙ୍କରି ବୋହୂ ହିଁ କରନ୍ତୁ । ଏହା ମୋର ପ୍ରଥମ ଲେଖା । କଣ ଲେଖିବି କିପରି ଆରମ୍ଭ କରିବି କିଛି ଜାଣି ପାରୁନି । ମୋର ବିବାହ ଏହା ଭିତରେ ୧୫ ବର୍ଷ ହୋଇ ଗଲାଣି । ଅର୍ଥାତ ମୁଁ ୧୫ ବର୍ଷ ହେଲା ବାପାଙ୍କ ସଂସ୍ପର୍ଶରେ ଆସିଲିଣି, ତେଣୁ ତାଙ୍କ ବିଷୟରେ ଅନେକ କିଛି ଜାଣିବାର ସୁଯୋଗ ପାଇଛି । ତାଙ୍କ ବିଷୟରେ ଯେତେ ଲେଖିଲେ ବି ସରିବନି । ସେ ହେଉଛନ୍ତି ଜଣେ କର୍ମବୀର । ସେ ସବୁବେଳେ କର୍ମରେ ହିଁ ବିଶ୍ୱାସ ରଖନ୍ତି । ଦେଖିଲେ ଯେ କେହି ଆଶ୍ଚର୍ଯ୍ୟ ହେବ ସେ କିପରି ଏତେ ପରିଶ୍ରମ କରିପାରନ୍ତି ଏ ପ୍ରାପ୍ତ ବୟସରେ । ତେଣୁ ମୁଁ ମୋର ପୁଅ ଅର୍ଥାତ ବାପାଙ୍କ ନାତିକୁ ସବୁବେଳେ ତାଙ୍କ ବିଷୟରେ କହେ ଓ ବଡ଼ହେଲେ ତାଙ୍କରି ଆଦର୍ଶରେ (ମଣିଷ ପରି) ମଣିଷଟିଏ ହେବାପାଇଁ ଉପଦେଶ ଦିଏ ।

ପିଲାମାନଙ୍କ ପାଇଁ ପିତା ଅମୃତର କଳସ ସ୍ୱରୂପ । ପିଲାମାନେ ଆଶୀର୍ବାଦ ଭିକ୍ଷା କରନ୍ତୁ ବା ନକରନ୍ତୁ ନଈର ଧାର ପରି ବାପାଙ୍କ ହୃଦୟରୁ ପିଲା ମାନଙ୍କ ପାଇଁ ଶୁଭ ଆଶୀର୍ବାଦର ଅମୃତଝରଅନବରତ ଝରୁଥାଏ । ଏହା ମୁଁ ଅନୁଭବ କରିପାରିଛି । ମୋର ହିନ୍ଦୁସ୍ଥାନୀ କଣ୍ଠ ସଂଗୀତ ପ୍ରତି ପିଲାଟି ଦିନରୁ ଗଭୀର ରୁଚି ରହିଥିଲା ।ସେଥିପାଇଁ ମୋର ବାପା ପିଲାଟି ଦିନରୁ ବହୁତ ପରିଶ୍ରମ କରିଛନ୍ତି । ତାଙ୍କ ପରିଶ୍ରମର ଫଳ ସ୍ୱରୂପ ଭଗବାନଙ୍କ କୃପାରୁ ଅଳ୍ପକିଛି ସଂଗୀତ ଶିକ୍ଷାଲାଭ କରିଛି । କିନ୍ତୁ ମୋର ବିବାହ ପୂର୍ବରୁ ମୋର ମନରେ ପ୍ରବଳ ଭୟ ଥିଲା ଯେ ବିବାହ ପରେ ଶ୍ୱଶୁର ଘରେ ଜଣେ ଆଦର୍ଶ ସଂଗୀତଜ୍ଞ ହୋଇପାରିବ କି ନାହିଁ ! କାରଣ ଆମ ସମାଜରେ ଏହାର ମହତ୍ୱ ଖୁବ୍ କମ୍ ଲୋକ ବୁଝିଥାନ୍ତି । କିନ୍ତୁ ବିବାହ ପରେ ମୋର ସେ ସମସ୍ତ ଭୟ ଓ ଆଶଙ୍କା ସଂପୂର୍ଣ୍ଣ ଦୂର ହୋଇଥିଲା । କାରଣ ବାପା (ଶ୍ୱଶୁର) ଅତ୍ୟନ୍ତ ସଂଗୀତ ପ୍ରିୟ ଓ ବୋଉ (ଶାଶୁ) ମଧ୍ୟ ମୋତେ ମୋତେ କର୍ମ କ୍ଷେତ୍ରରେ ଆଗେଇଯିବା ପାଇଁ ନିଃସ୍ୱାର୍ଥପର ଭାବେ ସହଯୋଗ କରି ଆସିଛନ୍ତି । ନହେଲେ ମୋତେ ମଧ୍ୟ ଅନ୍ୟାମାନଙ୍କ ପରି ସଂଗୀତରେ ଡ଼ୋରି ବାନ୍ଧିବାକୁ ପଡ଼ିଥାନ୍ତା । ମୁଁ ବୋଉ (ଶାଶୁ)ଙ୍କ ଠାରୁ ଶୁଣିଛି ବାପା (ଶ୍ୱଶୁର)ଙ୍କ

ପିଲାଦିନ କଥା (ଯାହା ସେ ତାଙ୍କ ଶାଶୁଙ୍କଠାରୁ ଶୁଣିଥିଲେ)। ବାପାଙ୍କ ବାପା ଥିଲେ ଜଗତ୍‌ସିଂହପୁର ଆଳିପିଙ୍ଗଳ ଗ୍ରାମର ଶେଷ ଜମିଦାର । ତେଣୁ ସେ ସମୟର ଅନେକ କଥା ମୁଁ ଶୁଣିଛି ବୋଉଙ୍କ ଠାରୁ । ତେଣୁ ବାପାଙ୍କ ପିଲାଦିନ କଟିଛି ଜମିଦାରୀ ଢ଼ାଞ୍ଚାରେ । କିନ୍ତୁ କ୍ରମଶଃ ଜମିଦାରୀ ସରିଗଲା ପରେ ମଧ୍ୟ ବାପାଙ୍କ ଦୃଢ଼ମନୋବଳ ଓ ତାଙ୍କ ଜେଜେ (ଶ୍ରୀଯୁକ୍ତ ନାରାୟଣ ପ୍ରସାଦ ମହାନ୍ତି) ଯିଏକି ବ୍ରିଟିଶ୍ ଅମଳରେ ଓଡ଼ିଶାର ପ୍ରଥମ ଓଡ଼ିଆ ପ୍ରଧାନ ଶିକ୍ଷକ ଥିଲେ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ; ତାଙ୍କୁ ନିଜର ଆଦର୍ଶ ମାନି ବାପା ତାଙ୍କ ଜୀବନରେ ବହୁ ବାଧାବିଘ୍ନ ସତ୍ତ୍ୱେ ଉଚ୍ଚଶିକ୍ଷା ଲାଭ କରିଛନ୍ତି । ତାପରେ ସରକାରୀ ସ୍ତରରେ ଉଚ୍ଚ ପଦବୀରେ ରହି ମଧ୍ୟ ଅନେକ ଭ୍ରମଣ କାହାଣୀ ଉପନ୍ୟାସ ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପ ମାନ ରଚନା କରିପାରିଛନ୍ତି । ଏହି କର୍ମ ବହୁଳତା ଭିତରେ ମଧ୍ୟ ସେ ନିଜର ମାତୃଭୂମି ଓଡ଼ିଶା ପାଇଁ ଓ ତାର ଭାଷାର ସୁରକ୍ଷାପାଇଁ କିଛି କରିବାର ସ୍ୱପ୍ନ ଦେଖିଛନ୍ତି । ଯେଣୁ ସେ କର୍ମବୀର ତେଣୁ ସେ ତାଙ୍କର ପ୍ରତ୍ୟେକ ସ୍ୱପ୍ନକୁ ବାସ୍ତବରେ ପରିଣତ ମଧ୍ୟ କରିଛନ୍ତି ଓ କରୁଛନ୍ତି । ମୁଁ ଦେଖିଛି ବାପାଙ୍କର ଜନ୍ମଭୂମି ପ୍ରତି ମମତା । କିଏ କଣ କହୁଛି କିଏ କଣ କହିବ ସେଥିରେ ସେ ବହୁତ ଖୁସି ହୋଇଯାଆନ୍ତି ନାହିଁ କିମ୍ବା ଦୁଃଖରେ ଭାଙ୍ଗି ପଡ଼ିପଡ଼ନ୍ତି ନାହିଁ । ନିଃସ୍ୱାର୍ଥପର ଭାବରେ ଖରା ବର୍ଷା ଶୀତ ସହି ସେ କେବଳ ଜନ୍ମଭୂମିର ସେବା କରିଛନ୍ତି କୌଣସି ଆଶା ନରଖି । କର୍ମମୟ ଜୀବନ ଭିତରେ ସେ ନିଜର ନାତି ନାତୁଣୀଙ୍କପାଇଁ ମଧ୍ୟ ସମୟ ଦେଇ ପାରନ୍ତି । ଯେତେ କ୍ଲାନ୍ତ ଥିଲେ ମଧ୍ୟ କେବେ ବିରକ୍ତ ହୁଅନ୍ତି ନାହିଁ । ବନ୍ଧୁବାନ୍ଧବ, ଗାଁ ଗଣ୍ଡା ସମସ୍ତଙ୍କ ପାଇଁ ସେ ସମୟ ଦିଅନ୍ତି । ତେଣୁ ଜଣେ ପିତା, ସ୍ୱାମୀ, ଶ୍ୱଶୁର, ଜେଜେ, ଅଜା ଏହି ସମସ୍ତ ଦାୟିତ୍ୱ ସେ ଠିକ୍ ଭାବରେ ତୁଲାଇ ପାରିଛନ୍ତି । ଏହି ସବୁ ବିଷୟରେ ବୋଉ (ଶାଶୁ) ଙ୍କର ଅବଦାନ ମଧ୍ୟ କିଛି କମ୍ ନୁହେଁ । ନିରବଚ୍ଛିନ୍ନଭାବେ ସେ ବାପାଙ୍କୁ ସହଯୋଗ କରିଆସିଥିବାରୁ ବାପା ନିଜ କର୍ମ କ୍ଷେତ୍ରରେ ସଫଳ ହୋଇପାରିଛନ୍ତି । ତେଣୁ ଶାସ୍ତ୍ରରେ ଅଛି "ପିତା ଧର୍ମଃ ପିତା ସ୍ୱର୍ଗଃ ପିତା ହିଁ ପରମଂ ତପଃ ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବଦେବତା" । ସତ କହିବାକୁ ଗଲେ ପିତାମାତାଙ୍କ ସ୍ଥାନ ସ୍ୱର୍ଗଠାରୁ ଉପରେ । ପିତା ମାତାଙ୍କର ତ୍ୟାଗ ଓ ନିରବଚ୍ଛିନ୍ନ ଯତ୍ନ ଫଳରେ ସନ୍ତାନମାନେ ସଂସାରରେ ଉତ୍ତମ ମଣିଷ ଓ ସୁନାଗରିକ ଭାବରେ ପ୍ରତିଷ୍ଠିତ ହୁଅନ୍ତି ।ଆକାଶର ତାରା ଗଣିହେବ, ବରଷାର ଧାରା ଗଣିହେବ, କିନ୍ତୁ ପିଲାମାନଙ୍କ ପାଇଁ ପିତାମାତାଙ୍କ ତ୍ୟାଗ ଗଣିହେବ ନାହିଁ ।

ପ୍ରଥମରୁ କହିଥିଲି ବାପାଙ୍କ ବିଷୟରେ ଯେତେ ଲେଖିଲେ ମଧ୍ୟ କମ ହେବ । ମୁଁ ବା କଣ ଲେଖି ପାରିବି ? ତେଣୁ ଆଜି ତାଙ୍କର ଏହି ପବିତ୍ର ଜନ୍ମ ତିଥିରେ ମୋର ଗୋପାଳଜୀଉଙ୍କ ନିକଟରେ ପ୍ରାର୍ଥନା ଯେ ବାପାଙ୍କର ଚଲାପଥ କୁସୁମିତ ହେଉ । ତାଙ୍କର ସ୍ନେହ ଆର୍ଶୀବାଦ ମୋ ଉପରେ ସେମିତି ରହିଥାଉ । ଏହି ଲେଖା ମାଧ୍ୟମରେ ମୁଁ ମୋର ଭକ୍ତିଅର୍ଘ୍ୟ ତାଙ୍କ ଚରଣରେ ଅର୍ପଣ କରୁଛି ।

(ବଡ଼ବୋହୂ)



# ଗୁରୁବାବୁଙ୍କ ସହିତ ମୋର ବନ୍ଧୁତା

ଅଭୟ ସାମନ୍ତରାୟ

ଏକା ଗାଁରେ ଜନ୍ମହୋଇ, ପିଲାଦିନରେ ଧୂଳିଘର, ଲୁଚାକାଳି, ବୋହୂଚୋରୀ ଖେଳ ଏକାଠି ଖେଳି, ଦଶ ପନ୍ଦର ବର୍ଷ ଯାଏ ଗାଁ ନଈ ନାଳରେ ଏକାଠି ଗାଧୋଇ , ପହଁରି, ପ୍ରାଥମିକ ସ୍କୁଲଠାରୁ ହାଇସ୍କୁଲଯାଏଁ ପାଠପଢ଼ି ଅନେକ ସାଙ୍ଗ ବଡ଼ ହେଲାପରେ ଏ ସ୍ମୃତି ସବୁ ଭୁଲିଯାନ୍ତି । ବିଶେଷ କରି ଚାଷ-ବାସ, ବାଣିଜ୍ୟ-ବ୍ୟବସାୟରେ ଲାଗି ରହିଥିବା କିମ୍ବା ନିତି ମୁହଁ ଚାହାଁ ଚାହିଁ ହେଉଥିବା ଶତକଡ଼ା ୯୦ ସାଙ୍ଗଙ୍କର ଏ ବିଷୟରେ ଚିନ୍ତା କରିବା ବା ଦେଖାହେଲେ ଅତୀତର ସ୍ମୃତି ରୋମନ୍ଥନ କରି କିଛି ଆନନ୍ଦ ଲାଭ କରିବାର ସ୍ପୃହା ମୋଟେ ଦେଖାଯାଏ ନାହିଁ । ତେବେ ବେଳେବେଳେ କେମିତି ଦେଖା ହେଲେ 'କିମିତି ଅଛୁ' 'ଖବର କ'ଣ ?' ପଚାରିଦେଇ ଗୋଟାଏ ଆନୁଷ୍ଠାନିକତା କେତେକ ରକ୍ଷା କରିଥାନ୍ତି ହେଲେ ପ୍ରତ୍ୟେକଙ୍କର ସମସ୍ୟା ଏମିତି ....ଯେ ଜଣେ ଯଦି ନିଜ ବିଷୟରେ କିଛି କହିବସେ ଅନ୍ୟଜଣେ ନିଜର ସମାନ ଅବସ୍ଥା ବିଷୟରେ ସୂଚନା ଦେଇ ଯଥାଶୀଘ୍ର ସ୍ଥାନ ତ୍ୟାଗ କରିଥାଏ । କିନ୍ତୁ ଅବଶିଷ୍ଟ ଦଶପ୍ରତିଶତ ସାଙ୍ଗଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଏ । ସେମାନେ ସମଧର୍ମୀ ବା ସମକର୍ମୀ ହୋଇଥିଲେ ବନ୍ଧୁତା ନିଶ୍ଚୟ ଘନିଷ୍ଠ ହୋଇଥାଏ । ଆଉ ଯଦି ପିଲାଦିନେ ଏକାଠି ବିଦ୍ୟାଳୟ ଓ ପରବର୍ତ୍ତୀ ସମୟରେ ମହାବିଦ୍ୟାଳୟରେ ଅଧ୍ୟୟନ କରି କୌଣସି କ୍ଷେତ୍ରରେ ଏକତ୍ର ରହି କାର୍ଯ୍ୟ କରୁଥାନ୍ତି । ବିଶେଷ କରି ସେମାନଙ୍କ ରୁଚି, ଦାୟିତ୍ୱ ବୋଧ, ଅହରଣ ଶକ୍ତି, ପ୍ରଜ୍ଞା ଓ ଲୋକପ୍ରିୟତା ସମାନ ହାରରେ ରହିଥାଏ, ତେବେ ସେମାନଙ୍କ ଭିତରେ ବୁଝାମଣା, ସହିଷ୍ଣୁତା, ଯାଚଞ୍ଚା ଓ ଜଣେ ଅନ୍ୟକୁ ପ୍ରଚାର ଓ ପ୍ରକାଶ କରାଇବା ଆନନ୍ଦ ବରାବର ଲକ୍ଷ୍ୟ କରାଯାଏ । ଡଃ ଗୁରୁପ୍ରସାଦ ମହାନ୍ତି ଓ ମୋ ଭିତରେ ଶେଷୋକ୍ତ ପଂକ୍ତିଟି ପ୍ରାୟ ପ୍ରଯୁଜ୍ୟ ବୋଲି ମୋର ଧାରଣା ।

ଆମେ ସାଙ୍ଗହୋଇ ମାତ୍ର ଗୋଟିଏ ବର୍ଷ ବିଦ୍ୟାଳୟରେ ଏକତ୍ର ପଢ଼ିଥିଲୁ । ପ୍ରଚଣ୍ଡ ଅର୍ଥାଭାବ ଯୋଗୁଁ ଠିକ୍ ସମୟରେ ମୁଁ ମହାବିଦ୍ୟାଳୟକୁ ଯାଇପାରି ନଥିଲି ଏବଂ ବର୍ଷେ ଦୁଇବର୍ଷ ପଛରେ ପଢ଼ିବାର ସୁଯୋଗ ପାଇଥିଲି । ଡଃ ମହାନ୍ତିଙ୍କ ଭଳି ଉଚ୍ଚଶିକ୍ଷା ମୋ ଭାଗ୍ୟରେ ନଥିଲା କିମ୍ବା ଏକାଧିକ ଥର ବିଦେଶ ଯିବା, ସେଠାରେ ଉଚ୍ଚଶିକ୍ଷାରେ ଉପାଧି

ଲାଭ କରିବା, ପିଲାମାନଙ୍କୁ ଉଚ୍ଚଶିକ୍ଷା ଦେଇ ବିଦେଶ ପଠାଇବା କିମ୍ବା ଓଡ଼ିଶାରେ ଉଚ୍ଚ ସମ୍ମାନଷ୍ପଦ ପଦପଦବୀ ମଣ୍ଡନ କରିବା, ବହୁ ପୁସ୍ତକ ଲେଖି ଜଣେ ବିଶିଷ୍ଟ ସାହିତ୍ୟିକ ଭାବେ ସମ୍ମାନିତ ହେବା, ଗବେଷଣା କରି ଡକ୍‌ଟରେଟ କରିବା, ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଦ୍ୱାରା ସମ୍ମାନିତ ହେବା ମୋ ପାଇଁ କେବେ ବି ସମ୍ଭବ ହୋଇପାରିନାହିଁ । ତଥାପି ଗୋଟିଏ ଦୁଇଟି ରୁଚିବୋଧ ଓ ମାନସିକତା ଏତେ ଘନିଷ୍ଠ ଭାବରେ ଆମ ଉଭୟଙ୍କ ମଧ୍ୟରେ ରହିଛି ଯେ ଆମେ କେହି କାହାକୁ ଛାଡ଼ିବାର ସାମାନ୍ୟ ଚିନ୍ତା ବି କରିନାହୁଁ । ମୋ ପ୍ରଶଂସାରେ ସେ ଯେତିକି ଆନନ୍ଦ ଅନୁଭବ କରିଥାନ୍ତି, ତାଙ୍କ ପ୍ରଶଂସାରେ ମୁଁ ସମାନ ଭାବରେ ଆତ୍ମତୃପ୍ତି ଲାଭ କରିଥାଏ, ଅନେକ ସମୟରେ କର୍ମକ୍ଷେତ୍ରରେ ଆମ ଭିତରେ ଯୋର ପାଟି ତୁଣ୍ଡ ହୁଏ । ପରସ୍ପରର ଚିତ୍କାରରେ ଗୋଟାଏ କିଛି ଅଘଟଣ ଘଟିବାକୁ ଯାଉଛି ବୋଲି ଅନେକେ ସ୍ଥିର ନିଶ୍ଚିତ ହୋଇଥାନ୍ତି । କିନ୍ତୁ କିଛି ହୁଏନାହିଁ । ପରମୁହୂର୍ତ୍ତରେ ଦୁଇଭାଇ ଭଳି ଆମେ ବ୍ୟବହାର କରିଥାଉ ଏବଂ ସମୟ ସୁବିଧା ଦେଖି ଉଭୟ ଆତ୍ମ ନିରୀକ୍ଷଣ କରି ନିଜ ନିଜର ଦୋଷ ତ୍ରୁଟି ସ୍ୱୀକାର କରି ସୁଧାରିବାକୁ ଉଦ୍ୟମ କରୁ ।

ଗୋଟିଏ କୌତୂହଳର କଥା ଯେ କେତେକ ଅସହିଷ୍ଣୁ ବ୍ୟକ୍ତି ଆମ ଭିତରେ ବିଭେଦ ସୃଷ୍ଟି ପାଇଁ ଅନେକଥର ଚେଷ୍ଟା କରି ନିରାଶ ହୋଇଛନ୍ତି । ସେ ମୋର ଜଣେ ଅହିତାକାଂକ୍ଷୀ ଓ ମୋତେ ବିଭିନ୍ନ ଅସୁବିଧାରେ ପକାଇବାକୁ ଚେଷ୍ଟିତ; ଏହି ଧାରଣା ମୋ ମନରେ ଜନ୍ମାଇବା ପାଇଁ ଏହି ଶତ୍ରୁମାନେ ଅନେକଥର ଚେଷ୍ଟା କରିଛନ୍ତି । ଏବେ ମଧ୍ୟ ସେଥିରୁ ବିରତ ହୋଇନାହାନ୍ତି । ହେଲେ ଏପରି ଅପପ୍ରଚାରର ଶୀକାର ନ ହୋଇ ଆମେ ଏ ବିଷୟରେ ପରସ୍ପର ଭିତରେ ଆଲୋଚନା କରି ନିରନ୍ତର ସ୍ୱଚ୍ଛତା ରକ୍ଷା କରି ଆସିଛୁ ।

ପ୍ରତ୍ୟେକ ମଣିଷର ଦୋଷ-ଗୁଣ ରହିଛି । ତା'ରି ଭିତରୁ ସେ କେଉଁଗୁଣର ଅଧିକାରୀ ଏବଂ ସେହି ଗୁଣ ଯୋଗୁଁ ସେ ସମାଜର କି ସେବା କରୁଛନ୍ତି, ତାହା ଅନୁଧ୍ୟାନ କରିବା ବାସ୍ତବରେ ଉଚିତବୋଲି ମୁଁ ଭାବୁଛି । ଗୁରୁବାବୁଙ୍କର କେତେବେଳେ କିମିତି ଗୋଟେ ଅଧେ ତ୍ରୁଟିବିଚ୍ୟୁତି ମୋ ଆଖିରେ ପଡ଼ିଲେ ବି ଅଧିକାଂଶ ସମୟରେ ଅନେକ୍ ଭଲଗୁଣ ମୁଁ ଲକ୍ଷ୍ୟ କରିଥାଏ । ଗୋଟିଏ ବଡ଼କଥା ହେଉଛି ଯେ ସେ କେବେ ଅଯଥା ସମୟ ନଷ୍ଟ କରନ୍ତି ନାହିଁ । ପରଚର୍ଚ୍ଚା ସେ କରିବାର ମୁଁ ପ୍ରାୟ ଦେଖି ନାହିଁ । ଦେହ ଖରାପ ଥିଲେ ନିର୍ଦ୍ଦିଷ୍ଟ ସମୟ ବ୍ୟତୀତ ଅନ୍ୟ କେତେବେଳେ ସେ ଘରେ ରହିବାର ମୁଁ ଜାଣିନାହିଁ । ସମୟର ଅପଚୟ କରିବା ତାଙ୍କ ଜାତକରେ ପ୍ରାୟ ନାହିଁ । ସଭାସମିତି, ସାଙ୍ଗଠନିକ କାର୍ଯ୍ୟ, ଆଧ୍ୟାତ୍ମିକ ଅନୁଷ୍ଠାନ, ନିଜ ଜନ୍ମସ୍ଥାନ ଜଗତସିଂହପୁର ଆଳିପିଙ୍ଗଳରୁ ବାସଗୃହ, ବାଷ ଆଜିର ଯନ୍ ଅନୁଷ୍ଠାନର କର୍ମକର୍ତ୍ତା ରୂପେ ଅନେକ ସମୟରେ କଟକ ଓ ଓଡ଼ିଶା

ବାହାରକୁ ଯିବା ଆଦି କାର୍ଯ୍ୟ ନିରନ୍ତର ଚାଲୁଥାଏ । ଅବଶିଷ୍ଟ ବଳକା ସମୟକୁ ସେ ନିୟମିତ ଭାବେ ଲେଖାଲେଖି କାର୍ଯ୍ୟରେ ବ୍ୟୟ କରିଥାନ୍ତି । ଜଣେ ସମାଜ ସେବୀ ଓ ସାହିତ୍ୟିକ ଭାବେ ଦୈନିକ କେତେକ ଲୋକ ତାଙ୍କୁ ସାକ୍ଷାତ କରିବାକୁ ଆସିଥାନ୍ତି । ଏହା ବ୍ୟତୀତ ଦୈନିକ ଅନେକ ଲୋକ ଦୂରଭାଷ ଯନ୍ତ୍ର ଯୋଗେ ତାଙ୍କୁ ଡ଼ାକିଥାନ୍ତି । ତାଙ୍କୁ ମଧ ଅନ୍ୟମାନଙ୍କୁ ଡ଼ାକି କଥାବାର୍ତ୍ତା କରିବାକୁ ପଡ଼ିଥାଏ । ଏ ସବୁ ସତ୍ତ୍ୱେ ସେ ପ୍ରତିଦିନ ସାରସ୍ୱତ ସାଧନା ଅବ୍ୟାହତ ରଖିଥାନ୍ତି । ମୋର ଅନେକ ସମୟରେ ମଛରତା ପାଇଁ ମୁଁ ତାଙ୍କଦ୍ୱାରା ତିରସ୍କୃତ ହେଲେ ବି ଯଥା ସମ୍ଭବ ନିଜକୁ ସଜାଡ଼ିବାକୁ ଚେଷ୍ଟା କରିଥାଏ ।

ସବୁଠାରୁ ତାଙ୍କର ଭଲଗୁଣ ହେଉଛି ଯେ କର୍ମୀକୁ ସେ ଆଦର କରିଥାନ୍ତି, ସମାଜ ପାଇଁ ଯାହା ହିତକର, ତାହା ସ୍ପଷ୍ଟଭାବେ କରିବାରେ ତାଙ୍କର ସାମାନ୍ୟ ଦ୍ୱିଧା ନଥାଏ । ଯାହା ନ୍ୟାୟସମ୍ମତ, କରଣୀୟ, ବରଣୀୟ ଓ ସମାଜର ହିତକାରୀ, ତାହା କହିବା ଓ କରିବାରେ ଡଃ ଗୁରୁପ୍ରସାଦ ମହାନ୍ତି କେବେ ପଶ୍ଚାତ୍‌ପଦ ହେବାର ମୁଁ ଜାଣିନାହିଁ । ସର୍ବଶେଷରେ କରୁଣାମୟ ଶ୍ରୀଜଗନ୍ନାଥଙ୍କ ନିକଟରେ ମୋର ଏତିକି ପ୍ରାର୍ଥନା ଯେ ତାଙ୍କର ଚଲାପଥ କୁସୁମିତ ହେବା ସହିତ ଆମ ଭିତରେ ଥିବା ଅତୁଟ ବନ୍ଧୁତାକୁ ସେ ଚିର ଅତୁଟ ରଖନ୍ତୁ ।

ବନ୍ଦେ ଉତ୍କଳ ଜନନୀ !

*ସାଧାରଣ ସମ୍ପାଦକ, ଉତ୍କଳ ସମ୍ମିଳନୀ, କଟକ ଜିଲ୍ଲା ।*



# ଗୁରୁକୃପା ହିଁ କେବଳମ୍

କୃଷ୍ଣଚନ୍ଦ୍ର ଭଞ୍ଜ

ଏହି ଉକ୍ତିର ଜ୍ୱଳନ୍ତ ନିଦର୍ଶନ ହେଉଛନ୍ତି ଡଃ ଗୁରୁପ୍ରସାଦ ମହାନ୍ତି । ଯୁଗେ ଯୁଗେ ଏହି ଭାରତ ବର୍ଷରେ ଗୁରୁରୂପେ ଶ୍ରୀବିଷ୍ଣୁ ଅବତାର ନେଇ ଉପଯୁକ୍ତ ପାତ୍ରରେ ସଦୟ ହୋଇ ମହାମାନବରେ ପରିଣତ କରିଥାନ୍ତି । ଗୁରୁରୂପୀ ଅବତାର ମଧ୍ୟରୁ ଉପଯୁକ୍ତ ସାକ୍ଷାତ୍ ବେଦଗୁରୁ ବୃହସ୍ପତି ସଦୃଶ ମହାଜ୍ଞାନୀ, ସର୍ବାଗ୍ରେ ପୂଜ୍ୟ ମହାଯୋଗୀ ଶିବଙ୍କ ବରପ୍ରାପ୍ତ ବାକ୍‌ସିଦ୍ଧ ପଣ୍ଡିତ ଶ୍ରୀ ପାଦ ଗଣେଶ ମିଶ୍ରଙ୍କ ଅପାର କରୁଣାରୁ ପିତା ଶ୍ରୀ ରାମଚନ୍ଦ୍ର ମହାନ୍ତି ଓ ମାତା ଶ୍ରୀମତୀ ଅଧରମଣି ଦେବୀଙ୍କ କୋଳମଣ୍ଡନ କରି ୧୯୩୮ ମସିହା କୁମାର ଉତ୍ସବ ଦିନ ଜଗତ୍‌ସିଂହପୁର ଜିଲ୍ଲା ଅନ୍ତର୍ଗତ ଆଳିପିଙ୍ଗଳ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ଗୁରୁପ୍ରସାଦ । ଗୁରୁଙ୍କର ଅପାର କରୁଣା ହେତୁ ସେ ସୂଚାରୁ ରୂପେ ଅଧ୍ୟାପନା କାର୍ଯ୍ୟ ଶେଷ କରି ତାଙ୍କର କର୍ମକ୍ଷେତ୍ର ପଶୁପାଳନ ବିଭାଗରେ ଅବସ୍ଥାପିତ ହୋଇଥଲେ । ସେହି ବଭାଗର ତଳ ପଦବୀରେ ସମସ୍ତ କାର୍ଯ୍ୟ ଦକ୍ଷତାର ସହ ସମାପନ କରି ସର୍ବୋଚ୍ଚ ପଦବୀକୁ ଯଥା ନିର୍ଦ୍ଦେଶକ ରୂପେ ୧୯୯୪ ମସିହାଠାରୁ ଓଡ଼ିଶା ପ୍ରଦେଶର ପଶୁପାଳନ ବିଭାଗର ସମସ୍ତ ଦାୟିତ୍ୱ ସେ ଗ୍ରହଣ କରିଥିଲେ । ପ୍ରଥମେ ଯେତେବେଳେ ୧୯୯୪ ମସିହାରେ ସେ ଦାୟିତ୍ୱ ନେଲେ ପଶୁପାଳନ ବିଭାଗର ସ୍ଥାଣୁତା ତାଙ୍କ ହୃଦୟକୁ ମର୍ମେ ମର୍ମେ ବିଦାରିତ କରିଥିଲା । ଯାହାଫଳରେ ସେ ନିଜେ ଦିଲ୍ଲୀ ଦରବାରରୁ ୧୨ କୋଟି ଟଙ୍କା ଆଣି ବିଭାଗରେ ମଳିସବୁ ଚିକ୍ କରାଇବା ସହ ବିଭିନ୍ନ ଆତ୍ମନିଯୁକ୍ତି ସଂସ୍ଥାଗୁଡ଼ିକୁ ପୁନର୍ଜୀବିତ କରିବାକୁ ଚେଷ୍ଟା କରିଥିଲେ ଯଥା – କୁକୁଡ଼ା ପାଳନ, ମେଷପାଳନ, ବତକପାଳନ, ଘୁସୁରୀ ପାଳନ ଇତ୍ୟାଦି । ଏହି ସଂସ୍ଥାରୁ ଉତ୍ପାଦିତ ଦ୍ରବ୍ୟଗୁଡ଼ିକର ବିକ୍ରୀର ସୁବ୍ୟବସ୍ଥା କରିଥିଲେ । ଯାହା ଫଳରେ ବହୁ ପରିମାଣରେ ବେକାର ଶିକ୍ଷିତ ଯୁବକ ଯୁବତୀ ମାନଙ୍କୁ ଆତ୍ମନିଯୁକ୍ତି ମିଳିବା ସହ ବିଭାଗଟି କ୍ରମେ ବର୍ଦ୍ଧମାନ ହେଲା । ଫୁଲନଖରାଠାରେ ଥିବା ପଶୁପକ୍ଷୀ ରୋଗ ନିରୂପଣ ସଂସ୍ଥା ଓ ତାର ପ୍ରତିକାର ଔଷଧ ଗବେଷଣା କେନ୍ଦ୍ରକୁ ମନ୍ଥର ଗତିରୁ ପ୍ରବାହ ମାନ ଗତିକୁ ଆଣି ଗୋଜାତିର ଆଶୁ ପ୍ରତିକାର କରାଇବା ତାଙ୍କର ଅଦମ୍ୟ ଚେଷ୍ଟାର ଫଳ । ସଙ୍କର ଜାତୀୟ ପ୍ରଜନନ ଦ୍ୱାରା ଗ୍ରାମେ ଗ୍ରାମେ ଜର୍ସି ହୋଲଷ୍ଟିନ୍ ପ୍ରଭୃତି ଗାଈମାନଙ୍କର ଅଧିକ ପାଳନ ହେତୁ ଦୁଗ୍ଧ ଉତ୍ପାଦନ ହାର ବିଗତ ବର୍ଷମାନଙ୍କ

ଅପେକ୍ଷା ଯଥେଷ୍ଟ ବଢ଼ିଚାଲିଲା ଓ ଆମ ପ୍ରଦେଶରୁ ବାହାର ପ୍ରଦେଶକୁ ଖିର ରପ୍ତାନୀ ହୋଇ ପାରିଲା । ପଶୁପାଳନ ଏପରି ଭାବରେ ଉନ୍ନତି ପଥରେ ଆଗେଇଲା ଯେ ଖୋଦ୍ ମୁଖ୍ୟମନ୍ତ୍ରୀ ୧୯୯୭ ମସିହାରେ ଫୁଲନଖରାଠାରେ ବିଭାଗର ଭୂରି ପ୍ରଶଂସା କରିବା ସହ ପାଖ ପଡ଼ୋଶୀରାଜ୍ୟ ସହ ସମକକ୍ଷ ହୋଇଛନ୍ତି ବୋଲି ବିରାଟ ସାଧାରଣ ସଭାରେ ଘୋଷଣା କରିଥିଲେ । ଡଃ ମହାନ୍ତି ଜଣେ ଉଚ୍ଚକୋଟୀର ଲେଖକ ଯାହାର ପ୍ରମାଣ ଓଡ଼ିଶା ସାହିତ୍ୟ ଏକାଡ଼େମୀରୁ ମିଳେ । ତାଙ୍କର ଲିଖିତ ପୁସ୍ତକ ''ପାତାଳ ପୁରୀର ହାଲଚାଲ'' ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇ ଦଶ ହଜାର ଟଙ୍କା ପୁରସ୍କୃତ ହୋଇଥିଲା । ତାଙ୍କର ଆଧ୍ୟାତ୍ମିକ ଭାବଧାରା ଏପରି ଯେ ସେହି ପୁରସ୍କାର ଟଙ୍କାକୁ ତାଙ୍କ ପୂର୍ବ ପୁରୁଷରୁ ଅସମ୍ପୂର୍ଣ୍ଣଥିବା ''ଶ୍ରୀ ଜଗନ୍ନାଥଜୀଉ'' ମନ୍ଦିରକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ସର୍ବ ପ୍ରଥମେ ସେ ଉତ୍ସର୍ଗ କରିଥିଲେ । ତାଙ୍କ ମାସିକ ଦରମାରୁ ୧ ଅଂଶ ଓ ତାଙ୍କ କନିଷ୍ଠ ପୁତ୍ର ଯେ କି ଆମେରିକାରେ ଯନ୍ତ୍ରୀଅଛନ୍ତି ପ୍ରତି ମାସରେ ତାଙ୍କଠାରୁ ପାଞ୍ଚ ହଜାର ଟଙ୍କା ଅଣାଇ ଗୋଟିଏ ବର୍ଷରେ ସମ୍ପୂର୍ଣ୍ଣ କରାଇ ପାରିଥିଲେ (୧୯୯୫) । ସେହି ମନ୍ଦିରକୁ ଠାକୁରରାଜା ଗଜପତି ଦିବ୍ୟସିଂହ ଦେବ ଓ ତତ୍କାଳୀନ ପଶୁସମ୍ପଦ ବିଭାଗର ମାନ୍ୟବର ମନ୍ତ୍ରୀ ଶ୍ରୀ ପ୍ରକାଶଚନ୍ଦ୍ର ଦେବତା ୧୯୯୬ ମସିହା ମସିହା ମାର୍ଚ୍ଚ ମାସରେ ବିରାଟ ଜନସମାରୋହରେ ଉଦ୍‌ଘାଟିତ କରିଥିଲେ । ଡଃ ମହାନ୍ତି ନିର୍ଦ୍ଦେଶକ ଥିବାବେଳେ ପଶୁସମ୍ପଦ ବିଭାଗ ବଜେଟରେ ଅଧିକ ଅର୍ଥ ବରାଦ କରାଇ ଓଡ଼ିଶାରେ ୨୫ଟି ପଶୁ ଡାକ୍ତରଖାନା ଓ ଶତାଧିକ କୃତ୍ରିମ ପ୍ରଜନନ କେନ୍ଦ୍ର ସହ ପଶୁ ସହାୟକ ତାଲିମ ଶିବିରମାନ ଖୋଲାଇ ପାରିଥିଲେ । ତାଙ୍କର ଲକ୍ଷ୍ୟଥିଲା ପ୍ରତି ପଞ୍ଚାୟତରେ ଯେପରି ନିଶ୍ଚିତ ଭାବେ ପଶୁସହାୟକ କେନ୍ଦ୍ର ରହିବ । ଅତ୍ୟନ୍ତ ପରିତାପର ବିଷୟ ସେ ୧୯୯୭ ମସିହାରୁ ଅବ୍ୟାହତି ନେବା ପରେ କାହିଁ ପଶୁପାଳନ ବିଭାଗର ସେପରି ଆଖି ଦେଖାଣିଆ କାମ କିଛି ହୋଇନାହିଁ । ବରଂ ସେ ଯାହାସବୁ କରାଇଥିଲେ ତାହା ବନ୍ଦ ହୋଇଗଲାଣି । ଡଃ ମହାନ୍ତି ଏପରି ଉଚ୍ଚାଭିଳାଷୀ ଯେ ଗାଆଁ ସହିତ ମାତୃଭୂମି ଓଡ଼ିଶା ତଥା ସମଗ୍ର ଓଡ଼ିଆଜାତି ପାଇଁ ସେ ଏବେ କାର୍ଯ୍ୟରତ । ଅବସର ପରେ ସେ ଉତ୍କଳମାତାର ଜଣେ ସୁଯୋଗ୍ୟ ସନ୍ତାନର ଜ୍ୱଳନ୍ତ ପ୍ରମାଣ ଦେଇପାରିଛନ୍ତି । ଓଡ଼ିଆ ଭାଷା ଓ ଜାତିର ଉନ୍ନତି ନିମିତ୍ତ ତାଙ୍କ ମନ ଟାଣି ହୋଇଯାଇଛି । ୧୯୦୩ ମସିହାରୁ ଆରମ୍ଭ ହୋଇଥିବା ଉତ୍କଳ ସମ୍ମିଳନୀ ସୁପ୍ତ ଅବସ୍ଥାରୁ ଜାଗ୍ରତ ଅବସ୍ଥାକୁ ଆଣିବାରେ ତାଙ୍କର ଚେଷ୍ଟା ଅତୁଳନୀୟ । ଯେ କୌଣସି କାର୍ଯ୍ୟର ଅଗ୍ରଗତି ନିମିତ୍ତ ମନବଳ ସହ ଅର୍ଥର ବଳ ଯେ ଏକାନ୍ତ ପ୍ରୟୋଜନ ତାହା ତାଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ଯାହାଫଳରେ ସେ ୧୯୯୮ ଓ ୨୦୦୨ ମସିହାରେ ଆମେରିକା ଯାଇ ପ୍ରବାସୀ ଉତ୍କଳୀୟମାନଙ୍କୁ ଏକଜୁଟ୍ କରାଇଥିଲେ । ୨୦୦୩ ମସିହାରେ ଓଡ଼ିଶାରେ ଉତ୍କଳ ସମ୍ମିଳନୀର ଶତବାର୍ଷିକ ସମାରୋହ ଅତ୍ୟନ୍ତ

ଆନନ୍ଦ ଓ ଉଦ୍ଦୀପନାର ସହ ପାଳିତ ହେବା ଅବସରରେ କଟକର ''ଲଦଗା'' ପଡ଼ିଆରେ ଉତ୍କଳ ସମ୍ମିଳନୀ ନାମରେ ଥିବା ଜାଗାର ପୁନରୁଦ୍ଧାର କରାଯାଇ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ସ୍ଥାୟୀ ଗୃହ ପ୍ରତିଷ୍ଠା ନିମିତ୍ତ ଶୁଭଉଦ୍‌ଘାଟନ ହୋଇଥିଲା । ତାଙ୍କର ଜନ୍ମସ୍ଥାନ ଆଳିପିଙ୍ଗଳ ଗ୍ରାମରେ ଠାକୁରଙ୍କ ମେଳଣ ତୋଟା ଓ ଦେବୀନଦୀ ତୀରସ୍ଥ ବେଲବଣର ଆମ୍ବତୋଟା ସବୁ ନଷ୍ଟ ହୋଇଯାଇଥିବାରୁ ଏବେ ସେସବୁ ସ୍ଥାନରେ ତାଙ୍କ ନିଜ ଉଦ୍ୟମରେ ବୃକ୍ଷ ରୋପଣ କାର୍ଯ୍ୟ ଆଗେଇ ଚାଲିଛି । ଗାଆଁ ସହିତ ମାତୃଭୂମି ଓଡ଼ିଶା ତଥା ସମଗ୍ର ଓଡ଼ିଆ ଜାତି ପାଇଁ ସେ ଏବେ କାର୍ଯ୍ୟରତ ।

ଡଃ.ମହାନ୍ତି ଉତ୍କଳ ମାତାର ଜଣେ ସୁଯୋଗ୍ୟ ସନ୍ତାନ ଏହା ଅସ୍ୱୀକାର କରିହେବ ନାହିଁ । ଉତ୍କଳର ନାଥ ''ଶ୍ରୀ ଜଗନ୍ନାଥ'' ତାଙ୍କୁ ଚିରଂଜିବୀ କରି ରଖନ୍ତୁ ଏହାହିଁ ମୋର ପ୍ରାର୍ଥନା ।



# ଗୁରୁପ୍ରସାଦଙ୍କ ସହ ଏକ ସାକ୍ଷାତକାର

ଶ୍ରୀ ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ପ୍ରଶ୍ନ – ଆପଣଙ୍କ ଜୀବନ ବହୁ ଦିଗନ୍ତ ସ୍ପର୍ଶ କରିଛି । କେଉଁ ପରିଚୟକୁ ନେଇ ଆପଣ ଅଧିକ ପରିଚିତ ହେବାକୁ ଚାହାନ୍ତି ?

ଉତ୍ତର – ମାତୃଭୂମି ଉତ୍କଳକୁ ପ୍ରାଣ ଦେଇ ଭଲପାଉଥିବା ଜଣେ ନିଛଳ ଓଡ଼ିଆ ଭାବେ ମୁଁ ପରିଚିତ ହେବାକୁ ଚାହେଁ ।

ପ୍ରଶ୍ନ – ପିଲାଦିନର କେଉଁ ସ୍ମୃତି ଏବେ ବି ଆନ୍ଦୋଳିତ କରେ ଆପଣଙ୍କ ମନକୁ ? ସେ ସମୟ ସ୍ୱାଧୀନତା ସଂଗ୍ରାମର ସମୟ । ସେ ବେଳର କଥା ଆପଣଙ୍କ ସ୍ମୃତିରେ କେତେ ସୁରକ୍ଷିତ ?

ଉତ୍ତର – ୧୯୪୨ ଅଗଷ୍ଟ ''ଭାରତଛାଡ଼'' ଆନ୍ଦୋଳନ ବେଳକୁ ମୋର ବୟସ ମାତ୍ର ଚାରିବର୍ଷ । ମୋ ଭିଣୋଇ ଗୌରୀଶ୍ୟାମ ନାୟକ ସେତେବେଳେ ଏରସମା ଅଞ୍ଚଳର ଜଣେ ଲଢୁଆ କଂଗ୍ରେସ କର୍ମୀ । ସେ ଅଞ୍ଚଳର ପ୍ରତି ଗ୍ରାମରେ ଯୁବକ ସଂଘ ଗଠନ କରି ଶହ ଶହ ଯୁବକଙ୍କୁ ସ୍ୱାଧୀନତାର ମନ୍ତ୍ର ଦେଇ ସେ ଏକ ଲଢୁଆ ବାହିନୀ ଗଠନ କରିଥିଲେ । ଦିନେ ରାତିରେ ଶତାଧିକ ଯୁବକଙ୍କୁ ନେଇ ସେ ତିର୍ତ୍ତୋଲ ଠାରୁ ଅଳ୍ପ ଦୂରରେ ଥିବା ମଣିଷଙ୍ଗା ଡ଼ାକବଙ୍ଗଳାକୁ ନିଆଁ ଲଗାଇ ପୋଡ଼ି ଦେଲେ । ତାର ଦୁଇ ତିନିଦିନ ପରେ ପ୍ରାୟ ସାତ ଆଠଶହ ଯୁବକଙ୍କୁ ଏକତ୍ରିତ କରି ରାତି ଅଧରେ ଏରସମା ଥାନାରେ ଯାଇ ପହଞ୍ଚିଲେ ଓ ଥାନା ଅଧିକାରୀଙ୍କ ସହିତ ସମସ୍ତ ପୋଲିସ କର୍ମଚାରୀଙ୍କୁ ଗଛରେ ବାନ୍ଧି ଦେଇ ସେମାନଙ୍କର ପୋଷାକପତ୍ର ଥାନାର କାଗଜପତ୍ର ଓ ବନ୍ଧୁକ ଆଦି ଏକତ୍ରିତ କରି ନିଆଁଲଗାଇ ପୋଡ଼ିବା ସହିତ ଥାନା ଘରେ ନିଆଁ ଲଗାଇ ଜଳାଇଦେଲେ । ଫଳରେ ତାଙ୍କ ସହିତ ସେ ଅଞ୍ଚଳର ପାଞ୍ଚଶହ ଯୁବକଙ୍କୁ ଗିରଫ କରାଗଲା ଓ ତିର୍ତ୍ତୋଲ ଲକ୍‌ଠାରେ ଗୁର୍ଖା ପୋଲିସମାନେ ତାଙ୍କ ଛାତି ଉପରେ ଚଢ଼ି ବୁଟ୍‌ରେ ଗୋଇଠା ମାରିବା ଫଳରେ ସେ ରକ୍ତବାନ୍ତି କରି ସଂଜ୍ଞାହୀନ ହୋଇଗଲେ । ମୋ ବଡ଼ଭଉଣୀ ଓ ତିନିବର୍ଷର ଭଣଜାଙ୍କୁ ସବାରୀ

ପଠାଇ ଆମଘରକୁ ଆଣିବା ଦିନ ଆମ ଘରେ କାନ୍ଦବୋବାଳି ପଡ଼ିଲା । ସମସ୍ତେ ଖିଆପିଆ ଛାଡ଼ି କାନ୍ଦି କାନ୍ଦି ଦିନ କଟାଇଲେ । ମୋ ଭିଣୋଇଙ୍କ ବିରୁଦ୍ଧରେ କାର୍ଯ୍ୟରତ ପୋଲିସମାନଙ୍କୁ ଜୀବନରେ ମାରିଦେବାର ପ୍ରୟାସ ତଥା ସରକାରୀ ଡାକବଙ୍ଗଳା ଓ ଥାନାପୋଡ଼ି ଅଭିଯୋଗରେ ଫାଶୀଦଣ୍ଡ ହେବାର ଆଶଙ୍କା ଆମଘରେ ପ୍ରବଳ ଆତଙ୍କ ଖେଳାଇ ଦେଇଥିଲା । ପରିବାରର ସବୁଲୋକ ଅନେକ ଦିନ ଧରି ଦୁଃଖ ଓ ଭୟରେ ବିବ୍ରତ ହୋଇ ପଡ଼ିଥିଲେ । ପ୍ରତିଦିନ ସକାଳୁ ଉଠିଲେ ମୋ ବୋଉ, ଦୁଇଭଉଣୀ ଓ ମାଆ କାନ୍ଦିବା ଦେଖି ମୁଁ ଓ ମୋର ଭଣଜା ଦୁହେଁ କାନ୍ଦୁଥିଲୁ । ଆମ ଘରେ ଖାଇବା ପିଇବା ଠିକ୍ ନଥିଲା । ସେ ସମୟରେ କୋକୁଆଭୟ ମୋ ମନରେ ଏପର୍ଯ୍ୟନ୍ତ ଏକ ଜୀବନ୍ତ ସ୍ମୃତି ହୋଇ ରହିଛି ।

**ପ୍ରଶ୍ନ –** **ସ୍ୱାଧୀନତାର ଠିକ୍ ପରେ ପରେ ଆପଣ ସ୍କୁଲଶିକ୍ଷା ଓ ଉଚ୍ଚଶିକ୍ଷା ଲାଭ କରିଛନ୍ତି । ଆମର ଶିକ୍ଷାକ୍ଷେତ୍ରରେ ବେଶ୍ ଅଗ୍ରଗତି ହୋଇଛି ବୋଲି କୁହାଯାଉଛି । ତେବେ ସେଦିନର ଶିକ୍ଷା ଓ ଆଜିର ଶିକ୍ଷାକୁ ତୁଳନା କରି ଦେଖିଛନ୍ତି କି ?**

**ଉତ୍ତର –** ସେ ସମୟରେ ଉଚ୍ଚବିଦ୍ୟାଳୟ ବା ହାଇସ୍କୁଲ ସଂଖ୍ୟା ବହୁତ କମ୍ ଥିଲା । ମାତ୍ର ଖୁବ୍ ଜ୍ଞାନୀ ଲୋକମାନେ ଆମର ଶିକ୍ଷକଥିଲେ । ଆମେ ଷଷ୍ଠ ଶ୍ରେଣୀରେ ଇଂରାଜି ଆରମ୍ଭ କରିଥିଲୁଁ । ହେଲେ, ମାଟ୍ରିକ୍ ପାଠ୍ୟକ୍ରମରେ ଇଂରାଜିରେ ଦୁଇଶହ ନମ୍ବରର ପ୍ରଥମପତ୍ର ଓ ଦ୍ୱିତୀୟପତ୍ର ସହିତ ଓଡ଼ିଆ ଏବଂ ସଂସ୍କୃତରେ ମଧ୍ୟ ଦୁଇଟି ପତ୍ରପାଇଁ ଦୁଇଶହ ନମ୍ବର ପରୀକ୍ଷା କରାଯାଉଥିଲା । ଯେଉଁ ପ୍ରାତଃ ସ୍ମରଣୀୟ ଶିକ୍ଷକ ମାନେ ପାଠ ପଢ଼ାଉଥିଲେ ସେମାନଙ୍କ ପ୍ରତି ଛାତ୍ରଛାତ୍ରୀଙ୍କର ଅତୁଟ ଭକ୍ତି ଓ ଭୟଥିଲା । ସେମାନେ ମଧ୍ୟ ଅତ୍ୟନ୍ତ ଛାତ୍ରବତ୍ସଳ ଥିଲେ ଓ ପାଠ୍ୟ ବିଷୟରେ ସେମାନଙ୍କର ପ୍ରଗାଢ଼ ଜ୍ଞାନଥିଲା । ମାତ୍ର ୧୯୫୦ ମସିହା ଠାରୁ ୨୦୦୦ ମସିହା ଭିତରେ ଛତୁଫୁଟିଲା ପରି ଯେଉଁସବୁ ବିଦ୍ୟାଳୟମାନ ସୃଷ୍ଟି ହେଲା ତହିଁରେ ଗାଆଁଗଣ୍ଡାରେ ଥିବା ବେକାର ଯୁବକମାନେ ବହୁ ସଂଖ୍ୟାରେ ଶିକ୍ଷକ ଭାବେ ଚାକିରୀ ଆରମ୍ଭ କଲେ । ତନ୍ମଧ୍ୟରୁ ଅଧିକାଂଶ ଯୁବକ ଉତ୍ତମ ଛାତ୍ର ନଥିଲେ । ସେମାନେ ଶିକ୍ଷକ ଭାବେ ନିଯୁକ୍ତି ପାଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଆଦର୍ଶ ଶିକ୍ଷକ ହୋଇ ପାରି ନାହାନ୍ତି । ସେହିଭଳି ବିଭିନ୍ନ ଅଞ୍ଚଳରେ ନୂଆନୂଆ ମହାବିଦ୍ୟାଳୟମାନ ଖୋଲିଗଲା । ମାତ୍ର ଅଧ୍ୟାପକଭାବେ ନିଯୁକ୍ତି ପାଇଥିବା ଯୁବକମାନେ ବିଦ୍‌ବତ୍ତାର ଦକ୍ଷତା

ହାସଲ ନକରି ମଧ ନିଯୁକ୍ତି ପାଇଲେ । ମାତ୍ର ଆମ ସମୟର ଅଧ୍ୟାପକମାନେ ବିଶ୍ୱବିଦ୍ୟାଳୟରେ ଦକ୍ଷତା ହାସଲ କରି ସ୍ନାତକୋତର ଛାତ୍ର ଭାବେ ପ୍ରସିଦ୍ଧି ଲାଭ କରିଥିବା ହେତୁ ଦକ୍ଷ ଅଧ୍ୟାପକ ଭାବେ ନିଯୁକ୍ତି ପାଉଥିଲେ । ସେମାନେ ଛାତ୍ରମାନଙ୍କ ଦ୍ୱାରା ଆଦୃତ ହେଉଥିଲେ । ତେଣୁ ଆମ ସମୟରେ ଯୁବଗୋଷ୍ଠୀ ସମାଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିବା ଦେଖାଯାଏ । ଆମେ ସବୁ କଲେଜରେ ପଢୁଥିବା ସମୟରେ ବିଶ୍ୱବିଦ୍ୟାଳୟର ଛାତ୍ର ଛାତ୍ରୀମାନେ ସରକାରୀ କଲେଜରେ ଅଧ୍ୟାପକ ହେବାପାଇଁ ଲଳାୟିତ ଥିଲେ । ମାତ୍ର ଆଜିର କୃତୀଛାତ୍ରମାନେ ବ୍ୟବସାୟ ପରିଚାଳନା କ୍ଷେତ୍ରରେ ଦକ୍ଷତା ହାସଲ କରି କମ୍ପାନୀ ଚାକିରୀରେ ଉଚ୍ଚବେତନ ଭୋଗି କର୍ମଚାରୀ ଭାବେ ନିଯୁକ୍ତ ହେବାକୁ ଆଶାୟୀ । ତେଣୁ ଆଜିର ଶିକ୍ଷା ଅତିମାତ୍ରାରେ ବ୍ୟବସାୟାଭିମୁଖୀ ହୋଇଛି ।

**ପ୍ରଶ୍ନ –** **ଆମେରିକାରେ ଆପଣ ଦୁଗ୍ଧବିଜ୍ଞାନ ଓ ପଶୁଖାଦ୍ୟ ଉପରେ ସ୍ନାତକୋତର ଶିକ୍ଷା ଲାଭ କଲେ । ସେଠାରେ ଆପଣ ଡକ୍ଟରେଟ ହାସଲ କଲେ । ଏ ଦିଗପ୍ରତି ଆପଣ ଆକୃଷ୍ଟ ହେଲେ କାହିଁକି ? ଆପଣ ଏହି ଶିକ୍ଷାକୁ କେତେଦୂର କାର୍ଯ୍ୟକାରୀ କରିପାରିଥିଲେ ?**

ଉତ୍ତର – ୧୯୬୨ ମସିହାରେ ଭାରତ-ଚୀନ ଯୁଦ୍ଧ ହେଲା । ସେତିକିବେଳେ ସେତେବେଳେ ଦେଶର ବୈଦେଶିକ ମୁଦ୍ରାପାଣ୍ଠି ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଥାଏ । ବୈଦେଶିକ ମୁଦ୍ରା ମିଳିବା ଲାଗି ବିଦେଶ ଯାତ୍ରା କ୍ଷେତ୍ରରେ ଅନେକ ପ୍ରତିବନ୍ଧକ ଥାଏ । କେବଳ ବୈଷୟିକ ଦିଗରେ ଉଚ୍ଚଶିକ୍ଷା ପାଇଁ ବୈଦେଶିକ ବିଭାଗ ପକ୍ଷରୁ ଅନୁମତି ମିଳୁଥାଏ । ଭାରତବର୍ଷର ଶିକ୍ଷାନୁଷ୍ଠାନ ମାନଙ୍କରେ ଯେଉଁ ସବୁ ବୈଷୟିକ ଶିକ୍ଷାର ବ୍ୟବସ୍ଥା ଥିଲା ସେ ବିଷୟରେ ବିଦେଶ ଯିବାର ପ୍ରତିବନ୍ଧକ ଥାଏ । ପଶୁପାଳନ କ୍ଷେତ୍ରରେ କେବଳ ଦୁଗ୍ଧବିଜ୍ଞାନରେ ଉଚ୍ଚଶିକ୍ଷା ପାଇଁ ପ୍ରତିବନ୍ଧକ ନଥାଏ । ଯୋଗକୁ ଓଡ଼ିଶା ସରକାରଙ୍କ ଅଧୀନରେ ସେତେବେଳେ ଦୁଗ୍ଧଉତ୍ପାଦନ ବିଭାଗ ନଥିଲା । ତେଣୁ ସେହି ଅଭାବନୀୟ ବୈଷୟିକ ଶାଖାର ଉନ୍ନତି ଲାଗି ମୁଁ ସେହି ବିଜ୍ଞାନରେ ଉଚ୍ଚଶିକ୍ଷା ଲାଭ କରିବାକୁ ଚେଷ୍ଟା କଲି । ସେ ସମୟରେ ଓଡ଼ିଶାରେ ଦୁଧିଆଳି ଗାଈ କହିଲେ ଏକଲିଟର ବା ଦୁଇଟିଲିଟର ଦୁଗ୍ଧ ଉତ୍ପାଦନ କ୍ଷମତା ସମ୍ପନ୍ନ ଗାଈମାନଙ୍କୁ ବୁଝାଉଥାଏ । ଗୋଖାଦ୍ୟ କହିଲେ ତୋରାଣି ଓ ନଡ଼ା ବୋଲି ଲୋକ ବୁଝୁଥିଲେ । ତେଣୁ ଦେଶରେ ଗୋଖାଦ୍ୟ ବିଷୟରେ ଶିକ୍ଷା ପାଇଥିବା

ବିଶେଷଜ୍ଞମାନଙ୍କର ଘୋର ଅଭାବ ଥାଏ । ଓହିଓ ବିଶ୍ୱବିଦ୍ୟାଳୟର ଦୁଗ୍ଧବିଜ୍ଞାନ ବିଭାଗର ମୁଖ୍ୟ ପୃଥିବୀ ବିଖ୍ୟାତ ବୈଜ୍ଞାନିକ ନିଲ୍ ଭାଣ୍ଡେମାର୍କ ମୋତେ ତାଙ୍କର ଛାତ୍ରଭାବେ ଗ୍ରହଣ କଲେ । ତାଙ୍କଠାରୁ ଚିଠି ପାଇ ମୁଁ ଖୁବ୍ ଉତ୍ସାହିତ ହେଲି । ଜଣେ ବିଶ୍ୱବିଖ୍ୟାତ  ବୈଜ୍ଞାନିକଙ୍କ ଅଧୀନରେ ଉଚ୍ଚଶିକ୍ଷା ଲାଭ କରିବାର ଉତ୍କଣ୍ଠା ଜନ୍ମିଲା । ଓହିଓ ବିଶ୍ୱବିଦ୍ୟାଳୟରେ ପୂରା ଛାତ୍ରବୃତ୍ତି ନମିଳିବାରୁ  ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟରୁ  ସହକାରୀ ଗବେଷକ ନିଯୁକ୍ତି ପାଇ ସେଠାରେ ପଢ଼ିବାକୁ ଚାଲିଗଲି ଓ ସେଠାରେ ଶିକ୍ଷା ସମାପ୍ତ କରି ସମାବର୍ତ୍ତନ ଉତ୍ସବରେ ପିଏଚ୍‌ଡ଼ି ଡିଗ୍ରୀ ପାଇବା ପୂର୍ବରୁ ଓଡ଼ିଶାକୁ ଫେରିଆସିଲି । ଏଠାକୁ ଫେରି ଶିକ୍ଷାଗତ ଜ୍ଞାନ ଓ ଗବେଷଣା ଲବ୍ଧ ଅଭିଜ୍ଞତାକୁ ଯେପରି ଭାବରେ କାର୍ଯ୍ୟରେ ଲଗାଇଲି ତାର ବିସ୍ତୃତ ବିବରଣୀ ପରବର୍ତ୍ତୀ ପ୍ରଶ୍ନୋତ୍ତରରେ ଦିଆଯାଇଛି ।

**ପ୍ରଶ୍ନ –** ଶିକ୍ଷାର ବୃତିଗତ ଦିଗପ୍ରତି  ଆପଣ କେତେଦୂର ଆସ୍ଥାଶୀଳ ?

**ଉତ୍ତର –** ମୁଁ  କେବଳ ଅସ୍ଥାଶୀଳ ନୁହେଁ, ମୋ ଉଚ୍ଚଶିକ୍ଷାର ପୂର୍ଣ୍ଣ ବିନିଯୋଗ କରି ଓଡ଼ିଶାର ଶ୍ୱେତବିପ୍ଲବକୁ ଆଗେଇ ନେବାରେ ପ୍ରାରମ୍ଭିକ କାର୍ଯ୍ୟ ମୁଁ କରିପାରିଥିଲି । ମୃତପ୍ରାୟ କଟକ ଦୁଗ୍ଧ ଯୋଗାଣ ସଂସ୍ଥାକୁ କାର୍ଯ୍ୟକ୍ଷମ କରିବା ଫଳରେ ସତୁରୀ ଦଶକରେ କଟକ-ଭୁବନେଶ୍ୱର ଦୁଗ୍ଧଯୋଗାଣ କାର୍ଯ୍ୟକ୍ରମ ଅଗ୍ରଗତି କରିଥିଲା ।  ସରକାରୀ ଉଦ୍ୟମରେ ସୁବାସିତ ଦୁଗ୍ଧ, ଲସି, ଦହି, ମିଠାଦହି, ଛେନା, ପନୀର୍, ଘିଅ ତିଆରି କରି କଟକ ଓ ଭୁବନେଶ୍ୱର ସହରାଞ୍ଚଳ ତଥା ନନ୍ଦନ କାନନ ଏବଂ ଓଡ଼ିଶା ସଚିବାଳୟରେ ବିକ୍ରୀ କରିବାକୁ "ମିଲ୍କବାର୍" ବସାଇବାରେ  ସଫଳକାମ ହୋଇଥିଲି । ଓଡ଼ିଶାର ଛଅଟି ଜିଲାରେ ଦୁଗ୍ଧ ଶୀତଳୀକରଣ ଯନ୍ତ୍ର ବସାଯାଇ ଜିଲା ସଦର ମହକୁମାରେ ଦୁଗ୍ଧ ବିକ୍ରୟ ଆରମ୍ଭ କରିବା  ସହିତ ଉନ୍ନତ ଜର୍ସିବାଛୁରୀ ଓ ଦୁଧିଆଳି ଗାଈଙ୍କ ପାଇଁ ଗୋଖାଦ୍ୟ ପ୍ରସ୍ତୁତି ପାଇଁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅଠେଇଶଟି  ଗୋଖାଦ୍ୟ ଓ କୁକୁଡ଼ା ଖାଦ୍ୟ  କାରଖାନା  ବସାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲି । ଏହି କାରଖାନାଗୁଡ଼ିକର କର୍ତ୍ତାମାନେ ଶସ୍ତାରେ କିପରି ଉପାଦେୟ ଗୋଖାଦ୍ୟ ଓ କୁକୁଡ଼ା ଖାଦ୍ୟ ତିଆରି ହୋଇପାରିବ ସେ ବିଷୟରେ ମୋଠାରୁ ଉପଦେଶ ନେବା ସଙ୍ଗେ ସଙ୍ଗେ ମୋ ଦ୍ୱାରା ଲିଖିତ ବୈଷୟିକ ପୁସ୍ତକ ପଢ଼ି ମିଶ୍ରିତ ଖାଦ୍ୟ ପ୍ରସ୍ତୁତ କରୁଥିଲେ । ସବୁଠାରୁ ବଡ଼ କଥା ହେଉଛି, ୧୯୭୭ ମସିହାରୁ ୧୯୯୦ ମସିହା ପର୍ଯ୍ୟନ୍ତ  ଭାରତ ସରକାରଙ୍କଠାରୁ କୋଟି କୋଟି ଟଙ୍କା

ସାହାଯ୍ୟ ଆଣି ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଦରିଦ୍ର ଲୋକଙ୍କ ଘରେ ଜର୍ସି ମାଇବାଛୁରୀ ଜନ୍ମ ହେବାମାତ୍ରେ ସେମାନଙ୍କୁ ମିଶ୍ରିତ ଗୋଖାଦ୍ୟ ଖୁଆଇ ଗର୍ଭବତୀ କରାଇ ଦୁଗ୍ଧ ଉତ୍ପାଦନ ଆରମ୍ଭ କରିବା ପର୍ଯ୍ୟନ୍ତ ସରକାରୀ ଖାଦ୍ୟ ଯୋଗାଇ ଓଡ଼ିଶାରେ ଲକ୍ଷ ଲକ୍ଷ ଅଧିକ ଉତ୍ପାଦନକ୍ଷମ ଗୋସମ୍ପଦ ସୃଷ୍ଟି କରିବାରେ ମୁଖ୍ୟଭୂମିକା ଗ୍ରହଣ କିରିଥିଲି । ସର୍ବୋପରି "ଓମ୍‌ଫେଡ଼" ସୃଷ୍ଟି ହେବା ପୂର୍ବବର୍ତ୍ତୀ କାର୍ଯ୍ୟକ୍ରମ ଗୁଡ଼ିକରେ ମଧ ମୋର ସହଯୋଗ ଥିଲା । ସର୍ବଭାରତୀୟ ସ୍ତରରେ ଏହି ଯୋଜନା କାର୍ଯ୍ୟକ୍ଷମ କରିବାରେ ଓଡ଼ିଶାପ୍ରଦେଶ ଚତୁର୍ଥ ସ୍ଥାନ ଅଧିକାର କରିଥିଲା । ୧୯୮୪ ମସିହାରେ ଓଡ଼ିଶାରେ କୁକୁଡ଼ା ପାଳନ କାର୍ଯ୍ୟକ୍ରମକୁ ତ୍ୱରନ୍ୱିତ କରିବାକୁ " ଓପୋଲ୍‌ଫେଡ" ସୃଷ୍ଟିକରି ତାର ପ୍ରଥମ ପରିଚାଳନା ନିର୍ଦ୍ଦେଶକ ଭାବେ ଏକ ଅସ୍ଥାୟୀ ସଂସ୍ଥାକୁ କାର୍ଯ୍ୟକ୍ଷମ କରିପାରିଥିଲି । ନିର୍ଦ୍ଦେଶକ ପଦବୀରେ ରହିବା ପରେ ଭାରତ ସରକାରଙ୍କଠାରୁ ଏଗାର କୋଟି ଟଙ୍କା ଆଣି କୋରାପୁଟ, ଜୟପୁର, ନବରଙ୍ଗପୁର, ରାୟଗଡ଼ା, ଭବାନୀପାଟଣା, ନୂଆପଡ଼ା, ବଲାଙ୍ଗୀର, ସୁବର୍ଣ୍ଣପୁର, ଭଦ୍ରକ, ବାଲେଶ୍ୱର, ମୟୁରଭଞ୍ଜ ଆଦି ଜିଲାରେ ଜିଲାଦୁଗ୍ଧ ଉତ୍ପାଦକ ସଂଘ ଗଠନ କରି ଦୁଗ୍ଧକାରଖାନା ବସାଇ ସହରାଞ୍ଚଳରେ ଦୁଗ୍ଧ ତଥା ଦୁଗ୍ଧଜାତ ଦ୍ରବ୍ୟର ବିକ୍ରୟ ବ୍ୟବସ୍ଥା କରିପାରିଥିଲି । ତେଣୁ ଯୁକ୍ତରାଷ୍ଟ୍ର ଆମେରିକାରେ ମୋର ଉଚ୍ଚଶିକ୍ଷା ଲାଭ କରିବା ବେଶ୍ ସମୟୋପଯୋଗୀ ମନେ ହୁଏ । ମାତୃଭୂମି ଓଡ଼ିଶାର ସେବାରେ ଏହାର ପୂର୍ଣ୍ଣ ବିନିଯୋଗ ହୋଇ ପାରିଛି ବୋଲି ମୁଁ ମନେକରେ ।

ପ୍ରଶ୍ନ – ଆମେରିକାରେ ଉଚ୍ଚଶିକ୍ଷା ଲାଭକରି ମଧ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରି ଓଡ଼ିଶାକୁ ଆପଣ କର୍ମକ୍ଷେତ୍ର ରୂପେ ଗ୍ରହଣ କଲେ । ବିଦେଶକୁ ଆପଣ କର୍ମକ୍ଷେତ୍ର ନକରି ଏ ନିଷ୍ପତ୍ତି କାହିଁକି ନେଲେ ?

ଉତ୍ତର – ଯୁକ୍ତରାଷ୍ଟ୍ର ଆମେରିକାର ସାଉଥ ଡ଼ାକୋଟା ବିଶ୍ୱବିଦ୍ୟାଳୟରେ ଡକ୍ଟରେଟ୍ ପାଇଁ ଗବେଷଣା କରୁଥିଲାବେଳେ ମୋର ଅନେକ ଗବେଷଣାତ୍ମକ ପ୍ରବନ୍ଧ ଆମେରିକାର ବିଜ୍ଞାନ ପତ୍ରିକାମାନଙ୍କରେ ପ୍ରକାଶ ପାଇଲା । ତେଣୁ ସେ ଦେଶର " ସିଗ୍‌ମା ଜାଇ" ସଂସ୍ଥା ପକ୍ଷରୁ ତଥା କୃଷିଗବେଷଣା ସଂସ୍ଥା "ଗାମା ସିଗ୍‌ମା ଡ଼େଲ୍‌ଟା" ପକ୍ଷରୁ ମୋତେ ସମ୍ମାନ ମିଳିଲା । ସେହି ସଭାରେ ସାଉଥ୍ ଡ଼ାକୋଟା ଶାଖାର ମୁଖ୍ୟ ବୈଜ୍ଞାନିକ କହିଲେ, ଡକ୍ଟର ମହାନ୍ତିଙ୍କ ପରି ବୈଜ୍ଞାନିକ ମାନଙ୍କୁ ଏ ଦେଶରେ ଯଥେଷ୍ଟ ସୁବିଧା ସୁଯୋଗ ମିଳିବ । ମାତ୍ର ତାଙ୍କଠାରୁ ନ୍ୟୁନ ଧରଣର ବିଶେଷଜ୍ଞମାନଙ୍କୁ ଆମେ

ଉପଦେଷ୍ଟା ଭାବରେ ଭାରତପରି ବିକାଶଶୀଳ ଦେଶମାନଙ୍କୁ ପଠାଉଛୁ । ସେମାନେ ସେ ଦେଶର ଲୋକମାନଙ୍କର ଆବଶ୍ୟକତା, ଭାଷା, ସଂସ୍କୃତି ବା ସୁବିଧା ଅସୁବିଧା ବିଷୟରେ କିଛି ନ ବୁଝି ଉପଦେଶ ଦେଉଛନ୍ତି । ସେଇ କଥା କେଇପଦ ମୋ ମନରେ ଭାବାନ୍ତର ସୃଷ୍ଟି କଲା। ନ୍ୟୁୟର୍କର ଏକ ପଶୁଖାଦ୍ୟ ପ୍ରସ୍ତୁତକାରୀ କମ୍ପାନୀରୁ ଚାକିରୀପାଇବା ପରେ ମୁଁ ତାହା ପ୍ରତ୍ୟାଖ୍ୟାନ କରି ମୋ ମାତୃଭୂମି ଓଡ଼ିଶାକୁ ଫେରି ଆସିଲି । ସେଠାରେ କାମ କରିଥିଲେ ହୁଏତ ମୁଁ ଖୁବ୍ କମ୍ ବୟସରେ କୋଟି କୋଟି ଟଙ୍କା ଉପାର୍ଜନ କରିପାରିଥାନ୍ତି । ମାତ୍ର ଜନ୍ମଭୂମିର ଆକର୍ଷଣ ମୋତେ ଓଡ଼ିଶାକୁ ଟାଣି ଆଣିଲା । ଘରକୁ ଫେରି ମୁଁ କେନ୍ଦ୍ର ସରକାର ତଥା ଉତ୍ତର ଭାରତର କେତେକ କୃଷି ବୈଷୟିକ ବିଶ୍ୱବିଦ୍ୟାଳୟରେ ଚାକିରୀ ଯୋଗାଡ଼ କରିଥିଲି । ମାତ୍ର ଦିଲ୍ଲୀରେ ଆକାଶବାଣୀର ଅନୁବାଦକଭାବେ କାର୍ଯ୍ୟ କରୁଥିବା (ଶ୍ରୀ ସାମଲ) ଜଣେ ଓଡ଼ିଆଲୋକ ମୋତେ କହିଲେ ଅବଶ୍ୟ ଦିଲ୍ଲୀରେ ଥିବା ଓଡ଼ିଆମାନଙ୍କ ଭିତରୁ କେନ୍ଦ୍ର ସରକାରଙ୍କର ଜଣେ ପ୍ରଥମଶ୍ରେଣୀ ଅଫିସର ଭାବେ ଆପଣ ଗୌରବାନ୍ୱିତ ମନେ କରିବେ ମାତ୍ର ଆପଣଙ୍କ ପରି ଲୋକମାନେ ଓଡ଼ିଶା ପାଇଁ କିଛି କରିବାକୁ ଇଚ୍ଛାକଲେ ସେଇଠି କାର୍ଯ୍ୟ କରିବା ଉଚିତ । ମୁଁ କହିଲି, ଓଡ଼ିଶାରେ ଯାହା ଦରମା ମିଳିବ ତାହା ଦିଲ୍ଲୀ ତୁଳନାରେ ବହୁତ କମ୍ । ସାମଲବାବୁ କହିଲେ ଆଜ୍ଞା ''ପାଖବାଲି ଦୂର ମଟାଳ'' । ଘରପାଖରେ ବାଲିଆ ଜମି ଖଣ୍ଡେ ଥିଲେ ଆପଣଙ୍କର ଯେତେ ଆମଦାନୀ ଦବ, ଦୂରବାଟରେ ଉର୍ବର ଜମିରୁ ଆପଣ ସେତିକି ପାଇବା କଷ୍ଟକର । କଥାଟା ମୋ ମନକୁ ପାଇଗଲା । ମୁଁ ଆସି ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟରେ ରିସର୍ଚ୍ଚ ଅଫିସର ଭାବେ କାର୍ଯ୍ୟ ଆରମ୍ଭ କଲି । ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟରେ ଅଧ୍ୟାପନା ଓ ଗବେଷଣା କାର୍ଯ୍ୟ ତିନିବର୍ଷ ପର୍ଯ୍ୟନ୍ତ କରି ପଶୁପାଳନ ବିଭାଗର ସହକାରୀ ନିର୍ଦ୍ଦେଶକ ଭାବେ ଯୋଗଦେଲି ।

**ପ୍ରଶ୍ନ – ବୃତ୍ତିଗତ ଜୀବନ ସହ ପଶୁଚିକିତ୍ସା ଓ ପଶୁପାଳନକୁ ଲୋକପ୍ରିୟ କରିବା ପାଇଁ ଆପଣ ଲେଖନୀ ଚାଳନା କରିଛନ୍ତି । ଏହାଦ୍ୱାରା କି ଅଭାବ ପୂରଣ ହୋଇଛି ବୋଲି ଆପଣଙ୍କର ମତ ?**

ଉତ୍ତର – ଯୁକ୍ତରାଷ୍ଟ୍ର ଆମେରିକାରୁ ଫେରି ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟରେ ପଢ଼ାଇଲା ବେଳେ ଦେଖିଲି ଯେ, ଛାତ୍ରମାନେ ବିଦେଶୀ ଗବେଷକ ମାନଙ୍କ

ବହି ପଢୁଛନ୍ତି । ବିଦେଶର ଗାଈଗୋରୁମାନେ ଅଧିକ ଉତ୍ପାଦନକ୍ଷମ । ସେଠାକାର ଜଳବାୟୁ ମଧ୍ୟ ଆମଠାରୁ ସମ୍ପୂର୍ଣ୍ଣ ଅଲଗା । ସେଠାରେ ନଡ଼ା, ପାଳ, କୁଣ୍ଡା ବା ତୋରାଣିକୁ ଗୋଖାଦ୍ୟ ଭାବେ ବ୍ୟବହାର କରାଯାଏନା, ଆମେରିକା ଲୋକେ ଛେଳି ପାଳନ୍ତିନାହିଁ । ୟୁରୋପରେ କେବେଳ ଦୁଗ୍ଧ ଉତ୍ପାଦନ ପାଇଁ ଛେଳି ରଖାଯାଏ । ସେଠି ଛେଳିମାଂସର ଆଦର ନାହିଁ । ତେଣୁ ଆମ ପଶୁଚିକିତ୍ସାବିତ୍‌ମାନେ ବିଦେଶୀ ଗୃହପାଳିତ ପଶୁମାନଙ୍କ ବିଷୟରେ ପାଠପଢ଼ି ଆମର ଗରିବ ଚାଷୀମାନଙ୍କୁ ସେହି ଧାରାରେ ଉପଦେଶ ଦିଅନ୍ତି । ତେଣୁ ମୁଁ ପଶୁପାଳନ ବିଜ୍ଞାନରେ କେତେକ ପୁସ୍ତକ ଲେଖିବାକୁ ଭାବିଲି । ମୋର କେତେଜଣ ବନ୍ଧୁ କହିଲେ, ଯାହା ଲେଖୁଛ ଇଂରାଜିରେ ଲେଖ । ତାହେଲେ ଭାରତବର୍ଷର ଅନ୍ୟ ପ୍ରଦେଶମାନଙ୍କରେ ସେସବୁ ପୁସ୍ତକର ଉପଯୋଗ ହୋଇପାରିବ । ମାତ୍ର ମୁଁ ଓଡ଼ିଶାର ଦରିଦ୍ର ଚାଷୀମାନଙ୍କ କଥା ଚିନ୍ତାକଲି । ଓଡ଼ିଆ ଭାଷାରେ ବୈଷୟିକ ପୁସ୍ତକମାନ ଲେଖିଲେ ପ୍ରତି ପଶୁସହାୟକ କେନ୍ଦ୍ରରେ ଥିବା ପଶୁଧନ ନିରୀକ୍ଷକ ବା ଏଲ.ଆଇ ମାନେ ମଧ୍ୟ ମୋ ବହି ପଢ଼ି ଚାଷୀକୁ ଉପଦେଶ ଦେଇପାରିବେ । ବହୁ ଶିକ୍ଷିତ ଯୁବକ ମଧ୍ୟ ପଶୁପାଳନକୁ ନିଜର ଉପାର୍ଜନ ପନ୍ଥାଭାବେ ଗ୍ରହଣ କଲେ ମୋ ବହି ପଢ଼ି ଲାଭପାଇ ପାରିବେ । ତେଣୁ ଓଡ଼ିଆଭାଷାରେ ମୋର ବୈଷୟିକ ପୁସ୍ତକଗୁଡ଼ିକ ଲେଖିଲି । ଏହାଦ୍ୱାରା ଓଡ଼ିଶାର ଲକ୍ଷାଧିକ ଲୋକ ନିଶ୍ଚିତଭାବେ ଉପକୃତ ହୋଇପାରିଛନ୍ତି ।

ପ୍ରଶ୍ନ – **ବିଜ୍ଞାନ ରଚନା ଓ ମୌଳିକ ସାହିତ୍ୟ ଦୁଇଟି ଭିନ୍ନ ଦିଗନ୍ତ । ଏ ଦୁଇଟି କ୍ଷେତ୍ରରେ ଆପଣଙ୍କ ପ୍ରବେଶ ସେପରି କିଛି ଅସୁବିଧା ସୃଷ୍ଟି କରିଥିଲା କି ?**

ଉତ୍ତର – ଓଡ଼ିଆ ସାହିତ୍ୟରେ ଜ୍ଞାନ ଥିବା ଲୋକହିଁ ମୌଳିକ ସାହିତ୍ୟ ସୃଷ୍ଟିପାଇଁ ସମର୍ଥ । ମାତ୍ର ବିଜ୍ଞାନ ରଚନା ଏହାଠାରୁ ଭିନ୍ନ । ବୈଜ୍ଞାନିକ ଶବ୍ଦାବଳୀ ଓଡ଼ିଆଭାଷାରେ ଅନୁବାଦ କରିବା ଅତ୍ୟନ୍ତ କଷ୍ଟସାଧ୍ୟ । ଜଣେ ଓଡ଼ିଆଲୋକ ବୁଝିଲାପରି ସରଳ ସାବଲୀଳ ଭାଷାରେ ବିଜ୍ଞାନକୁ ନ ଲେଖିଲେ ବୈଷୟିକ ପୁସ୍ତକ ଆଦୌ ଗ୍ରହଣଯୋଗ୍ୟ ହେବ୍‌ନାହିଁ । ତେଣୁ ମୁଁ ଯେଉଁସବୁ ବୈଷୟିକ ପୁସ୍ତକ ରଚନା କଲି ସେ ସବୁ ପଶୁପାଳନ କ୍ଷେତ୍ରରେ ପ୍ରଥମ ଓଡ଼ିଆ ବହି । ସେ ବିଷୟରେ ପ୍ରତିଟି ଇଂରାଜି ବୈଷୟିକ ଶବ୍ଦପାଇଁ ଓଡ଼ିଆ ପ୍ରତିଶବ୍ଦ ସୃଷ୍ଟି କରିବା ମୋ ପକ୍ଷରେ ସମୟସାଧ୍ୟ ହୋଇ ପଡ଼ିଥିଲା । ଜଣେ ସାଧାରଣ ଓଡ଼ିଆଲୋକ

ପକ୍ଷରେ ଗ୍ରହଣ ଯୋଗ୍ୟ ଏବଂ ପଠନୋପଯୋଗୀ ବୈଷୟିକ ପୁସ୍ତକ ରଚନା କରିବାରେ ସତୁରୀଦଶକର ପ୍ରାରମ୍ଭରେ ମୋତେ ଯଥେଷ୍ଟ ପରିଶ୍ରମ କରିବାକୁ ପଡ଼ିଥିଲା ।

**ପ୍ରଶ୍ନ –** **ଭ୍ରମଣ ସାହିତ୍ୟ "ପାତାଳପୁରୀର ହାଲଚାଲ" ପାଇଁ ଆପଣ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଥିଲେ । ଓଡ଼ିଶାରେ ଭ୍ରମଣ ସାହିତ୍ୟର ସ୍ଥିତି ସଂପର୍କରେ ଆପଣ କି ଧାରଣା ପୋଷଣ କରନ୍ତି ?**

ଉତ୍ତର – ସାଧାରଣତଃ ଓଡ଼ିଆ ଲୋକେ ଭ୍ରମଣପ୍ରିୟ ନୁହନ୍ତି । ଭିଟାମାଟି ଛାଡ଼ି ବାହାରକୁ ବୁଲିବାପାଇଁ ଯିବା ଲୋକଙ୍କ ସଂଖ୍ୟ ମଧ ଓଡ଼ିଶାରେ କମ୍ । ୧୯୫୦ ମସିହା ପୂର୍ବରୁ ଓଡ଼ିଆଭାଷାରେ ଭ୍ରମଣକାହାଣୀ ଲେଖାଯିବାର ଖୁବ୍ କମ୍ ଦୃଷ୍ଟାନ୍ତ ଥିଲା । ତେଣୁ ୧୯୮୫ ମସିହା ପର୍ଯ୍ୟନ୍ତ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ "ଭ୍ରମଣକାହାଣୀ" ଉପରେ ପୁରସ୍କାର ଦିଆଯାଉନଥିଲା । ପ୍ରଥମକରି "ପାତାଳପୁରୀର ହାଲଚାଲ୍" ପୁସ୍ତକ ୧୯୯୦ ମସିହାରେ ଏହି ପୁରସ୍କାର ପାଇବାର ଗୌରବ ଅର୍ଜନ କରିଛି । ତେବେ ଏହା ପୂର୍ବରୁ ଅଧ୍ୟାପକ କୁଞ୍ଜବିହାରୀ ଦାଶ, ଶ୍ରୀହର୍ଷ ମିଶ୍ର, ଗୋଲକବିହାରୀ ଧଳ, ଶ୍ରୀରାମ ଦାଶ, ମନୋଜ ଦାସ, ଚିତ୍ତରଞ୍ଜନ ଦାସ, ବାରିଷ୍ଟର ଗୋବିନ୍ଦ ଦାସ ଆଦି ଲେଖକମାନେ ଓଡ଼ିଆ ଭାଷାରେ ଭ୍ରମଣ କାହାଣୀ ଲେଖିବାର ଗୌରବ ଅର୍ଜନ କରିଛନ୍ତି । ତେବେ ସେମାନେ ଜିମ୍ କର୍‌ବେଟ ବା ପଲ୍‌ବ୍ରୁଣ୍ଟନଙ୍କ ପରି ପେଶାଦାର ଭ୍ରମଣକାହାଣୀ ଲେଖକ ନୁହନ୍ତି । ବୈଦେଶିକ ଭ୍ରମଣକାହାଣୀ ଲେଖକମାନେ କେବଳ ଭ୍ରମଣ ଉଦ୍ଦେଶ୍ୟରେ ବିଭିନ୍ନ ଦେଶକୁ ଯାଇ ଲକ୍ଷାଧିକ ଡଲାର୍ ଖର୍ଚ୍ଚ କରି ସେଠାରେ ଦୀର୍ଘ ସମୟ ଅତିବାହିତ କରି ଭ୍ରମଣ ଉପଯୋଗୀ ସମସ୍ତ ସ୍ଥାନ ବୁଲିବୁଲି ନୂତନ ତଥ୍ୟ ମାନ ସଂଗ୍ରହ କରିବା ପରେ ଉପାଦେୟ ଭ୍ରମଣକାହାଣୀମାନ ଲେଖନ୍ତି । ସେସବୁ ପୁସ୍ତକ ଛପାଇବାକୁ ବିଶ୍ୱବିଖ୍ୟାତ ପ୍ରକାଶନ ସଂସ୍ଥାମାନେ ଆଗେଇ ଆସନ୍ତି ଏବଂ ପୁସ୍ତକଗଡ଼ିକର ବିକ୍ରୀଲବ୍ଧ ଧନରୁ ଲେଖକମାନେ ମଧ ବେଶ ଲାଭବାନ୍ ହୋଇଥାନ୍ତି ।ମାତ୍ର ଓଡ଼ିଶାର ଭ୍ରମଣ କାହାଣୀ ଲେଖକ ମାନଙ୍କପାଇଁ ଏ ପ୍ରକାର ସୁବିଧାସୁଯୋଗ ନାହିଁ । ତଥାପି ସୀମିତ ସମୟ ମଧରେ କୁଆଡ଼େ ମାସାଧିକ କାଳ ବୁଲିଗଲାବେଳେ ନୂତନ ସ୍ଥାନ ସମ୍ପର୍କରେ ଚିତ୍ତାକର୍ଷକ ତଥ୍ୟ ମାନ ଲେଖିବାକୁ ମନହୁଏ । ଓଡ଼ିଶାର ବହୁ ଭ୍ରମଣକାହାଣୀ ଲେଖକ ପ୍ରତିଦିନର ଡାଏରୀ ଲେଖିବାପରି ମଧ ସେମାନଙ୍କର ତଥ୍ୟାବଳି ଉପସ୍ଥାପିତ କରିବାର

ଦେଖାଯାଏ । ତେଣୁ କୌଣସି ପରିସ୍ଥିତିରେ ଜଣେ ବିଦେଶକୁ ଗଲାବେଳେ ଭ୍ରମଣର ମୌଳିକ ଉଦ୍ଦେଶ୍ୟ ଭିନ୍ନଥାଇ ଡାଏରୀ ଲେଖିବାପରି ବିଦେଶଭୂମିର ତଥ୍ୟାବଳି ଉପସ୍ଥାପନ କରିବାଟା ମୌଳିକ ଭ୍ରମଣ କାହାଣୀର ମାନ୍ୟତା ପାଇପାରେନା । ମାତ୍ର ବିଦେଶରେ ବର୍ଷ ବର୍ଷ ଅତିବାହିତ କରିବା ପରେ ସେଠାକାର ସାମାଜିକ ଜୀବନର ବିଭିନ୍ନ ଦିଗ ଉପରେ ବିଶ୍ଳେଷଣାତ୍ମକ ଲେଖା ତଥା ଦର୍ଶନୀୟ ସ୍ଥାନମାନଙ୍କ ବିଷୟରେ ଚିତ୍ତାକର୍ଷକ ଉପସ୍ଥାପନା ସବୁ ଭ୍ରମଣ କାହାଣୀ ପଦବାଚ୍ୟ ହୋଇଥାଏ । ସେଥିଲାଗି ଓଡ଼ିଆଭାଷାରେ ଲିଖିତ ଭ୍ରମଣକାହାଣୀ ସବୁ ଏପର୍ଯ୍ୟନ୍ତ ଆନ୍ତର୍ଜାତିକ ମାନ୍ୟତାର ଅଧିକାରୀ ହୋଇପାରିନାହିଁ ।

**ପ୍ରଶ୍ନ –** **ଭ୍ରମଣ ସାହିତ୍ୟ, ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ରଚନା କରଛନ୍ତି ଆପଣ, କେଉଁ ବିଷୟରେ ଆପଣ ଅଧିକ ଶକ୍ତିଶାଳୀ ?**

ଉତ୍ତର – ଏ ପ୍ରଶ୍ନ ମୋ ପାଇଁ ପ୍ରଯୁଜ୍ୟ ନୁହେଁ । ମୋ ରଚିତ ପୁସ୍ତକଗୁଡ଼ିକର ପାଠକମାନେ ହିଁ ଏହାର ଉତ୍ତର ଦେଇପାରିବେ ।

**ପ୍ରଶ୍ନ –** **ମୌଳିକ ରଚନାର କେଉଁ ଦିଗକୁ ଆପଣ ଅଧିକ ଗୁରୁତ୍ୱ ଦିଅନ୍ତି ?**

ଉତ୍ତର – ବୈଷୟିକ ପୁସ୍ତକଗୁଡ଼ିକର ରଚନା ବ୍ୟତୀତ ଅନେକ କ୍ଷୁଦ୍ରଗଳ୍ପ ଲେଖିଲି । ପ୍ରଚଳିତ ସମାଜରେ କେତେକ ଘଟଣାବଳି ପ୍ରତି ମନରେ ବିଦ୍ରୋହାତ୍ମକ ଚିନ୍ତାଧାରାକୁ ମୁଁ ଗଳ୍ପରୂପ ଦେଇଛି । ଗୃହପାଳିତ ଜୀବମାନଙ୍କ ପ୍ରତି ହିଂସାଆଚରଣ, ମନ୍ଦିରମାନଙ୍କରେ ପଶୁବଳି, ନରବଳି, ମହାବିଦ୍ୟାଳୟ ମାନଙ୍କରେ ର୍ୟାଗିଂ ତଥା ଅନ୍ୟାୟ ଆନିତୀ ବିରୁଦ୍ଧାରେ ମୁଁ ଗଳ୍ପ ଲେଖିଛି । ଆମ ଲୋକଙ୍କର ଧାର୍ମିକ ଅନ୍ଧବିଶ୍ୱାସ ବିରୁଦ୍ଧରେ ମଧ ମୋର ଅନେକ ଗଳ୍ପ ରହିଛି । ବିଶେଷତଃ ଓଡ଼ିଶାରେ ଥିବା ବହୁ ଅଣହିନ୍ଦୁ ଲୋକ ଜଗନ୍ନାଥ ପୂଜାବିଧି ପ୍ରତି କୌତୁହଳୀହୋଇ ଆମ ବଡ଼ଦେଉଳ ଭିତରେ ହିନ୍ଦୁ ବୋଲି ପରିଚୟ ଦେଇ ପ୍ରବେଶ କରିବା ସତ୍ତ୍ୱେ ଶ୍ୱେତାଙ୍ଗ ନୈଷ୍ଠିକ ହିନ୍ଦୁ ସନ୍ୟାସୀ ମାନଙ୍କୁ ବିଧର୍ମୀ କହି ଜଗନ୍ନାଥ ଦର୍ଶନର ସୁଯୋଗ ନଦେବା ବିରୁଦ୍ଧରେ ମଧ ମୁଁ ଲେଖନୀ ଚାଳନା କରିଛି । ମୋର ଦୁଇଟି ଉପନ୍ୟାସ ବୈଷ୍ଣବୀୟ ଚିନ୍ତାଧାରା ଉପରେ ଆଧାରିତ । ସବୁଗୁଡ଼ିକ ଲେଖା ମୋର ନିଜସ୍ୱ ଶୈଳୀରେ ସୃଷ୍ଟ । ବଙ୍ଗଳା, ହିନ୍ଦି, ବା ଇଂରାଜୀ ଲେଖକମାନଙ୍କ ରଚନା ଶୈଳୀର କୌଣସି ପ୍ରଭାବ ମୋ ଲେଖା ଉପରେ ପଡ଼ିନାହିଁ । ଦୀର୍ଘ ତିରିଶ ବର୍ଷର

ସରକାରୀ ଚାକିରୀର ତିକ୍ତ ଅନୁଭୂତିଗୁଡ଼ିକ ଉପରେ ମୋର "ଦୁଃଖ କହିବି କି ସୁଖ କହିବି" ପୁସ୍ତକଟି ଆଧାରିତ । ଓଡ଼ିଆଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ସହିତ ବିଚ୍ଛିନ୍ନାଞ୍ଚଳରେ ଥିବା ଓଡ଼ିଆମାନଙ୍କ ସମ୍ପର୍କରେ ବିଗତ ଏକ ଦଶନ୍ଧି ଧରି ପ୍ରବନ୍ଧ ରଚନାରୁ ମୋ ଲେଖାର ମୌଳିକତା ଉପରେ ପାଠକମାନେ ଅବଗତ ହୋଇ ପାରିବେ ।

**ପ୍ରଶ୍ନ –** **ଉତ୍କଳ ସମ୍ମିଳନୀର ଜଣେ କର୍ମକର୍ତ୍ତା ଭାବେ ଆପଣ ଦୀର୍ଘଦିନ ଧରି କାର୍ଯ୍ୟ କରି ଆସିଛନ୍ତି । ଓଡ଼ିଶା ପ୍ରଦେଶ ଗଠନ ପରେ ଏହି ଅନୁଷ୍ଠାନର ଆବଶ୍ୟକତା ରହିଛି ବୋଲି ଭାବୁଛନ୍ତି କି ?**

ଉତ୍ତର – ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତା ଉତ୍କଳ ଗୌରବ ମଧୁସୂଦନ ଦାସ ତାଙ୍କ ଜୀବନର ସମସ୍ତ ସୁଖ, ସ୍ୱାଚ୍ଛନ୍ଦ୍ୟ, ଧନସମ୍ପତ୍ତି ଓ ପାରିବାରିକ ମୋହକୁ ଜଳାଞ୍ଜଳି ଦେଇ ଭାରତରେ ଥିବା ସମସ୍ତ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକୁ ଏକତ୍ରିତ କରି ଓଡ଼ିଆଜାତି ପାଇଁ ଏକ ସ୍ୱତନ୍ତ୍ର ରାଜ୍ୟ ସୃଷ୍ଟି କରିବାକୁ ଇଂରେଜ ସରକାରଙ୍କୁ ପ୍ରଭାବିତ କରିବାପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ଫଳରେ ଆଜିର ଓଡ଼ିଶାପ୍ରଦେଶ ଗଠିତ ହେଲା ଓ ବହୁ ଓଡ଼ିଆଭାଷୀ ଅଞ୍ଚଳ ପଡ଼ୋଶୀ ରାଜ୍ୟ ମାନଙ୍କରେ ମିଶି ରହିଗଲା । ସେ ଭାବିଥିଲେ ଓଡ଼ିଶାର ଭାବୀ ନେତୃବୃନ୍ଦ ତାଙ୍କର ଅଧୁରା ସ୍ୱପ୍ନକୁ ସାକାର କରିବେ । ଓଡ଼ିଆମାନେ ଶାସନ ଗାଦିରେ ବସି ନିଜ ରାଜ୍ୟ ପରିଚାଳନା କଲେ ମାତୃଭାଷା ଓଡ଼ିଆର ଉନ୍ନତି ସାଙ୍ଗକୁ ବିଚ୍ଛିନ୍ନାଞ୍ଚଳ ଗୁଡ଼ିକର ପୁନଃମିଶ୍ରଣ ତଥା ଓଡ଼ିଶାର ଅର୍ଥନୈତିକ ଉନ୍ନତି ଘଟିପାରିବ । ମାତ୍ର ଫଳ ଠିକ୍ ଓଲଟା ହେଲା । ଇଂରେଜ ଅଧୀନରେ ଅଣଓଡ଼ିଆ କର୍ମଚାରୀମାନେ ରହି ଯେଭଳି ଓଡ଼ିଆଜାତିକୁ ଅବହେଳିତ କରି ନିଜର ପୁଷ୍ଟିସାଧନ୍ ପ୍ରତି ସଜାଗ ରହିଥିଲେ ଠିକ୍ ସେଇଭଳି ସ୍ୱାଧୀନ ଭାରତର କେନ୍ଦ୍ର ନେତୃତ୍ୱ ମଧ ଓଡ଼ିଆଜାତି ପ୍ରତି ଅବିଚାର କଲା । ଗାଦିନସୀନ ଓଡ଼ିଆ ନେତୃବୃନ୍ଦ ସେମାନଙ୍କୁ ସନ୍ତୁଷ୍ଟ କରିବାଲାଗି ମାତୃଭୂମି ପ୍ରତି ଅବହେଳା ପ୍ରଦର୍ଶନ କଲେ । ଫଳରେ ଏଜାତି ଦୁର୍ବଳ ହୋଇପଡ଼ିଲା । ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନଙ୍କ ସ୍ୱାର୍ଥ ଦେଖିବା ଦୂରେଥାଉ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଆମରି ନେତାମାନେ ଅବହେଳା କରି କେବଳ ନିଜର ସ୍ୱାର୍ଥ ତଥା ଦଳୀୟ ସ୍ୱାର୍ଥପ୍ରତି ଆନୁଗତ୍ୟ ପ୍ରକାଶ କଲେ । ତେଣୁ ଆଜି ଓଡ଼ିଆଜାତିର ସ୍ୱାର୍ଥ ଦେଖିବା ସେହି ଉତ୍କଳ ସମ୍ମିଳନୀର ନୈତିକ ଦାୟିତ୍ୱ ବୋଲି ପ୍ରତ୍ୟେକ ଓଡ଼ିଆ ସ୍ୱୀକାର କରିବ ।

ପ୍ରଶ୍ନ – ଉତ୍କଳ ସମ୍ମିଳନୀର କେନ୍ଦ୍ରୀୟ ଉପସଭାପତି ଭାବେ ଆପଣ ଓଡ଼ିଶାକୁ କେଉଁ ଦୃଷ୍ଟିରେ ଦେଖନ୍ତି ?

ଉତ୍ତର – ଦୀର୍ଘ ଦିନ ଧରି ଦୁଃଖ, ଅପମାନ ଓ ଲାଂଛନା ସହି ରୋଗଶଯ୍ୟାରେ ପଡ଼ିରହିଥିବା ଉତ୍କଳଜନନୀ ପୁତ୍ର କନ୍ୟାଙ୍କ ଠାରୁ ସେବା, ସୁଶ୍ରୁଷା, ସ୍ନେହ ଓ ପ୍ରେମ ଚାହୁଁଥିବା ମାଆଟିଏ ପରି ।

ପ୍ରଶ୍ନ – ଓଡ଼ିଶା ବାହାରେ ଓଡ଼ିଆମାନଙ୍କ ପାଇଁ କ'ଣ ଚିନ୍ତା କରୁଛି ଉତ୍କଳ ସମ୍ମିଳନୀ ?

ଉତ୍ତର – ଓଡ଼ିଶା ବାହାରେ ଥିବା ଅଧିକାଂଶ ଓଡ଼ିଆମାନଙ୍କର ଅବସ୍ଥା ଅତି ଦୟନୀୟ । ସେମାନଙ୍କଠାରୁ ମାତୃଭାଷା ''ଓଡ଼ିଆକୁ'' ଜୋର କରି ଛଡ଼ାଇ ନେବାର ଉଦ୍ୟମକୁ ପ୍ରତିହତ କରିବାର ଶକ୍ତି ସେମାନଙ୍କର ନାହିଁ । ସେମାନେ ଅଣ ଓଡ଼ିଆମାନଙ୍କ ଦୟାରେହିଁ ବଞ୍ଚିରହିଛନ୍ତି । ଚାକିରୀ, ବ୍ୟବସାୟ ବା ଅର୍ଥନୈତିକ ଉନ୍ନତି ପ୍ରତି ସେମାନେ ବୀତସ୍ପୃହ । କେବଳ ଜମିବାଡ଼ିରୁ ମୁଠାଏ ଫସଲ ଆମଦାନୀ କରି ଅଧିକାଂଶ ଓଡ଼ିଆ ପରିବାର ଗୁଜୁରାଣ ମେଣ୍ଟାନ୍ତି । ତେଣୁ ପେଟପୋଷିବା ଲାଗି ବାଧ ହୋଇ ସେମାନେ ନିଜ ମାତୃଭାଷା ବଦଳରେ ପଡ଼ୋଶୀ ଭାଷାକୁ ନିଜର କରି ନେବାକୁ ବାଧ ହେଉଛନ୍ତି ।ସେସବୁ ଅଞ୍ଚଳରୁ ଓଡ଼ିଆ ସଂସ୍କୃତି ଧୀରେ ଧୀରେ ଅପସରି ଯାଉଛି । ତେଣୁ ଏସବୁର ପ୍ରତିକାର ଲାଗି ଚିନ୍ତା କରିବା ଉତ୍କଳ ସମ୍ମିଳନୀର କର୍ତ୍ତବ୍ୟ ।

ପ୍ରଶ୍ନ – ଓଡ଼ିଶା ଭିତରେ ଯେତେବେଳେ ଆଉ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ସ୍ୱର ଉଠୁଛି, ସେତେବେଳେ ଉତ୍କଳ ସମ୍ମିଳନୀର ଦାୟୀତ୍ୱ କ'ଣ ?

ଉତ୍ତର – ଏକାନ୍ନବର୍ତ୍ତୀ ପରିବାରରେ ଥିବା ଗୋଟିଏ ଅବୁଝା ଭାଇ କୁଚକ୍ରୀ ଲୋକଙ୍କ କୁଶିକ୍ଷାରେ ପଡ଼ି ଭିନ୍ନେ ହୋଇଯିବାକୁ ଜିଦ୍ କଲାବେଳେ ତାର ହିତାକାଂକ୍ଷୀ ଭାଇମାନେ ଯାହା କରିବା କଥା ଠିକ୍ ସେ ପ୍ରକାର ବ୍ୟବସ୍ଥା କରିବା ଉତ୍କଳ ସମ୍ମିଳନୀର ଦାୟିତ୍ୱ ।

ପ୍ରଶ୍ନ – ଜୀବନର ଅପରାହ୍ନରେ ଆପଣ ସକ୍ରିୟ । ତେବେ ବର୍ତ୍ତମାନର ଯୋଜନାଟି କ'ଣ ?

ଉତ୍ତର – ଓଡ଼ିଆ ଜାତିର ସୁରକ୍ଷାପାଇଁ କାର୍ଯ୍ୟକରିବା ।

**ପ୍ରଶ୍ନ –** **ଜୀବନକୁ ଆପଣ ଯେଉଁ ମାନଦଣ୍ଡରେ ତଉଲି ଆସିଛନ୍ତି, ବର୍ତ୍ତମାନ ସମାଜକୁ ଆପଣ ସେହି ମାନଦଣ୍ଡରେ ତଉଲାଇଲେ ତାର ସ୍ଥାନ କେଉଁଠି ହେବ ?**

ଉତ୍ତର – ମାତୃଭୂମି ଓଡ଼ିଶା, ମାତୃଭାଷା ଓଡ଼ିଆ ଏବଂ ସମସ୍ୟାଜଡ଼ିତ ଓଡ଼ିଆଜାତି ପାଇଁ କିଛି କରିବାର ଆକାଂକ୍ଷା ନେଇ ବହୁ ଘାତ ପ୍ରତିଘାତ ଭିତରେ କାର୍ଯ୍ୟ କରିବାକୁ ଚେଷ୍ଟା କରି ସେ ଦିଗରେ କେତେଦୂର ଆଗେଇ ପାରିଛି ତାହା ଭବିଷ୍ୟତ ହିଁ କହିବ । ମାତ୍ର ଆଜିର ସମାଜ ଅତ୍ୟଧିକ ସ୍ୱାର୍ଥ ସର୍ବସ୍ୱ ହୋଇ ପଡ଼ିଲାପରି ବୋଧ ହେଉଛି । ଅଧିକାଂଶ ଲୋକ କେବଳ ଆପଣାର ସ୍ୱାର୍ଥପ୍ରତି ସର୍ବାଧିକ ପ୍ରାଧାନ୍ୟ ଦେବା ଭିତରେ ମାତୃଭୂମି ବା ଜାତି ପ୍ରତି ସେମାନଙ୍କର କର୍ତ୍ତବ୍ୟ ବିଷୟରେ ପୂରା ବୀତସ୍ପୃହ ରହୁଛନ୍ତି । ଆଜକୁ ଏକଶହ ବର୍ଷ ତଳେ ଉତ୍କଳଗୌରବ ମଧୁସୂଦନ ଜାତି ଉଦ୍ଦେଶ୍ୟରେ ଉତ୍କଳ ସମ୍ମିଳନୀ ମଞ୍ଚରୁ ଉଦ୍‌ବୋଧନ ଦେଇ କହିଥିଲେ ''ପ୍ରତ୍ୟେକ ଓଡ଼ିଆ ପ୍ରତିଦିନ ମାତ୍ର ପାଞ୍ଚମିନିଟ ଲାଗି ମାତୃଭୂମି ଓଡ଼ିଶା ବିଷୟରେ ଚିନ୍ତା କରିବା ଉଚିତ ''। ମାତ୍ର ବର୍ତ୍ତମାନର ସମାଜ ଓଡ଼ିଆଜାତିର ପିତା ''ମଧୁସୂଦନ'' ଙ୍କର ଉପଦେଶ କଥା ଦୂରେଥାଉ ତାଙ୍କୁ ମଧ ଭୂଲି ଯାଇଛି ।

**ପ୍ରଶ୍ନ –** **ଲେଖକ ସହଯୋଗ ସମିତିର ଆପଣ ସଭାପତି ଓ ଜୀବେହିତୈଷୀ ସଂଘର ମଧ ସଭାପତି ରହିଛନ୍ତି, ଏହି ସଂଗଠନଗୁଡ଼ିକ କ'ଣ ସେମାନଙ୍କର ଗରୁଦାୟିତ୍ୱ ସଠିକ ଭାବେ ନିର୍ବାହ କରୁଛନ୍ତି ?**

ଉତ୍ତର – ପ୍ରତ୍ୟେକ ସଂଗଠନର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ଦାୟୀତ୍ୱ ରହିଛି । ମାତ୍ର ସେ ସବୁର ସଫଳ ରୂପାୟନ ଲାଗି ପ୍ରଚୁର ଅର୍ଥ ଆବଶ୍ୟକ । ଅର୍ଥାଭାବରୁ ସଠିକଭାବେ ଦାୟୀତ୍ୱ ତୁଲାଇବା ସମ୍ଭବ ହୋଇ ପାରୁନାହିଁ । ତଥାପି ଯେତିକି ସମ୍ଭବ ସେତିକି କରିବା ପାଇଁ ଚେଷ୍ଟା କରାଯାଉଛି ।

**ପ୍ରଶ୍ନ –** **ଜୀବନର ବର୍ତ୍ତମାନ ପର୍ଯ୍ୟାୟରେ ପହଞ୍ଚି ଆପଣ ଯେତେବେଳେ ଅତୀତକୁ ଚାହାନ୍ତି, ସେତେବେଳେ ଜୀବନରେ କେଉଁ ପର୍ଯ୍ୟାୟ ଅଧିକ ଉଲ୍ଲେଖନୀୟ ବୋଧ ହୁଏ ?**

ଉତ୍ତର – ମାନବ ଜୀବନ ଏକ ରଙ୍ଗମଞ୍ଚ ସଦୃଶ । ସେହି ରଙ୍ଗମଞ୍ଚରେ ମଣିଷ ବିଭିନ୍ନ ପର୍ଯ୍ୟାୟରେ ଭିନ୍ନ ଭିନ୍ନ ଅଭିନୟ କରିଥାଏ । ମୋ ପକ୍ଷରେ ତାହାହିଁ ଘଟିଛି । ଯେତେବେଳେ ଯେଉଁ ଅଭିନୟ କରିବା କଥା ତାହା ଠିକ୍ ଭାବେ କରିବା

ଲାଗି ମୁଁ ଚେଷ୍ଟା କରିଛି । ତେବେ ମୋ ଜୀବନର ଅଧିକ ସମୟ ପଶୁପାଳନ ବିଭାଗର ଜଣେ ପଦସ୍ଥ କର୍ମଚାରୀ ଭାବେ ମୁଁ ଅତିବାହିତ କରିଛି । ମାତ୍ର ସ୍ୱାଧୀନ ଭାବେ କାର୍ଯ୍ୟ କରିବାର ସୁବିଧା ନ ପାଇ ବହୁ ଘାତ ପ୍ରତିଘାତ ଭିତରେ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରି ପ୍ରତ୍ୟେକ କ୍ଷେତ୍ରରେ କର୍ତ୍ତବ୍ୟ ସମ୍ପାଦନ କରିବା ସହିତ ମାତୃଭୂମି ଓଡ଼ିଶାର ସେବାରେ ନିଜକୁ ନିୟୋଜିତ କରିପାରିଛି ।

**ପ୍ରଶ୍ନ – ପ୍ରଶ୍ନ ନ ପଚାରି ଯଦି ଉତ୍ତରଟିଏ ଦେବାକୁ କୁହାଯାଏ କି ଉତ୍ତର ଦେବେ ଆପଣ ?**

ଉତ୍ତର – '' ବନ୍ଦେ ଉତ୍କଳ ଜନନୀ''



# ଦୁଗ୍ଧବିଜ୍ଞାନୀ ଗୁରୁପ୍ରସାଦ

ଅଧ୍ୟାପକ ଡାଃ ଅନ୍ତର୍ଯ୍ୟାମୀ ମହାନ୍ତି

ଡଃ. ଗୁରୁପ୍ରସାଦ ମହାନ୍ତି ଆମ ସମୟର ଜଣେ ବହୁ ପ୍ରତିଭାଧାରୀ ବ୍ୟକ୍ତିତ୍ୱ । ସେ ବିଜ୍ଞାନରେ ଯେମିତି ବହୁ ପୁସ୍ତକ ରଚନା କରି ନିଜ ବୈଜ୍ଞାନିକ ଚିନ୍ତାଧାରାର ପାରଦର୍ଶିତା ଦେଖେଇଛନ୍ତି ସାହିତ୍ୟରେ ସେମିତି ବଳିଷ୍ଠ ଗ୍ରନ୍ଥମାନ ଲେଖି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛନ୍ତି ।

ଡାଃ. ମହାନ୍ତିଙ୍କ ପାଖରେ କାର୍ଯ୍ୟ କରିବାର ସୌଭାଗ୍ୟ ଜୁଟିଥିଲା ମୋର ଚାକିରୀର ଆଦ୍ୟକାଳରେ । ଜାତୀୟ ଦୁଗ୍ଧ ଗବେଷଣା ଅନୁଷ୍ଠାନରୁ ଦୁଗ୍ଧ ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷା ସାରି ଜୁନମାସ ୧୯୭୩ ମସିହାରେ ମୁଁ ଯେତେବେଳେ ଓଡ଼ିଶା ପଶୁଚିକିତ୍ସା ବିଭାଗରେ ସର୍ବପ୍ରଥମେ ଯୋଗ ଦେଲି,. ଭାରତୀୟ କୃଷିଗବେଷଣା ସଂସ୍ଥାର ସହାୟକ ବୈଜ୍ଞାନିକଭାବରେ, ସେତେବେଳେ ଡଃ.ମହାନ୍ତି ଥିଲେ ସେଇ ଗବେଷଣା ପ୍ରକଳ୍ପର ମୁଖ୍ୟ ଓ ବରିଷ୍ଠ ବୈଜ୍ଞାନିକ ।

ଏ ସଂସ୍ଥାର ମୁଖ୍ୟ କାମଥିଲା ଗାଁ, ଗଣ୍ଡାର ଚାଷୀମାନଙ୍କଠାରୁ ଦୁଗ୍ଧ ସଂଗ୍ରହକରି ସେହି କ୍ଷୀରରେ ବିଭିନ୍ନ ଦୁଗ୍ଧଜାତ ଦ୍ରବ୍ୟ ତିଆରି କରିବା ଓ ତାକୁ କଟକ, ଭୁବନେଶ୍ୱର ବଜାରରେ ପ୍ରଥମ କରି ବିକ୍ରିକରିବା । ଏହାଦ୍ୱାରା ଦୁଗ୍ଧ ବିକ୍ରୟ ତୁଳନାରେ ଗୋପାଳନକାରୀ ପରିବାରଟି ଦୁଧ ଲିଟର ପିଛା କେତେ ଅଧିକ ଆୟ କରିପାରୁଛି ତାର ଗବେଷଣାତ୍ମକ ସମୀକ୍ଷାକରିବା ଥିଲା ତରଳ ଦୁଗ୍ଧ ଉପରେ ଗବେଷଣାର ଏକ ଦିଗ । ଡଃ. ମହାନ୍ତିଙ୍କ ବଳିଷ୍ଠ ନେତୃତ୍ୱରେ ଯେ ଏହି ଯୋଜନା କାଳକ୍ରମେ କେବଳ ଲୋକପ୍ରିୟ ହେଲା ତା' ନୁହେଁ ବରଂ ସରକାରଙ୍କ ଅନ୍ୟାନ୍ୟ ବିଭାଗର ନେତୃବୃନ୍ଦ ମଧ୍ୟ ଏହାର ଭୂୟସୀ ପ୍ରଶଂସା କରିଥିଲେ ।

ପରବର୍ତ୍ତୀ ପର୍ଯ୍ୟାୟରେ ଭାରତୀୟ କୃଷିଗବେଷଣା ସଂସ୍ଥାର ତତ୍‌କାଳୀନ ପ୍ରକଳ୍ପମୁଖ୍ୟ ଡଃ ଶ୍ରୀନିବାସନ ଏହି ପ୍ରକଳ୍ପର ସଫଳତା ଦେଖି ଅନ୍ୟ ଏକ ପ୍ରକଳ୍ପ ମାଧ୍ୟମରେ ଗାଁଗଣ୍ଡାରୁ ସଂଗ୍ରହ ହେଉଥିବା କ୍ଷୀରପାଇଁ ସଂଗ୍ରହ ଖର୍ଚ୍ଚ ଆକଳନ ସହ ଦୁଗ୍ଧ ପରିବହନ ଏବଂ ପ୍ରକ୍ରିୟାକରଣର ଖର୍ଚ୍ଚ କେମିତି କମି ପାରିବ ଓ ଏହାଦ୍ୱାରା ଦୁଗ୍ଧ ଉତ୍ପାଦନକାରୀ ଚାଷୀ କେତେଦୂର ଲାଭାନ୍ୱିତ ହୋଇ ପାରିବେ ସେହି ବିଷୟରେ ଗବେଷଣା କାର୍ଯ୍ୟ ନ୍ୟସ୍ତ କରିଥିଲେ ଡାଃ. ମହାନ୍ତିଙ୍କ ଉପରେ ଯାହାକୁ ସିଏ ସୁଚାରୁ ରୂପେ ପରିଚାଳନା କରି ପ୍ରଶଂସାର ପାତ୍ର ହୋଇ ପାରିଥିଲେ ।

ଓଡ଼ିଶା ଭଳି ଗ୍ରାମ ବହୁଳ ରାଜ୍ୟରେ ଗାଆଁ ମାନଙ୍କରୁ ଦୁଗ୍ଧ ପ୍ରକ୍ରିୟାକରଣ କେନ୍ଦ୍ରକୁ ଦୁଗ୍ଧ ପରିବହନ ଲାଗି ଡାଃ ମହାନ୍ତି କେତେକ ଶସ୍ତା ପରିବହନ ଯନ୍ତ୍ର ଉଦ୍‌ଭାବନ କରିଥିଲେ । ଯା' ପରେ ଓଡ଼ିଶା ସରକାରଙ୍କ ପଶୁଚିକିତ୍ସା ଓ ପଶୁପାଳନ ବିଭାଗ ଦ୍ୱାରା ପରିଚାଳିତ ଫୁଲନଖରାସ୍ଥିତ କଟକ ଜିଲ୍ଲା ଦୁଗ୍ଧ ପ୍ରକଳ୍ପର ପୂର୍ଣ୍ଣ ଦାୟିତ୍ୱ ନେଇ ସେ କଟକ ଓ ଭୁବନେଶ୍ୱର ମହାନଗରକୁ ଦୁଗ୍ଧ ସହିତ ଘିଅ, ସୁବାସିତ ଦୁଗ୍ଧ, ଛେନା, ଦହି, ମିଠାଦହି ଇତ୍ୟାଦି ପ୍ରସ୍ତୁତ କରି ବିକ୍ରି କରିବାର ଦକ୍ଷ ଭୂମିକା ଗ୍ରହଣ କରିଥିଲେ ।

ଏ ପ୍ରକଳ୍ପର କାର୍ଯ୍ୟକୁ ବିସ୍ତାରିତ କରିବା ପାଇଁ ବେକାରଯୁବକ ଯୁବତୀଙ୍କୁ ତାଲିମ ଦେଇ ଦୁଗ୍ଧଉତ୍ପାଦନ ମାଧ୍ୟମରେ ଆତ୍ମନିଯୁକ୍ତିର ଏକ ନୂଆ ଦିଗ ଫିଟେଇଥିଲେ ।

ଉପରୋକ୍ତ ଦୁଗ୍ଧଜାତ ଦ୍ରବ୍ୟର ଗୁଣାତ୍ମକ ତଥା ସଂରକ୍ଷଣ ବିଷୟରେ ଦୀର୍ଘ ପାଞ୍ଚବର୍ଷ ଧରି ବିଭିନ୍ନ ଗବେଷଣା କରାଯାଇ, ତହିଁରୁ ମିଳିଥିବା ତଥ୍ୟାବଳୀ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରଶଂସିତ ହୋଇ ପାରିଥିଲା । ଫଳତଃ ଓଡ଼ିଶାକୁ ଭାରତୀୟ ଦୁଗ୍ଧ ବନ୍ୟା ଯୋଜନାରେ ଦ୍ୱିତୀୟ ଭାଗରେ (2nd phase of operatrion flood) ସାମିଲ କରିବା ପାଇଁ ଅନୁମୋଦିତ ହୋଇ ପାରିଥିଲା । କଟକ, ପୁରୀ, ଢେଙ୍କାନାଳ ଓ କେନ୍ଦୁଝର ଜିଲ୍ଲାରେ ସର୍ଭେ କରାଇ ସେ ସବୁ ଜିଲ୍ଲାରେ ଜିଲ୍ଲା ଦୁଗ୍ଧ ଉତ୍ପାଦନ ସଂଘ ଗଠନ କରିବାକୁ ବ୍ୟବସ୍ଥା କରିଥିଲେ ।

ଏହି କ୍ରମରେ ବିଚାର କଲେ ଆଜିର "OMFED" ସଂସ୍ଥାର ଆଦ୍ୟ ବିନ୍ଧାଣୀ ହେଉଛନ୍ତି ଡକ୍ଟର ଗୁରୁପ୍ରସାଦ ମହାନ୍ତି । ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ ଉପରେ ବିଭିନ୍ନ ଦିଗରୁ ଗବେଷଣା କରି ଓଡ଼ିଶା ପରି ଏକ ନିଅଣ୍ଟିଆ ରାଜ୍ୟରେ ଦୁଗ୍ଧ ଉତ୍ପାଦନର ଏକ ଦୃଢ଼ ମୂଳଦୁଆ ପକାଇବାରେ ଡଃ ମହାନ୍ତିଙ୍କର ଅବଦାନ ସ୍ୱୀକାର୍ଯ୍ୟ ।

ଓଡ଼ିଶା ସରକାରଙ୍କ ପଶୁଚିକିତ୍ସା ଓ ପଶୁପାଳନ ବିଭାଗ ନିର୍ଦ୍ଦେଶକ ପଦବୀରେ ଅବସ୍ଥାପିତ ହୋଇ ପ୍ରଶାସନିକ କ୍ଷେତ୍ରରେ ଆପଣା ଦକ୍ଷତା ପ୍ରତିପାଦିତ କରିବା ସଂଗେ ବିଭିନ୍ନ ସାଂଗଠନିକ କାର୍ଯ୍ୟରେ ଲିପ୍ତରହି ଓଡ଼ିଶାର ଅନେକ ଅଗ୍ରଣୀ ଅନୁଷ୍ଠାନ ମାନଙ୍କର ବହୁ ମୁଖ୍ୟ ପଦବୀର ଅଧିକାରୀ ହୋଇ ପାରିଛନ୍ତି ସେ ।

ତାଙ୍କ ସରଳ ଓ ମେଳାପୀ ବ୍ୟକ୍ତିତ୍ୱ ତଥା ବାଗ୍ମୀତାଯୋଗୁ ସିଏ ସମସ୍ତଙ୍କର ପ୍ରିୟଭାଜନ ହୋଇ ପାରିଛନ୍ତି ।

ତାଙ୍କ ପ୍ରତିଭାକୁ ଅଂଗୀକାର କରି ବହୁ ଅନୁଷ୍ଠାନ ଦ୍ୱାରା ମିଳିଛି ଅନେକ ସଂବର୍ଦ୍ଧନା, ପ୍ରଶଂସା ଓ ମାନପତ୍ର, ତନ୍ମଧ୍ୟରୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର; ବିଜ୍ଞାନ ପ୍ରଚାର ସମିତି ସମ୍ମାନ ଇତ୍ୟାଦି ଉଲ୍ଲେଖନୀୟ ।

ଡଃ. ମହାନ୍ତିଙ୍କ ପ୍ରତିଭାର ବିକାଶସହ ତାଙ୍କର ଆହୁରି ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

*ଲେଖକ, ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟ, ଭୁବନେଶ୍ୱର ।*

*ଅଧ୍ୟାପକ, ଦୁଗ୍ଧଉତ୍ପାଦନ ବିଜ୍ଞାନ, ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟ, ଭୁବନେଶ୍ୱର*



# ଅଧ୍ୟାପକ ଡକ୍ଟର ଗୁରୁପ୍ରସାଦ ମହାନ୍ତି : ଏକ ଅନନ୍ୟ ପ୍ରତିଭା

ଡଃ କୈଳାସ ଚନ୍ଦ୍ର ପଟ୍ଟନାୟକ

'ଆଳି ପିଙ୍ଗଳ'ରୁ ଆମେରିକା, ଡାକ୍ତର ଗୁରୁପ୍ରସାଦରୁ ଡକ୍ଟର ଗୁରୁପ୍ରସାଦ, ଗପଭଳି ଲାଗିଲେବି, ସତ । ଦେବୀ ନଦୀତୀରସ୍ଥ ବନ୍ୟାପ୍ରବଣ କଟକ ଜିଲ୍ଲାର ''ଆଳିପିଙ୍ଗଳ ଗାଁରୁ ପ୍ରାଥମିକ ଶିକ୍ଷା ଆରମ୍ଭ, ସୁଦୂର ଯୁକ୍ତରାଷ୍ଟ୍ର ଆମେରିକାର 'ସାଉଥ୍‌ଡାକୋଟା' ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ଡିଗ୍ରୀ ହାସଲ କରି ପାଠଶେଷ – ଏହା ଭିତରର ଉଠ ପଡ଼ ଆଉ ଝଡ଼ଝଞ୍ଜା ଅସୁମାରୀ ସମସ୍ୟାତ ନିଶ୍ଚୟ, ତେବେ ଜିତାପଟ ନେଇଛନ୍ତି 'ଗୁରୁବାବୁ' ଯିଏ କି ତାଙ୍କର ଶିକ୍ଷକ ତଥା ଗୁରୁଜନ ମାନଙ୍କର ଅତି ପ୍ରିୟ 'ଗୁରୁପ୍ରସାଦ' ଓ ଅନୁଜ ମାନଙ୍କର ଡକ୍ଟର ମହାନ୍ତି ତଥା ଛାତ୍ରମାନଙ୍କର ଅତିପ୍ରିୟ ସାର୍ । ଭାରତର ସୀମାରେଖାକୁ ଆମେ ସହଜରେ ମନେରଖିଥାଉ ''କାଶ୍ମୀରରୁ'' କନ୍ୟାକୁମାରୀ'', ଗୁଜରରାଟରୁ ଗୁଆହାଟି – ଏହା ଭିତରେ କେତେ ନଦନଦୀ, ବଣଜଙ୍ଗଲ, ପାହାଡ଼ ପର୍ବତ, ଖାଲଢ଼ିପ । ଗୁରୁପ୍ରସାଦଙ୍କ ଜୀବନ ମଧ୍ୟ ସହକାରୀ ଚିକିତ୍ସକରୁ ଆରମ୍ଭ ହୋଇ ଡିପାର୍ଟମେଣ୍ଟର ସର୍ବୋଚ୍ଚ ପଦବୀ 'ନିର୍ଦ୍ଦେଶକ' ଭାବରେ ଅବସର ନେବା ଭିତରେ କେଉଁଠି ଗୋଲାପର ଶଯ୍ୟା ନ ଥିଲା ''– କିନ୍ତୁ ସେ ଏତେବଡ଼ ବିଭାଗର ନିର୍ଦ୍ଦେଶକ ହେଲେ, ଯେତେବେଳେ ଆମ ପଶୁଚିକିତ୍ସା ବିଜ୍ଞାନ ମହାବିଦ୍ୟାଳୟରେ ତଥା ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ପି.ଏଚ.ଡ଼. ଡ଼ିଗ୍ରୀ ଧାରୀଙ୍କ ସଂଖ୍ୟା ହାତ ଗଣତି ଥିଲା । ସେତେବେଳେ ଆମେ ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କ ଭଳି ଦୁଗ୍ଧ ବିଜ୍ଞାନରେ ଆମେରିକାରୁ ପି.ଏଚ୍.ଡ଼ି. କରିଥିବା ବ୍ୟକ୍ତିଙ୍କୁ ଶିକ୍ଷକ ମଣ୍ଡଳୀ ଭିତରେ ପାଇଥିଲୁ । ତାଙ୍କର ସର୍ବୋଚ୍ଚ ଡ଼ିଗ୍ରୀ ସାଙ୍ଗକୁ ବିଷୟବସ୍ତୁ ଉପରେ ଦଖଲ, ହସହସ ମୁହଁ ଆଉ ଅମାୟିକ ବ୍ୟବହାର ଛାତ୍ରମହଲରେ ତାଙ୍କର ପ୍ରତିଷ୍ଠା ଆଣି ଦେଇଥିଲା । ଛାତ୍ରମାନେ ମଧ୍ୟ ବେଶ୍ ପ୍ରଭାବିତ ହୋଇଥିଲେ । ମୁଁ ତାଙ୍କଠାରୁ ଅଳ୍ପ ସାନ ଥିଲି – ମୁଁ ତାଙ୍କର ଛାତ୍ରପ୍ରତିମ । ତାଙ୍କ ସହିତ ଆମର ପାରିବାରିକ ସମ୍ପର୍କ । ଡକ୍ଟର ଗୁରୁପ୍ରସାଦଙ୍କ ରୁଚିପୂର୍ଣ୍ଣ ପୋଷାକ, କର୍ତ୍ତବ୍ୟ ନିଷ୍ଠା, ଭାଷାଜ୍ଞାନ, ଅଧ୍ୟାପନାର ଶୈଳୀ, ଛାତ୍ରବତ୍ସଳତା, ସାହାଯ୍ୟକାରୀ ମନୋବୃତ୍ତି ସହିତ ଅସାଧାରଣ ଶୃଙ୍ଖଳାଜ୍ଞାନ ତାଙ୍କର ଛାତ୍ର

ତଥା ସହକର୍ମୀମାନଙ୍କୁ ବେଶ୍ ପ୍ରଭାବିତ କରିଥିଲା । ମୋର ମନେ ଅଛି ବହୁଛାତ୍ର ତଥା ସହକର୍ମୀ ଆମେରିକା ଯାଇ କିପରି ପାଠ ପଢ଼ିବେ ବୋଲି ତାଙ୍କ ସହିତ ପରାମର୍ଶ କରନ୍ତି । ତାଙ୍କର ଅକୁଣ୍ଠ ସାହାଯ୍ୟ, ସହାନୁଭୂତି ତଥା ଦିଗ୍‌ଦର୍ଶନ ଯୋଗୁ ବହୁଲୋକ ଆମେରିକା ଯାଇ ପାରିଛନ୍ତି । ଏହି ବ୍ୟକ୍ତିମାନଙ୍କ ମଧ୍ୟରେ ଏବେ ଯୁକ୍ତରାଷ୍ଟ୍ର ଆମେରିକାର ମିନିଆପଲିସ୍‌ରେ ଥିବା ଡଃ ଶୀତିକଣ୍ଠ ଦାଶ ଓ ସିନ୍ସିନାଟିରେ ଥିବା ଡଃ ହରଲାଲ୍ ଚୌଧୁରୀଙ୍କ ନାମ ଉଲ୍ଲେଖ ଯୋଗ୍ୟ । ବ୍ୟକ୍ତିଗତ ଭାବରେ ଅନ୍ୟ କେତେକ ବ୍ୟକ୍ତିଙ୍କୁ ଜାଣିଥିଲେ ମଧ୍ୟ ଔପଚାରିକତା ଦୃଷ୍ଟିରୁ ଏଠାରେ ସେମାନଙ୍କ ନାମ ପ୍ରକାଶ କରୁନାହିଁ । ମୋର କେତେଜଣ ବନ୍ଧୁ ଅନୁଗୁଳସ୍ଥିତ କୁକୁଡ଼ା ଫାର୍ମରୁ ଆମେରିକା ଗଲେ ଏବଂ ମୋତେ କହିଗଲେ ଯେ ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କ ସହିତ ସମ୍ପର୍କ ରଖିଲେ ସେ ହିଁ ଆମେରିକା ପଠାଇ ଦେଇ ପାରିବେ । ମୋ ଅବସ୍ଥା ସେତେବେଳେ ଦୋଦୁଲ୍ୟମାନ । ୟୁ.ଏସ୍. ଏ.ଆଇ.ଡ଼ି. ପ୍ରୋଗ୍ରାମରେ ଡାକ୍ତର ଜଗଦ୍‌ବନ୍ଧୁ ନାୟକ, ଡାକ୍ତର ଶଶୀଭୂଷଣ ମିଶ୍ର ଓ ମୋ ନାମ ଦୋଳାୟମାନ ଅବସ୍ଥାରେ ଥିବାରୁ ମୁଁ ଡକ୍ଟର ମହାନ୍ତିଙ୍କୁ ମଧ୍ୟ ଯୋଗାଯୋଗ କରିପାରୁନଥାଏ । ଏ ସବୁ ଆଜି ଅତୀତର ଇତିହାସ – ଉଲ୍ଲେଖ କରିବାର ପ୍ରୟୋଜନୀୟତା ଏଇଆ ଯେ ଡକ୍ଟର ଗୁରୁପ୍ରସାଦଙ୍କ ଉପରେ ଆମ୍ଭମାନଙ୍କର ଭରସା ଥିଲା । ୧୯୭୧ ମସିହା ଜୁଲାଇ ମାସରେ ମୁଁ "ଜନସ୍ୱାସ୍ଥ୍ୟ ଓ ମହାମାରୀ ବିଜ୍ଞାନରେ ଉଚ୍ଚଶିକ୍ଷା ପାଇଁ ବିଶ୍ୱସ୍ୱାସ୍ଥ୍ୟ ସଂଗଠନ (WHO) ଦ୍ୱାରା ମନୋନୀତ ହୋଇ ଲଣ୍ଡନ ଯିବା ପୂର୍ବରୁ ଅନ୍ତିମ ପର୍ଯ୍ୟାୟରେ ଥରେ ଡକ୍ଟର ମହାନ୍ତିଙ୍କୁ ଦେଖାକଲି ଏବଂ ମୋର ଅଭିଳାଷ କ'ଣ ଥିଲା ଜଣାଇଲି । ସେ ସହୃଦୟତାର ସହିତ ମତେ ଉପଯୁକ୍ତ ଦିଗ୍‌ଦର୍ଶନ ଦେଇଥିଲେ । ଓଡ଼ିଶା ପଶୁଚିକିତ୍ସା ଓ ପଶୁପାଳନ ମହାବିଦ୍ୟାଳୟରୁ ସ୍ନାତକ, ଆମେରିକାର ଓହିଓ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର (M.S) ଏବଂ ପରେପରେ ସାଉଥ୍‌ଡାକୋଟା ବିଶ୍ୱବିଦ୍ୟାଳୟରୁ ଡକ୍ଟୋରେଟ୍ (Ph.D) ଉପାଧି ସେ ପାଇଲେ । ମହାବିଦ୍ୟାଳୟରେ ଗବେଷଣା କାର୍ଯ୍ୟ ସହିତ ଅଧ୍ୟାପନାର ଦାୟିତ୍ୱ ନେଇ ଏକ ଦାୟିତ୍ୱ ସମ୍ପନ୍ନ ଅଧ୍ୟାପକ ଭାବରେ ସେ ଛାତ୍ର ତଥା ଶିକ୍ଷକ ମହଲରେ ସମସ୍ତଙ୍କର ଆଦରଣୀୟ ହେଲେ, ମୁଁ ତାଙ୍କର ସହଯୋଗୀ ଭାବରେ ଏହା ମଧ୍ୟ ଲକ୍ଷ୍ୟ କରିଛି ଯେ ଛାତ୍ରବତ୍ସଳ ହେବା ସାଙ୍ଗେ ସାଙ୍ଗେ ତାଙ୍କର ଅନୁଶାସନ ମଧ୍ୟ ବେଶ୍ କଠୋର ଥିଲା । କତିପୟ ଛାତ୍ରଙ୍କର ପରୀକ୍ଷାରେ ଅସତ୍ ଉପାୟ ଅବଲମ୍ବନ ତଥା କୌଣସି ପ୍ରକାରର ବିଶୃଙ୍ଖଳିତ ଆଚରଣକୁ ସେ ଦୃଢ଼ ହସ୍ତରେ ଦମନ କରି ବହୁଭାଗର ମେଧାବୀ ଛାତ୍ର ମାନଙ୍କଦ୍ୱାରା ସେ ଆଦୃତ ହୋଇଥିଲେ । ତାଙ୍କର ସେହି ହସହସ ମୁଖ ଏବଂ ଛାତ୍ର ବତ୍ସଳତା ଆଜି ମଧ୍ୟ ପରିଦୃଷ୍ଟ ।

ଶିକ୍ଷାଦାନ ସହିତ ଗବେଷଣାର ମାନ ମଧ୍ୟ ତାଙ୍କ ଦ୍ୱାରା ବୃଦ୍ଧି ପାଇଥିଲା । ଶ୍ରେଣୀ କକ୍ଷରୁ ଆସି ଗବେଷଣାଗାରରେ ଏକ ବ୍ୟସ୍ତ ବହୁଳ 'ଗୁରୁପ୍ରସାଦ'ଙ୍କୁ ଦେଖିଲେ ନିଜ

ମଧ୍ୟରେ ମଧ୍ୟ କର୍ମପ୍ରବଣତା (work culture) ଉଦ୍ରେକ ହୁଏ । ନିଜେ ଚିଲିକାର ଆଭ୍ୟନ୍ତରିଣ ସ୍ଥାନକୁ ଯାଇ, ବୈଜ୍ଞାନିକ ପଦ୍ଧତିରେ ଚିଲିକାଦଳର ଆହରଣ, ସଂରକ୍ଷଣ, ପ୍ରକ୍ରିୟାକରଣ ତଥା ସେସବୁର ମାନ ନିର୍ଦ୍ଧାରଣ କରିବାରେ ତାଙ୍କର ଅବଦାନ ଅତୁଳନୀୟ ଥିଲା । ଗବେଷଣାତ୍ମକ ଆଲୋଚନା (Seminar) ମାନଙ୍କରେ ତାଙ୍କର ବିଜ୍ଞାନ ସମ୍ମତ ପ୍ରଶ୍ନ ତଥା ଦିଗ୍‌ଦର୍ଶନ ବେଶ୍ ଉଚ୍ଚ କୋଟିର ଥିଲା । ଡକ୍ଟର ପ୍ରାଣକୃଷ୍ଣ ପରିଜା ସେତେବେଳେ ବୟସାଧିକ୍ୟ ଯୋଗୁ ତାଙ୍କ ଅଧୀନରେ ଗବେଷଣା କରୁଥିବା କେତେଜଣ ସ୍ନାତକଙ୍କୁ ଚିଲିକା ଦଳ ଉପରେ କାମ କରିବାକୁ ଗୁରୁବାବୁଙ୍କ ସାହାଯ୍ୟ ଲୋଡ଼ିବାର ମୁଁ ଜାଣିଛି ।

ତାଙ୍କର ଉପଯୁକ୍ତ ସମୟ ଜ୍ଞାନ ଏକ ମୌଳିକ ଜ୍ଞାନ । ପରେ ଅବଶ୍ୟ ଆମେରିକାନ୍ ବିଶ୍ୱବିଦ୍ୟାଳୟର ପ୍ରଭାବରେ ତାହା ପରିବର୍ତ୍ତିତ ବା ପରିମାର୍ଜିତ ହୋଇଥିବ, ତା ନହେଲେ ସମୟାନୁବର୍ତ୍ତିତା ଥିଲା ତାଙ୍କର ଅସ୍ଥିମଜ୍ଜାଗତ । ଅନ୍ୟ ମାନଙ୍କର ଏଥିରେ ବ୍ୟତିକ୍ରମ ଦେଖିଲେ ସେ ହୁଏତ କାହାକୁ ଅପଦସ୍ତ କରି ନାହାନ୍ତି, କିନ୍ତୁ ତାଙ୍କ ମୁଖମଣ୍ଡଳର ଗାମ୍ଭୀର୍ଯ୍ୟ ଆପେ ଆପେ ବିରକ୍ତିଭାବର ପରିସ୍ଫୁଟ କରାଏ । ପୂର୍ବରୁ କହିଛି ଯେ, ଡକ୍ଟର ଗୁରୁପ୍ରସାଦ ଏକ ବହୁମୁଖୀ ପ୍ରତିଭା'' ଏ ବିଷୟରେ ଆମେ ସହକର୍ମୀମାନେ ସେତେବେଳକୁ ତାର ସୂଚନା ପାଇ ସାରିଲୁଣି । ତାଙ୍କର ସାବଲୀଳ ଭାଷା, ଅଧ୍ୟାପନାର ଶୈଳୀ, ଭାଷାର ସଂଯୋଜନା ତଥା ଉପଯୁକ୍ତ ବ୍ୟବହାର ଦ୍ୱାରା ତାଙ୍କର ଅଧ୍ୟାପନା ବେଶ୍ ଜୀବନ୍ତ ହେଉଥିଲା । ଅବଶ୍ୟ ସ୍ୱଳ୍ପ କାଳ ପରେ ତାଙ୍କ ଉପରେ ପଶୁପାଳନ ବିଭାଗର ଗୁରୁଦାୟିତ୍ୱ ପଡ଼ିଲା ଏବଂ ସେ ସହକାରୀ ନିର୍ଦ୍ଦେଶକ ହୋଇ ପଶୁସମ୍ପଦ ବିଭାଗକୁ ଗଲେ । It was a loss to my college but a great gain to my Department in the Govt. ପଣ୍ଡିତ ନେହେରୁ ଆହ୍ଲାବାଦ୍ ହାଇକୋର୍ଟରୁ ଓକିଲାତି ବ୍ୟବସାୟ ଛାଡ଼ିଥିଲେ । ପରେ ସେ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ହୋଇ ଦେଶ ଗଠନର ମଙ୍ଗ ଧରିଥିଲେ । ସେତେବେଳେ କୁହାଯାଇଥିଲା, "A great loss to Allahabad Bar was the greatest gain to the Nation" ।

ଡକ୍ଟର ଗୁରୁପ୍ରସାଦ ଏଠାରେ ଥିଲାବେଳେ କୃଷିବିଶ୍ୱବିଦ୍ୟାଳୟର ଅନ୍ୟାନ୍ୟ ମହାବିଦ୍ୟାଳୟମାନଙ୍କର ସହକର୍ମୀମାନଙ୍କୁ ଏକାଠି କରି 'ମୂର୍ଚ୍ଛନା' ବୋଲି ଏକ ରଠନ ମୂଳକ ସଂସ୍ଥା ଗଢ଼ିଥିଲେ । ତାହା ଅଦ୍ୟାବଧି ଜୀବିତ ଏବଂ ମନୋରଂଜନର କେନ୍ଦ୍ରବିନ୍ଦୁ ହୋଇଛି । ଦୁଗ୍ଧବିଜ୍ଞାନ, କୁକୁଟ ବିଜ୍ଞାନ ଏବଂ ମାଂସ ବିଜ୍ଞାନ ଉପରେ ପୁସ୍ତକ ମାନ ରଚନା କରି ଏବଂ ରଚନାତ୍ମକ କାର୍ଯ୍ୟରେ ସାହାଯ୍ୟ କରି ସେ ରାଜ୍ୟ ଶିକ୍ଷା ଗବେଷଣା ପରିଷଦ ତରଫରୁ ନଅଟି ପୁସ୍ତକ ପ୍ରକାଶନ କରିଛନ୍ତି । କେବଳ ସେତିକି ନୁହଁ –

ଗୁରୁପ୍ରସାଦ ଜଣେ ସୁସାହିତ୍ୟିକ । ତାଙ୍କ ରଚିତ ପୁସ୍ତକମାନ ବିଭିନ୍ନ ପାଠକ ମହଲରେ ବେଶ୍ ଆଦୃତ, ସେଥିପାଇଁ ମଧ୍ୟ ସେ ବହୁଧା ସମ୍ମାନିତ । ତାଙ୍କ ଲିଖିତ ସଦ୍ୟପ୍ରକାଶିତ 'ମୋହନ ବଂଶୀ' ଏକ ଅନବଦ୍ୟ ସୃଷ୍ଟି । ଭାଷାର ଚମତ୍କାରିତା ଓ ଭାବର ଐକାନ୍ତିକତା ସେଠାରେ ଏକତ୍ର ସନ୍ନିବିଷ୍ଟ ।

ସେ ଜଣେ ସୁସଂଗଠକ ମଧ୍ୟ । ସରକାରୀ ଚାକିରୀରେ ଥିଲାବେଳେ ବିଭାଗର ପୁନର୍ବିନ୍ୟାସ ହୋଇ 'ପଶୁସମ୍ପଦ ବିକାଶ' ବିଭାଗ ହୋଇଛି । ସେ ଜଣେ ଚିନ୍ତାଶୀଳ ବ୍ୟକ୍ତି । '୧୯୫୪ ମସିହା ମାଟ୍ରିକ' ମାନଙ୍କର ସମାବେଶରେ ଉପସଭାପତି ଭାବରେ ସେ ତାଙ୍କ ସଂଗଠନ କୌଶଳର ପରାକାଷ୍ଠା ପ୍ରତିପାଦନ କରି ପ୍ରତ୍ୟକ୍ଷ ଏବଂ ପରୋକ୍ଷରେ ବହୁ ପ୍ରଶଂସାର ଅଧିକାରୀ ହୋଇଛନ୍ତି ।

ଉତ୍କଳ ମାତାର ଜଣେ ସୁଯୋଗ୍ୟ ସନ୍ତାନ ଭାବରେ ଉତ୍କଳ ସମ୍ମିଳନୀର ଉପସଭାପତି ଭାବରେ ତାଙ୍କର ସଂଗଠନ କୌଶଳ, କାର୍ଯ୍ୟଦକ୍ଷତା ଏବଂ ଉତ୍କଳ ଜନନୀର ସେବା ପାଇଁ ତାଙ୍କର ଆତ୍ମୀୟତା ସ୍ୱତଃ ପରିସ୍ଫୁଟ । ''ଓଡ଼ିଆ ଭାଷା ବଞ୍ଚାଅ'' ଆନ୍ଦୋଳନରେ ମଧ୍ୟ ସେ ନିଜକୁ ସର୍ବଦା ନିୟୋଜିତ କରିପାରିଛନ୍ତି ।

ଏହି ପ୍ରତିଭାବାନ ବ୍ୟକ୍ତିଙ୍କର ଜୟ ହେଉ । ମୁଁ ତାଙ୍କର ଜଣେ ବିନୀତ ସହକର୍ମୀ ତଥା ସହଯୋଗୀ ହିସାବରେ ତାଙ୍କର ଦୀର୍ଘ ନିରାମୟ, କର୍ମଠ ଜୀବନ କାମନା କରୁଛି ।

*ଅବସର ପ୍ରାପ୍ତ ବିଭାଗୀୟ ମୁଖ୍ୟ, ଜନସ୍ୱାସ୍ଥ୍ୟ ଓ ମହାମାରୀ ବିଜ୍ଞାନ ବିଭାଗ, ଓଡ଼ିଶା*
*ପଶୁଚିକିତ୍ସା ଓ ପଶୁପାଳନ ମହାବିଦ୍ୟାଳୟ, ଭୁବନେଶ୍ୱର – ୩*



# ଅଧ୍ୟାପନା କ୍ଷେତ୍ରରେ ଗୁରୁପ୍ରସାଦ

ଅଧ୍ୟାପକ ଡଃ ଶରତ ଚନ୍ଦ୍ର ମିଶ୍ର

ଆଇ.ଏସ୍‌ସି ପାଠ୍ୟକ୍ରମ ପରେ ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟରେ ମୁଁ ଅଧ୍ୟୟନ କଲି । ୧୯୬୯ ମସିହାରେ ମୁଁ ଥିଲି ଏହି ମହାବିଦ୍ୟାଳୟର ଦ୍ୱିତୀୟ ବର୍ଷର ଛାତ୍ର । ସେହି ବର୍ଷ ଫେବୃୟାରୀ ମାସରେ ଆମ ଶ୍ରେଣୀରେ ଦୁଗ୍ଧ ବିଜ୍ଞାନ (Dairy Science) ପଢ଼ାଇବାକୁ ଜଣେ ଆମେରିକା ଫେରନ୍ତା ଯୁବକ ଆସି ପହଞ୍ଚିଲେ । ସେ ଥିଲେ ଡକ୍ଟର ଗୁରୁପ୍ରସାଦ ମହାନ୍ତି । ଯୁକ୍ତରାଷ୍ଟ୍ର ଆମେରିକାର ଦକ୍ଷିଣ ଡାକୋଟା ବିଶ୍ୱବିଦ୍ୟାଳୟରୁ ଦୁଗ୍ଧ ବିଜ୍ଞାନ ଶାସ୍ତ୍ରରେ ସ୍ନାତକୋତ୍ତର ଶିକ୍ଷା ଶେଷ କରି ଡକ୍ଟରେଟ୍ ହାସଲ କରିବା ପରେ ସେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ଜଣେ ଅଧ୍ୟାପକ ଭାବରେ ଯୋଗଦେଲେ । ସେତେବେଳେ ଆମ କଲେଜର କେତେଜଣ ଅଧ୍ୟାପକ ଉଚ୍ଚଶିକ୍ଷା ପାଇଁ ଟି.ସି.ଏମ୍ ସ୍କିମରେ ଆମେରିକାର ମିଶୌରୀ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥାନ୍ତି । ତନ୍ମଧ୍ୟରୁ ଆମର ଦୁଗ୍ଧବିଜ୍ଞାନ ଅଧ୍ୟାପକ ଡଃ ମିଶ୍ର ଓ ପ୍ରାଣୀପୁଷ୍ଟିତତ୍ତ୍ୱ ଅଧ୍ୟାପକ ଡଃ ପଣ୍ଡା ଦୁଇଜଣ ଥିଲେ ଅନ୍ୟତମ । ତେଣୁ ଦୁଗ୍ଧ ବିଜ୍ଞାନ ପଢ଼ାଇବା ଲାଗି ଅଭିଜ୍ଞ ଅଧ୍ୟାପକ ଭାବରେ ଡକ୍ଟର ମହାନ୍ତି ଥିଲେ ଆମର ଆକର୍ଷଣ । ତାଛଡ଼ା ତାଙ୍କ ସହିତ ଆମର ଅନ୍ୟତମ ସମ୍ପର୍କଥିଲା । କାରଣ ଏହି ମହାବିଦ୍ୟାଳୟର ସେଥିଲେ ଜଣେ ପୁରାତନ ଛାତ୍ର । ୧୯୬୦ ମସିହାରେ ଏହି କଲେଜରୁ ଶିକ୍ଷା ସମାପ୍ତ କରି ସେ ଯୁକ୍ତରାଷ୍ଟ୍ର ଆମେରିକାରେ ଦୀର୍ଘ ପାଞ୍ଚବର୍ଷ ଅଧ୍ୟୟନ କରିବା ପରେ ପୁଣି ନିଜ ଦେଶକୁ ଫେରିଆସି ଏହି କଲେଜରେ ଗବେଷଣା ଓ ଅଧ୍ୟାପନା କରିବା ମୋ ପରି ଛାତ୍ର ମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା । ତାଙ୍କର ସୌମ୍ୟକାନ୍ତ ଚେହେରା, ରୁଚି ସମ୍ପନ୍ନ ବେଶ ପୋଷାକ, ସୁନ୍ଦର ବ୍ୟବହାର ଓ ଆମ୍ଭମାନଙ୍କ ପ୍ରତି ବଡ଼ଭାଇର ସ୍ନେହ ସମସ୍ତଙ୍କୁ ଆକର୍ଷିତ କରୁଥିଲା ।

ସେ ଯେତେବେଳେ ଆମ ଶ୍ରେଣୀରେ ଅଧ୍ୟାପନା ଆରମ୍ଭ କଲେ ଆମର ଅନ୍ୟ ଅଧ୍ୟାପକ ମାନଙ୍କ ତୁଳନାରେ ତାଙ୍କ ପଢ଼ାଇବା ଶୈଳୀ ଥିଲା ଅଲଗା । ଯୁକ୍ତରାଷ୍ଟ୍ର ଆମେରିକା ଭଳି ଏକ ବିଜ୍ଞାନୋନ୍ନତ ଦେଶର ଏକ କୃଷିଭିତ୍ତିକ ବିଶ୍ୱବିଦ୍ୟାଳୟରେ ଦୁଗ୍ଧ ବିଜ୍ଞାନ ଶିକ୍ଷା କଲାବେଳେ ସେ ତତ୍କାଳୀନ ଉନ୍ନତ ଶିକ୍ଷା ପ୍ରଣାଳୀ ସହିତ ଦୁଗ୍ଧ ବିଶୋଧନାଗାରର ଉନ୍ନତ ଯନ୍ତ୍ରପାତି ବ୍ୟବହାର କରିବା ଜାଣିଥିଲେ । ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟରେ ସେ ପ୍ରକାର ସୁବିଧା ସୁଯୋଗ ନଥିବା ସତ୍ତ୍ୱେ ସେ ସାଥିରେ ଆଣିଥିବା

ଉନ୍ନତ ମାନର ଦୁଗ୍ଧଜାତ ଦ୍ରବ୍ୟ ଉତ୍ପାଦନକ୍ଷମ ଯନ୍ତ୍ରପାତିର ଫଟୋଚିତ୍ର ଆମ୍ଭମାନଙ୍କୁ ଦେଖାଇ ସେସବୁର ବ୍ୟବହାର ବିଷୟକ ଶିକ୍ଷା ଦେଉଥିଲେ । ଡାଏରୀ ଟେକ୍ନୋଲୋଜି ପ୍ରାକ୍ଟିକାଲ୍ କ୍ଲାସ୍‌ରେ ଦୁଗ୍ଧଜାତ ଦ୍ରବ୍ୟ ପ୍ରସ୍ତୁତି ଓ ଛାତ୍ରମାନଙ୍କୁ ଚଖାଇବାର ଆନନ୍ଦ ଗବେଷଣାଗାରକୁ ପ୍ରାଣବନ୍ତ କରୁଥିଲା । ଆଜିକାଲି ଭଳି କଟକ ବା ଭୁବନେଶ୍ୱରରେ ସେତେବେଳେ ଆଇସ୍‌କ୍ରିମ୍ ମିଳିବା ସହଜସାଧ୍ୟ ନ ଥିଲା । ତେଣୁ ଆଇସ୍‌କ୍ରିମ୍ ତିଆରି କଲାବେଳେ ଖୁବ୍ ମଜା ହେଉଥିଲା । ଯୁକ୍ତରାଷ୍ଟ୍ର ଆମେରିକାର ଗବେଷଣାଲବ୍ଧ ଜ୍ଞାନ ସହିତ କ୍ଲାସ୍‌ରେ ପ୍ରତ୍ୟେକ ଛାତ୍ର ବୁଝିଲାଭଳି ଉନ୍ନତ ମାନର ଅଧ୍ୟାପନା ପ୍ରଣାଳୀ ତାଙ୍କୁ କୃଷି ବିଶ୍ୱବିଦ୍ୟାଳୟର ଜଣେ ସଫଳ ଅଧ୍ୟାପକ ଭାବେ ପ୍ରତିପାଦିତ କରିଥିଲା । ତାଙ୍କ ପରି ଜଣେ ଛାତ୍ରବତ୍ସଳ ଶିକ୍ଷକଙ୍କ ପ୍ରତି ଛାତ୍ରମାନଙ୍କର ସ୍ନେହଶ୍ରଦ୍ଧା ଓ ସମ୍ମାନ ଅତୁଟ ରହିଥିଲା । ଫୁଲନଖରରାସ୍ଥିତ କଟକ ଦୁଗ୍ଧଯୋଗାଣ ସଂସ୍ଥା, ନିମାପଡ଼ାର ଦୁଗ୍ଧଶୀତଳୀକରଣ କେନ୍ଦ୍ର ତଥା ଜଗତପୁରସ୍ଥ କୋକାକୋଲା ଫାକ୍ଟ୍ରିକୁ ଛାତ୍ରମାନଙ୍କୁ ବୁଲାଇନେଇ ଦୁଗ୍ଧ ପ୍ରକ୍ରିୟାକରଣ ବିଷୟରେ ସେ ଶିକ୍ଷା ଦେଉଥିଲେ । ତାଙ୍କ ଅଧୀନରେ ଜଣେ ଛାତ୍ର (ପ୍ରଶନ୍ନ କୁମାର ଦାସ) ଏମ୍.ଭି.ଏସ୍.ସି. ଗବେଷଣା କରୁଥିଲେ । ''ବିଭିନ୍ନ କିସମର ଖାଦ୍ୟ ପ୍ରଭାବରେ ଗୋପାକସ୍ଥଳିର ଜୈବ ଉପାଦାନରେ ପରିବର୍ତ୍ତନ'' ବିଷୟକ ଗବେଷଣା ଲାଗି ସେ ବିଶ୍ୱବିଦ୍ୟାଳୟ କୃଷି ଫାର୍ମର ବଳଦମାନଙ୍କ ପେଟରୁ ନମୁନା ସଂଗ୍ରହ କଲାବେଳେ ତାଙ୍କର ଅସାବଧାନତା ଯୋଗୁଁ ଗୋଟିଏ ବଳଦର ମୃତ୍ୟୁ ଘଟିଲା । ଫଳରେ କୃଷି କଲେଜର ଅଧ୍ୟକ୍ଷଙ୍କ ସମେତ ଫାର୍ମ ପରିଚାଳକ ସେହି ଛାତ୍ରଠାରୁ କ୍ଷତିପୂରଣ ଦାବିକଲେ । ମାତ୍ର ଛାତ୍ରବତ୍ସଳ ଡକ୍ଟର ମହାନ୍ତି ସେହି ଛାତ୍ରକୁ ପଛରେ ରଖି ଯାହା କିଛି ଘଟିଗଲା ସେଥିଲାଗି ନିଜକୁ ଦାୟୀକରି ସମସ୍ତ ଦାୟିତ୍ୱ ନିଜ ମୁଣ୍ଡକୁ ନେଇଗଲେ । ସେହି ଛାତ୍ରଙ୍କର ଗବେଷଣାରେ ବାଧା ସୃଷ୍ଟି ନହେଲାଭଳି ସମସ୍ତ ବ୍ୟବସ୍ଥା କରାଯିବା ଦ୍ୱାରା ସମଗ୍ର କୃଷି ବିଶ୍ୱବିଦ୍ୟାଳୟରେ ସେ ବର୍ଷର ସ୍ନାତକୋତ୍ତର ଛାତ୍ର ମାନଙ୍କ ମଧ୍ୟରେ ଏହି ଛାତ୍ର ପ୍ରସନ୍ନ କୁମାର ଦାଶଙ୍କର ସନ୍ଦର୍ଭ ଉଚ୍ଚକୋଟୀର ବିବେଚିତ ହୋଇଥିଲା । ଏବଂ ସେ ସ୍ୱର୍ଣ୍ଣପଦକ ହାସଲ କରିଥିଲେ । ଏବେ ସେ ଭାରତୀୟ ମେଷ ଗବେଷଣା ସଂସ୍ଥାର ଜଣେ ଉଚ୍ଚପଦସ୍ଥ ବୈଜ୍ଞାନିକ ଭାବେ କାର୍ଯ୍ୟକରୁଛନ୍ତି ।

ଡକ୍ଟର ମହାନ୍ତି ନିଜେ ଅନେକ ଗବେଷଣାରେ ବ୍ୟସ୍ତ ରହୁଥିଲେ । ଗୋଖାଦ୍ୟ ଭାବେ ଶାଳମଞ୍ଜି, ତେନ୍ତୁଳି ମଞ୍ଜି, ମହୁଲ ସିଠା, ଆମ୍ବଟାକୁଆ ଆଦି ପଦାର୍ଥର ବ୍ୟବହାର ବିଷୟରେ ସେ ଗବେଷଣା ଚଳାଇ ରଖିଥିଲେ । ସେଥିପାଇଁ ନକ୍ସା ପ୍ରସ୍ତୁତ କରି ଗୋଖାଦ୍ୟ ଗବେଷଣାଗାର ତିଆରି କରି ତହିଁରେ ବିଭିନ୍ନ ପରୀକ୍ଷା ନିରୀକ୍ଷା ଚଳାଇଥିଲେ । ଚିଲିକା ହ୍ରଦରୁ ସାମୁଦ୍ରିକ ଦଳ ସଂଗ୍ରହ କରି ଗୋଖାଦ୍ୟ ପ୍ରସ୍ତୁତିରେ ଦଳର ବ୍ୟବହାର କ୍ଷେତ୍ରରେ ପ୍ରଥମକରି ସେ ଗବେଷଣା ଆରମ୍ଭ କରିଥିଲେ । ଏତଦ୍‌ବ୍ୟତୀତ ଗୋରୁଗାଈଙ୍କୁ ଖୁଆଇବା ପୂର୍ବରୁ ତାଙ୍କ ଆବିଷ୍କୃତ ପଶୁଖାଦ୍ୟକୁ ମୂଷା, ଗିନିପିଗ୍, ଠେକୁଆ, ହାମ୍‌ଷ୍ଟର ଆଦି ସାନ ସାନ ଜୀବମାନଙ୍କୁ ଖୁଆଇ ସେମାନଙ୍କ ପ୍ରତିକ୍ରିୟା ଅନୁଧ୍ୟାନ କରିବାକୁ ସେ ଏକ କ୍ଷୁଦ୍ର

ପଶୁଶାଳା ସୃଷ୍ଟି କରିଥିଲେ । ସେହି ପଶୁଶାଳାରେ ସହସ୍ରାଧିକ ଜୀବ ରଖାଯାଇଥିଲେ । ସେମାନଙ୍କୁ ଦେଖିବା ପାଇଁ ଛାତ୍ର ମହଲରେ କୌତୂହଳ ସୃଷ୍ଟି ହେଉଥିଲା ।

ଡକ୍ଟର ମହାନ୍ତି କୃଷି ବିଶ୍ୱବିଦ୍ୟାଳୟରେ ଯୋଗଦେବା ପୂର୍ବରୁ କୃଷି ଓ ପଶୁଚିକିତ୍ସା ମହାବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରେ ଶତ୍ରୁତା ଲାଗି ରହିଥିଲା । ବେଳେ ବେଳେ ଦୁଇଗୋଷ୍ଠୀ ଛାତ୍ରଙ୍କ ମଧ୍ୟରେ ସଂଘର୍ଷ ଘଟି ପରିସ୍ଥିତି ନିୟନ୍ତ୍ରଣ ବାହାରକୁ ଚାଲି ଯାଉଥିଲା । ଡକ୍ଟର ମହାନ୍ତିଙ୍କ ପ୍ରଚେଷ୍ଟାରେ କୃଷି, ପଶୁଚିକିତ୍ସା, ବେସିକ୍ ସାଇନ୍ସ ଓ କୃଷି ଇଞ୍ଜିନିୟରିଂ କଲେଜ ମାନଙ୍କରେ ଅଧ୍ୟାପନାରତ ଯୁବଅଧ୍ୟାପକମାନଙ୍କ ମଧ୍ୟରେ ସମ୍ପର୍କ ସୃଷ୍ଟି କରାଯାଇ ଏକ କ୍ଲବ ଗଠିତ ହେଲା । ଏହାର ନାମ ରହିଲା ''ମୂର୍ଚ୍ଛନା'' । ଏହି କ୍ଲବ ଜରିଆରେ ଛାତ୍ର ଓ ଯୁବ ଅଧ୍ୟାପକମାନେ ସଙ୍ଗୀତ, ନୃତ୍ୟ, ଅଭିନୟ ଓ ବଣଭୋଜି ଆଦି କରି ପରସ୍ପର ବିଦ୍ୱେଷ ଭାବକୁ ପରିହାର କରିଥିଲେ । ଡକ୍ଟର ମହାନ୍ତି ଥିଲେ ''ମୂର୍ଚ୍ଛନା''ର ପ୍ରଥମ ସଭାପତି ।

ସେ ଆମ କଲେଜରେ ଯୋଗଦେବା ପୂର୍ବରୁ ପରୀକ୍ଷାରେ କପି କରିବା ଏକ ମାମୁଲି ବ୍ୟାପାର ଥିଲା । ତେଣୁ ଶ୍ରେଣୀରେ ପଢ଼ାଇଲାବେଳେ ସେ ଛାତ୍ରମାନଙ୍କୁ ଯୁକ୍ତରାଷ୍ଟ୍ର ଆମେରିକାର ଯୁବଗୋଷ୍ଠି ମଧ୍ୟରେ ସାଧୁତା ଓ ସଚ୍ଚୋଟତା ବିଷୟରେ କଥା କହି ପ୍ରଭାବିତ କରିବାକୁ ଚେଷ୍ଟା ଚଳାଇଥିଲେ । ବାର୍ଷିକ ପରୀକ୍ଷାରେ ସେ ଯେଉଁ ହଲ୍‌ରେ ପରିଦର୍ଶକ ଭାବେ ରହୁଥିଲେ ସେଠାରେ କପି କରିବା ଅସମ୍ଭବ ବୋଧ ହେଉଥିଲା । ପଶୁଚିକିତ୍ସା ମହାବିଦ୍ୟାଳୟରେ ତାଙ୍କର ଅଳ୍ପଦିନ ରହଣିକାଳ ଭିତରେ ପରୀକ୍ଷାରେ କପି କରିବା ପ୍ରାୟତଃ ବନ୍ଦ ହୋଇ ଯାଇଥିଲା ।

ସତୁରି ଦଶକରେ ଏହି ମହାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କ ପକ୍ଷରେ ସରକାରୀ ଚାକିରୀ ପାଇବା ଦୁରୁହ ବ୍ୟାପାର ଥିଲା । କାରଣ ସେତେବେଳେ ବିଭାଗୀୟ ପଦବୀଗୁଡ଼ିକରୁ ଅବସର ଗ୍ରହଣ କରିବା ବ୍ୟକ୍ତିମାନଙ୍କର ସଂଖ୍ୟା କମ୍ ଥିଲା । ଏବଂ ଉପଖଣ୍ଡ ପଶୁଚିକିତ୍ସା ଅଧିକାରୀ ଓ କନିଷ୍ଠ ପଶୁଚିକିତ୍ସକ ପଦବୀ ସୃଷ୍ଟି ହୋଇ ନଥିଲା । ତେଣୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କ ମଧ୍ୟରୁ ପ୍ରାୟ ଅର୍ଦ୍ଧେକ ଛାତ୍ରଙ୍କୁ ସରକାରୀ ଚାକିରୀ ପାଇବାଲାଗି ବର୍ଷ ବର୍ଷ ଧରି ଅପେକ୍ଷା କରିବାକୁ ପଡୁଥିଲା । ଡକ୍ଟର ମହାନ୍ତି ତାଙ୍କର ଛାତ୍ରମାନଙ୍କୁ ଏ ଦିଗରେ ଯଥେଷ୍ଟ ସାହାଯ୍ୟ କରିଥିଲେ । କାରଣ ପଶୁଚିକିତ୍ସା ମହାବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ଦୁଗ୍ଧ ପ୍ରକ୍ରିୟାକରଣ, ଦୁଗ୍ଧ ଉତ୍ପାଦନ ବା ଦୁଗ୍ଧବିଜ୍ଞାନର ବିଭିନ୍ନ ଶାଖା ମାନଙ୍କରେ ଉଚ୍ଚଶିକ୍ଷା ପାଇବା ବିଷୟରେ ସନ୍ଦିହାନ ଥିଲେ । ଯୁକ୍ତରାଷ୍ଟ୍ର ଆମେରିକାରୁ ଦୁଗ୍ଧ ବିଜ୍ଞାନରେ ଉଚ୍ଚ ଶିକ୍ଷା ଲାଭ କରି ଭାରତୀୟ ଦୁଗ୍ଧ ଗବେଷଣା ପ୍ରତିଷ୍ଠାନ ତଥା ଦୁଗ୍ଧବିଜ୍ଞାନ ମହାବିଦ୍ୟାଳୟମାନଙ୍କରେ ତାଙ୍କର କେତେଜଣ ବନ୍ଧୁ ଅଧ୍ୟାପକଭାବେ ନିଯୁକ୍ତି ପାଇଥିବାରୁ ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟର ବହୁ ଛାତ୍ରଙ୍କୁ ଡକ୍ଟର ମହାନ୍ତି ସେସବୁ ଅନୁଷ୍ଠାନରେ ଉଚ୍ଚଶିକ୍ଷା ପାଇବା ଲାଗି ଚିଠି ଲେଖି

ପଠାଇ ଦେଇଥିଲେ । ତାଙ୍କର ଅଧିକାଂଶ ଛାତ୍ର ଦୁଗ୍ଧଉତ୍ପାଦକ ସଂଘମାନଙ୍କରେ ଉଚ୍ଚ ପଦବୀ ପାଇଁ ଦେଶର ବିଭିନ୍ନ ରାଜ୍ୟରେ ପ୍ରତିଷ୍ଠିତ ହୋଇପାରିଛନ୍ତି । ଏହାଛଡ଼ା ତାଙ୍କର କେତେକ ଛାତ୍ର ଭାରତୀୟ ଗବେଷଣାସେବା (Indian Research Service) ରେ ବୈଜ୍ଞାନିକ ଭାବେ ଯୋଗଦେବାର ସୁଯୋଗ ପାଇଥିଲେ । ଫଳରେ ଏବେ ମଧ୍ୟ ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟର ବହୁ ଛାତ୍ର I.R.S (ଆଇ.ଆର୍.ଏସ୍) ଚାକିରୀରେ ମୁତୟନ ହୋଇ ଦେଶର ବିଭିନ୍ନ ସ୍ଥାନରେ କାର୍ଯ୍ୟରତ ଅଛନ୍ତି ।

୧୯୭୦ ମସିହାରେ ଗୁଜୁରାଟର ଆନନ୍ଦଠାରେ ସପ୍ତମ ଦୁଗ୍ଧବିଜ୍ଞାନ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଲା । ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ ପକ୍ଷରୁ ଡକ୍ଟର ମହାନ୍ତି ସେହି ଅଧିବେସନରେ ଯୋଗଦେବାକୁ ଗଲେ ଓ ''ଜାତୀୟ ଦୁଗ୍ଧ ବନ୍ୟା ଯୋଜନା'' ଆଲୋଚନା ଚକ୍ରରେ ଭାଗନେଇ ସେହି ଯୋଜନାରେ ଓଡ଼ିଶା ରାଜ୍ୟକୁ ଅନ୍ତର୍ଭୁକ୍ତ କରିବା ଉପରେ ସେ ଜୋର ଦେଇଥିଲେ । ଫଳରେ ୧୯୭୫ ମସିହାଠାରୁ ଓଡ଼ିଶାର କଟକ, ପୁରୀ, ସମ୍ବଲପୁର ଓ କେନ୍ଦୁଝର ଜିଲାମାନଙ୍କରେ ଏଥିଲାଗି ସର୍ଭେ କାର୍ଯ୍ୟ ଆରମ୍ଭ ହେବାକୁ ସ୍ଥିର ହେଲା । ତତ୍କାଳୀନ ପଶୁଚିକିତ୍ସା ବିଭାଗର ନିର୍ଦ୍ଦେଶକ ଡକ୍ଟର ଗଣେଶ୍ୱର ବିଶ୍ୱାଳ ଏଥିଲାଗି ତାଙ୍କର ଆବଶ୍ୟକତା ଅନୁଭବ କରି କଲେଜରୁ ତାଙ୍କୁ ବିଭାଗକୁ ଫେରାଇ ନେଲେ । ମାତ୍ର ଦୁଇବର୍ଷ ଦଶମାସକାଳ ପଶୁଚିକିତ୍ସା ମହାବିଦ୍ୟାଳୟରେ ଗବେଷଣା ଓ ଅଧ୍ୟାପନା କାର୍ଯ୍ୟ କରି ସେ ଛାତ୍ର ଓ ଅଧ୍ୟାପକ ମହଲରେ ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ । ପଶୁପାଳନ ବିଭାଗକୁ ଫେରିଆସି ଦୁଗ୍ଧ ଉତ୍ପାଦନ, କୁକ୍କୁଟ ପାଳନ ଓ ଗୋଖାଦ୍ୟ ଉତ୍ପାଦନ କ୍ଷେତ୍ରରେ ସେ ଯଥେଷ୍ଟ କାର୍ଯ୍ୟ କରିଛନ୍ତି ।

ପରିଶେଷରେ ପଶୁପାଳନ ବିଭାଗର ନିର୍ଦ୍ଦେଶକ ଭାବେ ସେ ଅଢ଼େଇବର୍ଷ କାର୍ଯ୍ୟ କରିବା ଭିତରେ ପଶୁଚିକିତ୍ସା ମହାବିଦ୍ୟାଳୟ ସହିତ ବହୁଧା ସଂଶ୍ଳିଷ୍ଟ ଥିଲେ । ତାଙ୍କ ପ୍ରଚେଷ୍ଟାରେ ପଶୁଚିକିତ୍ସା ମହାବିଦ୍ୟାଳୟର ବାର୍ଷିକ ଛାତ୍ରସଂଖ୍ୟା ୬୦ ରୁ ୮୦ କୁ ବୃଦ୍ଧି କରା ଯାଇଥିଲା ।

ଏବେ ଏହି ମହାବିଦ୍ୟାଳୟରେ ତାଙ୍କର ଦଶବାରଜଣ ଛାତ୍ର ଅଧକ୍ଷ, ଅଧ୍ୟାପକ ବା ଗବେଷକ ଭାବେ କାର୍ଯ୍ୟରତ ଅଛନ୍ତି । ଏବେ ମଧ୍ୟ ସେ ଆମ୍ଭ ମାନଙ୍କର ଶିକ୍ଷାଦାତା ଗୁରୁ ଭାବେ ଅଶେଷ ସ୍ନେହ, ଆଦର ଓ ସମ୍ମାନର ଅଧିକାରୀ । ଚାକିରୀରୁ ଅବସର ନେବା ପରେ ସେ 'ଉତ୍କଳ ସମ୍ମିଳନୀ'ରେ ଯୋଗଦେଇ ଓଡ଼ିଆଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଲାଗି କାର୍ଯ୍ୟ କରୁଛନ୍ତି । ତାଙ୍କର ଉଦ୍ୟମ ଯେ ଫଳପ୍ରଦ ହେବ ଏଥିରେ ଆମର ସନ୍ଦେହ ନାହିଁ । ଈଶ୍ୱର ତାଙ୍କୁ ଦୀର୍ଘଜୀବୀ କରନ୍ତୁ ଓ ସେ ଯଶସ୍ୱୀ ହୁଅନ୍ତୁ, ଏହାହିଁ କାମନା ।

*ମୁଖ୍ୟ ଅଧ୍ୟାପକ, କୁକ୍କୁଟ ବିଜ୍ଞାନ ଓ ପୂର୍ବତନ ଛାତ୍ରକଲ୍ୟାଣ ଡିନ୍, ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।*



# ପ୍ରଶାସନିକ କ୍ଷେତ୍ରରେ ଗୁରୁପ୍ରସାଦ

ଡାକ୍ତର ଅଶ୍ୱିନୀ କୁମାର ମହାନ୍ତି

ଏହି ପାର୍ଥିବ ସଂସାରକୁ ବହୁତ ଲୋକ ଆସନ୍ତି ଓ ସମୟକ୍ରମେ ବିଦାୟ ନିଅନ୍ତି । କିନ୍ତୁ ଖୁବ କମ ଲୋକ ନିଜର ବୁଦ୍ଧି, ବିବେକ, ନୀତି, ଆତ୍ମସମ୍ମାନ ଓ ସ୍ୱାଭିମାନ ତଥା ଜ୍ଞାନକୌଶଳ ବଳରେ ସମାଜରେ ପ୍ରତିଷ୍ଠିତ ହେବାସହିତ ସମାଜର କିଛି ଉପକାର କରିଥାଆନ୍ତି । ଏହିପରି ଜଣେ ଯୋଗଜନ୍ମା ବ୍ୟକ୍ତି ହେଉଛନ୍ତି ସତଷଠି ବର୍ଷ ବୟସ୍କ ଡକ୍ଟର ଗୁରୁପ୍ରସାଦ ମହାନ୍ତି ।

ଏକ ଗ୍ରାମ୍ୟପରଂପରାରୁ ତାଙ୍କର ଶୈଶବ, ବାଲ୍ୟାବସ୍ଥା ଓ କୈଶୋରର କିଛିକାଳ ଅତିବାହିତ ହେଲାପରେ ରେଭେନ୍‌ସା କଲେଜ, ପଶୁଚିକିତ୍ସା ମହାବିଦ୍ୟାଳୟ ଓ ସୁଦୂର ଆମେରିକାର ଦୁଇଟି ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବାର ସୁଯୋଗ ତାଙ୍କୁ ମିଳିଥିଲା ବିଂଶ ଶତାବ୍ଦୀର ମଧ୍ୟଭାଗରେ । ଏହାପରେ ସେ ଆଉ ପଛକୁ ଫେରିନାହାନ୍ତି -- ଦେଶ ବିଦେଶର ଜଣେ ବିଖ୍ୟାତ ଦୁଗ୍ଧ ବିଜ୍ଞାନୀ ତଥା ପ୍ରାଣୀପୁଷ୍ଟିତତ୍ତ୍ୱବିତ୍ ଭାବରେ ବୈଜ୍ଞାନିକ ଭାବଧାରାରେ ନିଜକୁ ପ୍ରତିଷ୍ଠିତ କରିଚାଲିଛନ୍ତି । ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟରେ ଅଧ୍ୟାପନା କରୁଥିବାବେଳେ ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା ୧୯୬୯-୭୦ ମସିହାରେ ସେତେବେଳେ ମୁଁ ତୃତୀୟ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କରୁଥାଏ । ସେତେବେଳେ ସେ ପଶୁଚିକିତ୍ସା ମହାବିଦ୍ୟାଳୟର ଜଣେ ଛାତ୍ରବତ୍ସଳ ଓ ଉତ୍ତମ ଅଧ୍ୟାପକ ଭାବରେ ପ୍ରତିଷ୍ଠା ଲାଭ କରିଥିଲେ ।

ପରବର୍ତ୍ତୀ ଅବସ୍ଥାରେ ସେ ଓଡ଼ିଶା ସରକାରଙ୍କର ବିଭିନ୍ନ ଉଚ୍ଚପଦବୀରେ ଥିଲାବେଳେ ତାଙ୍କର କାର୍ଯ୍ୟକଳାପ ଓ ଶାସନ ପଦ୍ଧତି ଅନ୍ୟମାନଙ୍କ ପାଇଁ ଅନୁକରଣୀୟ ଥିଲା । ଶେଷରେ ଡକ୍ଟର ମହାନ୍ତି ୧୯୯୪ ଫେବୃୟାରୀରୁ ପଶୁଚିକିତ୍ସା ଓ ପଶୁପାଳନ ବିଭାଗର ସର୍ବୋଚ୍ଚ ପଦବୀରେ ନିର୍ଦ୍ଦେଶକ ଭାବରେ ଅଢ଼େଇବର୍ଷରୁ ଊର୍ଦ୍ଧ୍ୱକାଳ କାମ କଲାପରେ ୧୯୯୬ ଅକ୍ଟୋବର ମାସରେ ଅବସର ଗ୍ରହଣ କଲେ । ତାଙ୍କ ପୂର୍ବରୁ ଏହି ବିଭାଗର ନିର୍ଦ୍ଦେଶକ ପଦବୀ ସର୍ବଭାରତୀୟ ସେବା ଅଧିକାରୀ ମାନଙ୍କଦ୍ୱାରା ଅଧିକୃତ ହେଉଥିଲା । ଡକ୍ଟର ମହାନ୍ତି ନିର୍ଦ୍ଦେଶକ ହେବାର ପାଖାପାଖି ଦୁଇବର୍ଷ ପୂର୍ବରୁ ମୁଁ

ନନ୍ଦନକାନନରୁ ଆସି ନିର୍ଦ୍ଦେଶାଳୟରେ ସୂଚନା ଅଧିକାରୀ ଭାବରେ କାର୍ଯ୍ୟକରୁଥାଏ । ମୋ ଚାକିରୀ ଜୀବନରେ ନନ୍ଦନକାନନରେ ଦଶବର୍ଷରୁ ଉର୍ଦ୍ଧ୍ୱକାଳ ଜଙ୍ଗଲ ବିଭାଗର ସର୍ବଭାରତୀୟ ସେବା ଅଧିକାରୀମାନଙ୍କ ପାଖରେ କାର୍ଯ୍ୟ କଲାପରେ, ନିଜ ବିଭାଗରେ ମଧ୍ୟ ସର୍ବଭାରତୀୟ ସେବା ଅଧିକାରୀମାନଙ୍କ ନିର୍ଦ୍ଦେଶରେ କାମ କରିବାକୁ ପଡ଼ିଥିଲା । ଜଣେ ପଶୁଚିକିତ୍ସାବିତ୍ ହିସାବରେ ଗୁରୁବାବୁ ନିର୍ଦ୍ଦେଶକ ହେବାପରେ ତାଙ୍କ ନିର୍ଦ୍ଦେଶରେ କାମ କରିବାର ସୁଯୋଗ ମିଳିଲା । ସେ ପଶୁଚିକିତ୍ସା ଓ ପଶୁପାଳନ ବିଭାଗର ନିର୍ଦ୍ଦେଶକ ଭାବରେ ୨ବର୍ଷ ୮ ମାସ କାର୍ଯ୍ୟ ସମ୍ପାଦନ କରି ଅବସର ନେଲାପରେ ମଧ୍ୟ ମୁଁ ସେହି ସୂଚନା ଅଧିକାରୀ ଭାବରେ ଆଉ ୨ବର୍ଷ ରହିଥିଲି ।

ମୋର ସୂଚନା ଅଧିକାରୀ ଭାବରେ ଯାହା କାର୍ଯ୍ୟକଳାପ ତାହା ମୁଖ୍ୟତଃ ନିର୍ଦ୍ଦେଶକ ଏବଂ ବିଭାଗୀୟ ମନ୍ତ୍ରୀଙ୍କ ନିର୍ଦ୍ଦେଶରେ ପରିଚାଳିତ ହେଉଥିଲା । ଏହି ସମୟ ଭିତରେ ମୁଁ ଗୁରୁବାବୁଙ୍କୁ ଅତି ନିକଟରୁ ନିରୀକ୍ଷଣ କରିଛି, ତାଙ୍କର କାମକରିବାର ଶୈଳୀ, ଦକ୍ଷତା, ବିଚାରଧାରା ତଥା ଶାସନପଦ୍ଧତିକୁ ବାରମ୍ବାର ଅନୁଶୀଳନ କରିଛି । ସବୁଠାରେ ଏକ ନୂତନତ୍ୱ ଓ ଅଲଗା ବିଚାରଧାରାର ଶାସନପଦ୍ଧତି ଦେଖିବାକୁ ମିଳିଛି । ଅନେକ ସମୟରେ ତାଙ୍କ ସାଙ୍ଗରେ ବିଭିନ୍ନ ପ୍ରସଙ୍ଗରେ ମତଭେଦ ହୋଇଛି କେବଳ କଡ଼ା ଶାସନର ବ୍ୟତିକ୍ରମ ଯୋଗୁ । କାରଣ ସେ ହେଉଛନ୍ତି କ୍ଷମାର ସାଗର । ତାଙ୍କ ଭାଷାରେ ''ଦଣ୍ଡିବା ଶକ୍ତି ଯାର ଥାଇ, ସେ ପୁଣି କ୍ଷମା ଆଚରଇ''।

ମୁଁ ତ ୧୨ ବର୍ଷରୁ ଉର୍ଦ୍ଧ୍ୱକାଳ ସର୍ବଭାରତୀୟ ସେବା ଅଧିକାରୀ ମାନଙ୍କ ଅଧୀନରେ ପ୍ରତ୍ୟକ୍ଷଭାବରେ କାମ କରିଛି, ଏବଂ ପରେ ଗୁରୁବାବୁଙ୍କ ପରେ ଜଣେ ବୈଷୟିକ ଜ୍ଞାନ ସମ୍ପନ୍ନ ବୈଜ୍ଞାନିକଙ୍କ ଅଧୀନରେ ପ୍ରତ୍ୟକ୍ଷଭାବରେ କାମ କରିଛି । ମୁଁ ଏବେ ସର୍ବଭାରତୀୟ ଜ୍ଞାନ ସଂପନ୍ନ ବୈଜ୍ଞାନିକଙ୍କ ଶାସନ ପଦ୍ଧତିକୁ ତୁଳନା କରୁଛି । ଶାସନ ପଦ୍ଧତିରେ ଯେଉଁ ଅତୁଳନୀୟ ନିଷ୍ଠା, ନୈତିକତା ଓ ବିଭାଗ ସଂପର୍କୀୟ ଜ୍ଞାନ ଗୁରୁବାବୁଙ୍କଠାରେ ଥିଲା ସେସବୁ କେବେ ପ୍ରଶାସନିକ ତାଲିମପ୍ରାପ୍ତ ସର୍ବଭାରତୀୟ ସେବା ଅଧିକାରୀ ମାନଙ୍କଠାରୁ ଆଶା କରାଯାଇ ପାରେନା । ସବୁ କାମଗୁଡ଼ିକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କରି ତାହାକୁ ଜନହିତକର ଓ ଲୋକାଭିମୁଖୀ କରିବାକୁ ସେ ସର୍ବଦା ଚେଷ୍ଟିତ ଥିଲେ । ଶାସନର ସଂଜ୍ଞା ତାଙ୍କ ପାଖରେ ଅଲଗାଥିଲା । ସେ କହନ୍ତି ''ଆରେ କାହାକୁ ଶାସନ କରିବା ? ଏ ସମସ୍ତେ ତ ମୋରି ପରିବାରର, କିଏ ମୋର ଭାଇ, କିଏ ମୋର ସାଙ୍ଗ, କିଏବା ପୁଅଝିଅ । ଏହିଭଳି ଲୋକଙ୍କୁ ଧରି ଏ ବିଭାଗ ଚାଲିଛି । ଏମାନଙ୍କୁ କଣ ଚାବୁକମାରି ଶାସନ କରିବାକୁ ମୁଁ ଏ ଆସନରେ ବସିଛି'' ? ଜନସାଧାରଣ ଚାଷୀ ତଥା ଗରିବ ପଶୁପାଳକମାନେ କିପରି ଉପକୃତ ହେବେ ସେହିଭଳି ଶାସନ ଖସଡ଼ା ତିଆରି କରି ମୋ

ପାଖରେ ରଖ ଏବଂ ତଦନୁଯାୟୀ କାମ କର ।'' ଏହିପରି ଚିନ୍ତାଧାରା ଖୁବ୍ କମ ଶାସକଙ୍କ ପାଖର ଥାଏ । ସେ ବିଭାଗର ସର୍ବୋଚ୍ଚ ଶାସକ ଭାବରେ କେବେ ଗର୍ବ ବା ଅହଂକାର କରିବାର ମୁଁ ଦେଖିନାହିଁ । ଗାଡ଼ି ନ ହେଲେ ଯେମିତି ସାହେବ ସବୁ ଦପ୍ତରକୁ ଆସିପାରନ୍ତି ନାହିଁ, ତାହା ତାଙ୍କ ପାଖରେ ନଥିଲା, ଦିନେ ଦିନେ ନିଜ ସ୍କୁଟରରେ ବା ରିକ୍ସାରେ ସେ ଆସି ଦପ୍ତରରେ ପହଞ୍ଚୁଥିଲେ । କିନ୍ତୁ ଗାଡ଼ିକୁ ଅନ୍ୟକିଛି ସରକାରୀ କର୍ମରେ ନିୟୋଜିତ କରିଦେଉଥିଲେ କିମ୍ବା କୌଣସି ସହକର୍ମୀର ବିଭାଗୀୟ କାର୍ଯ୍ୟରେ ଗାଡ଼ି ଦରକାର ହେଲେ ନିଜ ଗାଡ଼ି ଦେଇ କାମ କରାଉଥିଲେ । ଆଉ ଗୋଟିଏ କଥା ମୁଁ ଲକ୍ଷ୍ୟ କରିଛି – ତାହାହେଲା ତାଙ୍କ ଶାସନ ପଦ୍ଧତିରେ ସ୍ୱାଭିମାନ ଓ ଆତ୍ମସମ୍ମାନକୁ ସେ ସବୁବେଳେ ଅଗ୍ରାଧିକାର ଦେଇ ଚାଲୁଥିଲେ । ସତ୍ୟ ଏବଂ ନୀତିଗତ ନିଷ୍ପତ୍ତି ପାଇଁ ସେ କାହାପାଖରେ ମୁଣ୍ଡ ନୁଆଁଇବା ବା ଆତ୍ମସମ୍ମାନକୁ ଜଳାଞ୍ଜଳି ଦେଇ କାର୍ଯ୍ୟକରିବା ତାଙ୍କ ପକ୍ଷେ କଷ୍ଟକର ବ୍ୟାପାର ଥିଲା । ଏପରିକି ରାଜ୍ୟର ମୁଖ୍ୟ ଶାସନ ସଚୀବ ଓ ମନ୍ତ୍ରୀ ମହୋଦୟଙ୍କ ଆଗରେ ସତ୍ୟ, ନିଷ୍ଠା ଓ ନୀତିଗତ ନିଷ୍ପତ୍ତି ନେବାରେ ସାଲିସ କରିବା ପରିବର୍ତ୍ତେ ଦୃଢ଼ ଯୁକ୍ତିବାଢ଼ି ସେ କାମ ହାସଲ କରୁଥିଲେ ।

ଗୁରୁବାବୁଙ୍କ ବିଚାରଧାରା ଅତି ଉନ୍ନତ । ସେପୁଣି ବୈଜ୍ଞାନିକ ଭାବରେ ପ୍ରତିଷ୍ଠିତ । ଏହାଛଡ଼ା ଉଦାରତା, କ୍ଷମାଶୀଳତା ଓ ଜାତୀୟତାବୋଧ ଭାବ ତାଙ୍କ ଶାସନ ପଦ୍ଧତିରେ ପରିଲକ୍ଷିତ ହେଉଥିଲା । ବିଭାଗର ତଳିଆ କର୍ମଚାରୀଙ୍କଠାରୁ ଅଫିସର ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ଗୋଟିଏ ପରିବାରର ସଦସ୍ୟ ଭାବରେ ଗ୍ରହଣ କରି, ସେହି ପରିବାରର ମୁଖ୍ୟ ହିସାବରେ ଯେଉଁ ପ୍ରକାର ଶାସନର ଆବଶ୍ୟକତା ସେହିପ୍ରକାର ଶାସନ ପ୍ରଦାନ କରୁଥିଲେ । ବିଭାଗୀୟ ନିର୍ଦ୍ଦେଶକ, ଉପନିର୍ଦ୍ଦେଶକ ଓ ଜିଲ୍ଲା ମୁଖ୍ୟ ଅଧିକାରୀମାନେ ତାଙ୍କ ସହିତ ପଶୁଚିକିତ୍ସା ମହାବିଦ୍ୟାଳୟରେ ପଢୁଥିବାବେଳେ ଯେପରି ସାଙ୍ଗ ସାଥୀ ବା ସହପାଠୀ ଭାଇ ଭାବେ ଚଳୁଥିଲେ, ବିଭାଗର ବିଭିନ୍ନ ପଦପଦବୀରେ ଥିଲେ ମଧ୍ୟ ସେହି ସମ୍ପର୍କ ସେମାନଙ୍କ ସହିତ ଅତୁଟ ରହିଥିଲା । ସେ କେବଳ ସେମାନଙ୍କ ନାମଧରି ଡାକୁଥିଲେ ଓ ସମ୍ବୋଧନରେ ତୁମେ ଆପଣର ବ୍ୟବହାର ସେମାନଙ୍କ ସହିତ ନଥିଲା । ନିଜର ଅନ୍ତରଙ୍ଗ ବନ୍ଧୁ କିମ୍ବା ସାନଭାଇ ପରି ଆକଟ କରି ସ୍ନେହ ବନ୍ଧନ ମଧ୍ୟରେ ଜୋର କରି ବିଭାଗୀୟ କାର୍ଯ୍ୟ ଆଦାୟ କରୁଥିଲେ । ଗୁରୁବାବୁଙ୍କ ଜାତୀୟତା ଭାବ ଏବଂ ଓଡ଼ିଆତ୍ୱ, ତାଙ୍କ ଶାସନପଦ୍ଧତିରେ ପ୍ରତିଫଳିତ ହେଉଥିଲା । ତାଙ୍କ ନିର୍ଦ୍ଦେଶାଳୟର ସମୟରେ ସମସ୍ତ ନଥିପତ୍ର ଓଡ଼ିଆ ଭାଷାରେ ଲିପିବଦ୍ଧ କରିବା ପାଇଁ ସେ ନିୟମ କରିଥିଲେ ଏବଂ ଓଡ଼ିଆ ଭାଷାରେ ସେସବୁ ତାଙ୍କୁ ପେଶ୍ କରାଯାଉଥିଲା । ସେତେବେଳେ ହୁଏତ ପଶୁପାଳନ ଓ ପଶୁଚିକିତ୍ସା ନିର୍ଦ୍ଦେଶାଳୟ ହିଁ ଓଡ଼ିଶାର ଏକମାତ୍ର ନିର୍ଦ୍ଦେଶାଳୟ

ଯାହାର ସମସ୍ତ ନଥିପତ୍ର ଓଡ଼ିଆ ଭାଷାରେ କରାଯାଇଥିଲା । ବିଭାଗର ସାମଗ୍ରୀକ ଉନ୍ନତି କଳ୍ପେ ତାଙ୍କର ଚିନ୍ତାଧାରା ଓ ବିଚାରଶୈଳୀ ଅନନ୍ୟଥିଲା । ଓଡ଼ିଶାକୁ ଦୁଗ୍ଧଉତ୍ପାଦନ, ମାଂସ ଓ ଅଣ୍ଡା ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବୀ କରିବା ପାଇଁ ତାଙ୍କଦ୍ୱାରା ତିଆରି ହୋଇଥିବା ପ୍ରକଳ୍ପ ସବୁର ସ୍ୱାତନ୍ତ୍ର୍ୟ ରହିଥିଲା । ତାଙ୍କୁ ଦେଖାକରିବାକୁ କେହି ଦୂରଦୁରାନ୍ତରୁ ଆସଲେ ସେ ତତ୍କ୍ଷଣାତ ଦେଖାକରିବାକୁ ସୁଯୋଗଦେଇ ଆବଶ୍ୟକୀୟ ସାହାଯ୍ୟ ଯୋଗାଇ ଦେଉଥିଲେ । ପ୍ରଶାସନିକ ବିଭାଗରୁ ତଥା ଓଡ଼ିଶା ପଶୁଚିକିତ୍ସା ମହାବିଦ୍ୟାଳୟରୁ ଏ ବିଭାଗର ନିର୍ଦ୍ଦେଶକ ଭାବେ ଆସିଥିବା କୌଣସି ଲୋକ ଗୁରୁବାବୁଙ୍କ ପରି ଲୋକପ୍ରିୟ ନଥିବା ପରି ମନେହୁଏ । କାରଣ ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଆସୁଥିବା ପ୍ରତ୍ୟେକ ବିଭାଗୀୟ କର୍ମଚାରୀ ତାଙ୍କୁ ଦେଖାକରି ନିଜର ହାରିଗୁହାରୀ ଜଣାଇବାର ସୁଯୋଗ ପାଉଥିଲେ ଓ ସେମାନଙ୍କର ଅସୁବିଧା ଦୂର ହେଉଥିଲା । ତାଙ୍କର ଆମାୟିକ ଓ ସ୍ନେହଶୀଳ ବ୍ୟକ୍ତିତ୍ୱ ତାଙ୍କ ଶାସନ ପ୍ରଣାଳୀକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ଯାହା ଫଳରେ ସାଧାରଣ ଲୋକଙ୍କ ସୁଖଦୁଃଖରେ ସେ ଭାଗିଦାର ଥିଲେ । ଗୁରୁବାବୁଙ୍କର ନିଜସ୍ୱ ସୁଗୁଣସବୁ ତାଙ୍କ ଶାସନପଦ୍ଧତିକୁ ପ୍ରଭାବିତ କରି ତାଙ୍କୁ ଜଣେ ଆଦର୍ଶ ପ୍ରଶାସକ ଭାବରେ ପ୍ରତିଷ୍ଠିତ କରିପାରିଥିଲା ।

*ସୁଲୋଚନା ଭବନ, କାଜିବଜାର, କଟକ - ୧*



# ନିର୍ଦ୍ଦେଶକ : ଗୁରୁପ୍ରସାଦ ମହାନ୍ତି

ଡାକ୍ତର ଯୁଧିଷ୍ଠିର ପଣ୍ଡା

ଡଃ. ଗୁରୁପ୍ରସାଦ ମହାନ୍ତି ତା ୨୦ । ୪ । ୧୯୯୪ ରୁ ତା ୩୧। ୧୦ । ୯୬ ପର୍ଯ୍ୟନ୍ତ ପଶୁପାଳନ ଓ ପଶୁଚିକିତ୍ସା ନିର୍ଦ୍ଦେଶାଳୟର ବିଭାଗୀୟ ସ୍ଥାୟୀ ନିର୍ଦ୍ଦେଶକ ଭାବେ କାର୍ଯ୍ୟ ସଂପାଦନା କରିଥିଲେ । ତତ୍‌ପୂର୍ବରୁ ଦୀର୍ଘ ୨୬ ବର୍ଷ ଧରି ବିଭାଗୀୟ ବରିଷ୍ଠ ପ୍ରଥମ ଶ୍ରେଣୀ ଅଧିକାରୀରୂପେ ଡାଏରି ଟେକ୍ନୋଲୋଜିଷ୍ଟ ଉପନିର୍ଦ୍ଦେଶକ (ପ୍ରାଣୀପୁଷ୍ଟି ତତ୍ତ୍ୱ) ଓ ଯୁଗ୍ମ ନିର୍ଦ୍ଦେଶକ ଦାୟିତ୍ୱ ସୁଚାରୁରୂପେ ତୁଲାଇଥିଲେ । ଆମେରିକାରୁ ଉଚ୍ଚଶିକ୍ଷା ପାଇ ୧୯୬୯ ମସିହା ଜାନୁୟାରୀ ପହିଲାରେ ସେ ଓଡ଼ିଶା ପଶୁଚିକିତ୍ସା ଓ ପଶୁପାଳନ ମହାବିଦ୍ୟାଳୟରେ ଗବେଷକ ଭାବେ ଯୋଗଦେଇ ସେଠାରେ ଗବେଷଣା ସହ ଅଧ୍ୟାପନା କାର୍ଯ୍ୟରେ ନିୟୋଜିତ ହୋଇଥିଲେ ଏବଂ ସେହି ସମୟରେ ପ୍ରାଣୀ ପୁଷ୍ଟିତତ୍ତ୍ୱ ବିଜ୍ଞାନାଗାରର ପୁନର୍ଗଠନ କାର୍ଯ୍ୟ ହାତକୁ ନେଇଥିଲେ । ପରବର୍ତ୍ତୀ କାଳରେ ଓଡ଼ିଶା ସରକାରଙ୍କ ଦୁଗ୍ଧଯୋଗାଣ କେନ୍ଦ୍ରରେ ଅବସ୍ଥାପିତ ହୋଇଥିଲେ ଏବଂ ସେତେବେଳେ OMFED ର ମୂଳଦୁଆ ପକାଇ କଟକ, ପୁରୀ, ଢେଙ୍କାନାଳ ଓ କେନ୍ଦୁଝର ଜିଲ୍ଲା ଦୁଗ୍ଧ ସମବାୟ ସଂଘ ଗଠନ ଦିଗରେ କାର୍ଯ୍ୟ କରିଥିଲେ । ଏହା ଉପରେ ଭିତ୍ତିକରି OMFED ଓଡ଼ିଶାରେ ପ୍ରତିଷ୍ଠିତ ହେଲା ।

ପଶୁପାଳନ ଓ ପଶୁଚିକିତ୍ସା (ପଶୁସଂପଦ) ବିକାଶ ଓ ଶାସନ ସହିତ ସେ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । ଏହି ବିଭାଗର ପ୍ରଖ୍ୟାତ ନିର୍ଦ୍ଦେଶକ ପ୍ରଫେସର ଡା. ଗଣେଶ୍ୱର ବିଶ୍ୱାଳଙ୍କର ସେଥିଲେ ଅତ୍ୟନ୍ତ ପ୍ରିୟ ଛାତ୍ର ଏବଂ ବିଶ୍ୱସ୍ତ ସହକର୍ମୀ । ଓଡ଼ିଶାରେ ପଶୁସଂପଦର ସର୍ବବିଧ ବିକାଶ ପାଇଁ ତାଙ୍କର ସୁକ୍ଷ୍ମଦୂରଦୃଷ୍ଟି ଓ ବାସ୍ତବ ଚିନ୍ତାଧାରା ସହିତ ଡାକ୍ତର ମହାନ୍ତି ଛାତ୍ରାବସ୍ଥାରୁ ହିଁ ସଂପୃକ୍ତ ଥିଲେ । ତେଣୁ ପରବର୍ତ୍ତୀ କାଳରେ ଡାକ୍ତର ବିଶ୍ୱାଳଙ୍କର ପ୍ରଭାବ ଡା. ମହାନ୍ତିଙ୍କର କାର୍ଯ୍ୟ ପ୍ରଣାଳୀରେ ପ୍ରତିଫଳିତ ହୋଇଥିଲା ।

ଓଡ଼ିଶାରେ ଗୋସଂପଦର ବିକାଶପାଇଁ ଜିଲ୍ଲାସ୍ତରୀୟ ଡାଏରୀଫାର୍ମ ଗୁଡ଼ିକପ୍ରତି ତାଙ୍କର ଅବଦାନ ଥିଲା ଅତି ମୂଲ୍ୟବାନ । ତେଣୁ ଏହି ଫାର୍ମ ଗୁଡ଼ିକୁ OMFED/ ଘରୋଇ ସଂସ୍ଥାକୁ ହସ୍ତାନ୍ତରିକରଣ କରେଇ ନଦେବାରେ ବହୁ ଚେଷ୍ଟାକରି ସେ ସଫଳ

ହୋଇଥିଲେ । କେନ୍ଦ୍ର ସରକାରଙ୍କ ଦ୍ୱାରା ଓଡ଼ିଶାରେ କାର୍ଯ୍ୟକାରୀ ହୋଇଥିବା ସଙ୍କର ମାଈ ବାଛୁରୀ ପାଳନ ଯୋଜନା ଜରିଆରେ ଦାନାଦେଇ ଲକ୍ଷାଧିକ ଉନ୍ନତ ମାନର ଗାଈ ସୃଷ୍ଟିକରିବାରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ନିଜେ ନିର୍ଦ୍ଦେଶକ ଦାୟିତ୍ୱରେ ଥିବାବେଳେ ଡାଏରିଫାର୍ମଗୁଡ଼ିକର ଅଭିବୃଦ୍ଧି ଘଟାଇ ସେସବୁର ଗୁଣାତ୍ମକମାନ ଉନ୍ନତ କରିପାରିଥିଲେ । ଯଦ୍ୱାରା ଗାଈମାନଙ୍କର ଦୁଗ୍ଧ ଉତ୍ପାଦନ ହାର ବୃଦ୍ଧି ଘଟିଥିଲା । କୁକୁଡ଼ା ପାଳନ ବିଭାଗର ବିକାଶ ଦିଗରେ ସେ ମଧ୍ୟ ଧ୍ୟାନ ଦେଇଥିଲେ । ଏଥିପାଇଁ ବିଭାଗୀୟ FMC (ଖାଦ୍ୟମିଶ୍ରଣ କେନ୍ଦ୍ର) ଗୁଡ଼ିକୁ ପୁନର୍ଗଠିତ କରି ସେ ସବୁକୁ ନୂଆ ମେସିନ୍, ଟ୍ରକ ଇତ୍ୟାଦି ଆବଶ୍ୟକୀୟ ପଦାର୍ଥ ଯୋଗାଇ ଦେଇଥିଲେ । ଡା. ବିଶ୍ୱାଳଙ୍କ ଦ୍ୱାରା ଚିପିଲିମାଠାରେ ପ୍ରତିଷ୍ଠିତ ବହୁମୁଖୀ ଗୃହପାଳିତ ପଶୁପକ୍ଷୀଙ୍କ ଫାର୍ମ ଯଥା ଗାଈ, ଛେଳି, ମେଣ୍ଢା, ଘୁଷୁରୀ, କୁକୁଡ଼ା, ବତକ ଫାର୍ମ ଗୁଡ଼ିକର ପୁନରୁଦ୍ଧାର ତଥା ସଂପ୍ରସାରଣ କରିଥିଲେ । ଏହା ବ୍ୟତୀତ ସେଠାରେ ଗୋଟିଏ ଠେକୁଆ ଫାର୍ମଟିଏ ପ୍ରତିଷ୍ଠା କରିଥିଲେ । ଚିଲିକା ଅଞ୍ଚଳରେ ଥିବା ମଇଁଷିମାନଙ୍କୁ ନେଇ ପ୍ରଥମଥର ପାଇଁ ଚିପିଲିମାରେ ରଖି ଗବେଷଣା ଆରମ୍ଭ କରରାଇଥିଲେ । ଲକ୍ଷ୍ୟ ଥିଲା – ଚିଲିକାର ବିସ୍ତୀର୍ଣ୍ଣ ଅଞ୍ଚଳରେ ରହୁଥିବା ଦେଶୀ ମଇଁଷିମାନଙ୍କକରଉନ୍ନତି ଘଟାଇ ମଇଁଷି ପାଳକମାନଙ୍କର ସାମାଜିକ ଓ ଆର୍ଥୀକ ଅବସ୍ଥାର ଉନ୍ନତି ଘଟାଇବା ।

ଡଃ. ମହାନ୍ତିଙ୍କର ପଶୁସଂପଦ ବିକାଶର କାର୍ଯ୍ୟଧାରା କେବଳ ଗୋଜାତିର ଉନ୍ନତିରେ ସୀମାବଦ୍ଧ ନଥିଲା । ରାଜ୍ୟରେ ଥିବା ସମସ୍ତ ସରକାରୀ ଛେଳି, ମେଣ୍ଢା, ଘୁଷୁରୀ ଫାର୍ମଗୁଡ଼ିକର ଉନ୍ନତି ପାଇଁ ଚେଷ୍ଟା କରି ସେ ସଫଳ ହୋଇଥିଲେ ଏବଂ ଭାରତ ସରକାରଙ୍କଠାରୁ ସାହାଯ୍ୟ ଆଣି ଚାରିଗୋଟି ଲେଖାଏଁ ଛେଳି, ମେଣ୍ଢା ଓ ଘୁଷୁରୀ ଫାର୍ମ ନୂଆକରି ପ୍ରତିଷ୍ଠା କରିଥିଲେ । ଘରୋଇଭାବେ ପ୍ରତିଷ୍ଠିତ ଫାର୍ମ ଏବଂ ଚାଷୀମାନଙ୍କୁ ମଧ୍ୟ ସେ ଅକୁଣ୍ଠିତ ଚିତରେ ପ୍ରୋତ୍ସାହିତ କରୁଥିଲେ । ସେହିପରି ରାଜ୍ୟରେ ଥିବା ୧୫ଗୋଟି କୁକୁଡ଼ା ଓ ବତକ ଫାର୍ମର ମଧ୍ୟ ଅନୁରୂପ ଉନ୍ନତି ସାଧନ କରି ପାରିଥିଲେ । କୁକୁଡ଼ା ଓ ବତକ ଫାର୍ମରୁ ଚାଷୀମାନଙ୍କୁ ପ୍ରାୟ ୩ ଲକ୍ଷ ଦିନିକିଆ କୁକୁଡ଼ା/ବତକ ଛୁଆ ପ୍ରତିବର୍ଷ ଯୋଗାଇ ଦିଆଯାଉଥିଲା । ଏହାଦ୍ୱାରା ଆମ ରାଜ୍ୟରେ ଗରିବ ଚାଷୀମାନେ ନିଜ ବାଡ଼ି ଅଗଣାରେ ଅଣ୍ଡା ଓ ମାଂସ ଉତ୍ପାଦନ କରିପାରୁଥିଲେ । ଏହି ବ୍ୟବସ୍ଥାରେ ଚାଷୀର ସାମାଜିକ ଓ ଆର୍ଥିକ ଅବସ୍ଥାର ବିକାଶ ଘଟୁଥିଲା । ଏକଥା କେହି ବିଶ୍ୱାସ କରିବେ ନାହିଁ ଯେ ସେ ନିର୍ଦ୍ଦେଶକ ଥିବା ବେଳେ କେତେଥର ଚିପିଲିମା ଫାର୍ମରୁ ନିଜଗାଡ଼ିରେ ଦିନିକିଆ ବତକ ଛୁଆ ଆଣି କଟକ, ପୁରୀ ଅଞ୍ଚଳର ଚାଷୀଙ୍କପାଖରେ ପହଞ୍ଚାଇବା ପାଇଁ ମୋତେ ଦାୟିତ୍ୱ ଦେଇଥିଲେ । ଉପକୂଳ ଅଞ୍ଚଳରେ ବତକଚାଷର ପ୍ରସାରଣ ପାଇଁ ଚାଷୀଙ୍କଠାରୁ ଅଣ୍ଡା ଆଣି ତାକୁ ଫୁଟାଇ ଚାଷୀଙ୍କୁ ଫେରାଇ ଦେବାର ଏକ ଅଭିନବ ବ୍ୟବସ୍ଥା ଆମେ ଗ୍ରହଣ କରିଥିଲୁ ।

ପଶୁସଂପଦର ବିକାଶରେ ଘାସ ଫାର୍ମ ଗୁଡ଼ିକର ଗୁରୁତ୍ୱ କମ୍ ନଥିଲା । ତେଣୁ ଘାସ ଫାର୍ମଗୁଡ଼ିକର ଉନ୍ନତିପାଇଁ ସେ ଆପ୍ରାଣ ଚେଷ୍ଟା କରୁଥିଲେ ଏବଂ ଘାସ ବିହନ ଉତ୍ପାଦନ ପାଇଁ ଦେବଗଡ଼ଠାରେ ୨୦୦ ଏକର ବିଶିଷ୍ଟ ଏକ ନୂଆ ଫାର୍ମ ପ୍ରତିଷ୍ଠା କରାଇଥିଲେ ।

ପଶୁସମ୍ପଦର ଅଭିବୃଦ୍ଧି ପାଇଁ ଦାନା ଏକ ଅପରିହାର୍ଯ୍ୟ ବସ୍ତୁ । ତେଣୁ ସରକାରୀ ଦାନା ମିଶ୍ରଣ କେନ୍ଦ୍ର ଗୁଡ଼ିକରୁ କିପରି ଉତ୍କୃଷ୍ଟମାନର ଦାନା ଉତ୍ପାଦିତ ହୋଇ ବିଭାଗୀୟ ଫାର୍ମଗୁଡ଼ିକୁ ଯୋଗାଇ ଦିଆଯାଇ ପାରିବ ସେଥିପାଇଁ ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ । ଏବଂ ସେସବୁକୁ ପରୀକ୍ଷାଗାରରେ ନିୟମିତଭାବେ ଯାଞ୍ଚ କରାଉଥିଲେ । ସରକାରୀ ଫାର୍ମଗୁଡ଼ିକରେ ଖର୍ଚ୍ଚ ହେଉଥିବା ଦାନାର ମୂଲ୍ୟ ଯେପରି ସଂପୃକ୍ତ ଫାର୍ମରୁ ଆଦାୟ ହୋଇପାରିବ- ସେଥିପାଇଁ ସେ ନିୟମିତ ଆଲୋଚନା କରି ସଂପୃକ୍ତ ଅଧିକାରୀମାନଙ୍କୁ ସଚେତନ କରାଉଥିଲେ । ଉନ୍ନତ ଗୋଜାତିଥିବା ଅଞ୍ଚଳରୁ ବୁଢ଼ା ଷଣ୍ଢମାନଙ୍କୁ ଅପସାରଣ କରିବା ଦିଗରେ ସେ ଦୃଢ଼ ପଦକ୍ଷେପ ନେଉଥିଲେ । ଢେଙ୍କାନାଳର ବାବନ୍ଧଠାରେ ବୁଲାଷଣ୍ଢମାନଙ୍କୁ ରଖାଯାଉଥିଲା । ସେଠାରେ ସେମାନଙ୍କପାଇଁ ପାନୀୟ ଜଳଯୋଗାଣ ଘାସଚାଷ ଓ ଛାୟାପ୍ରଦ ଗଛ ଲଗାଇବା ଆଦି କାମକୁ ସେ ତ୍ୱରାନ୍ୱିତ କରାଇଥିଲେ ।

ପଶୁସଂପଦର ବିକାଶପାଇଁ ରୋଗ ନିୟନ୍ତ୍ରଣ ବ୍ୟବସ୍ଥା ବହୁ ଗୁରୁତ୍ୱପୂର୍ଣ୍ଣ । ସେ ଏ ଦିଗରେ ନିୟମିତ ବ୍ୟବସ୍ଥା କରିବା ସହିତ ଗାଁ ଗହଳିରେ ମାଗଣାରେ ଗୋ-ଚିକିତ୍ସା ଶିବିର ଆୟୋଜନ କରାଉଥିଲେ । ଚାଷୀମାନଙ୍କୁ ଆଜି ଯେପରି ସାମାନ୍ୟ ଚିକିତ୍ସାପାଇଁ ପଇସା ଦେବାକୁ ପଡୁଛି – ସେତେବେଳେ ତାହା ନଥିଲା ।

OMFED ନଥିବା ଅଞ୍ଚଳରେ ଦୁଗ୍ଧ ଉତ୍ପାଦନ ପାଇଁ ଭାରତ ସରକାରଙ୍କଠାରୁ ଅନୁଦାନ ଆଣି ନୂତନ ଦୁଗ୍ଧଉତ୍ପାଦନ ଯୋଜନା କାର୍ଯ୍ୟକାରୀ କରାଇଥିଲେ । ଫଳରେ କୋରାପୁଟ, କଳାହାଣ୍ଡି,ବଲାଙ୍ଗିର, ଭଦ୍ରକ, ନୂଆପଡ଼ା, ଫୁଲବାଣୀ,ବଉଦ, ସୁନ୍ଦରଗଡ଼, ବାଲେଶ୍ୱର, ମୟୂରଭଞ୍ଜ ସହରମାନଙ୍କରେ Milk Union ସହିତ Milk plant ସ୍ଥାପନ କରାଯାଇଥିଲା ।

କୃତ୍ରିମ ପ୍ରଜନନ ମାଧ୍ୟମରେ ଗୋ-ଜାତିର କ୍ଷିପ୍ର ଉନ୍ନତି ପାଇଁ ଜିଲ୍ଲାଓ୍ୱାରୀ ଲକ୍ଷ୍ୟଧାର୍ଯ୍ୟ କରାଯାଇ ତାହାକୁ କାର୍ଯ୍ୟରେ ପରିଣତ କରିବାକୁ କଠୋର ନିଷ୍ପତ୍ତି ନେବାରେ ସେ ପଶ୍ଚାତପଦ ହେଉନଥିଲେ । ପୂର୍ବରୁ ହେଉଥିବା ୨ ଲକ୍ଷ କୃତିମ ପ୍ରଜନନ (A.I) କୁ ତାଙ୍କ ସମୟରେ ୫ ଲକ୍ଷକୁ ବୃଦ୍ଧି କରଯାଇ ଅଧିକ ସଂଖ୍ୟକ ଉନ୍ନତ ଗୋରୁ ଉତ୍ପାଦନ ତଥା ଦୁଗ୍ଧଉତ୍ପାଦନ ବଢ଼ାଇବାରେ ସହାୟକ ହୋଇଥିଲା ।

ପଶୁପାଳନ ସଂକ୍ରାନ୍ତୀୟ ବିଭିନ୍ନ ତଥ୍ୟକୁ ଚାଷୀମାନଙ୍କ ପାଖରେ ପହଞ୍ଚେଇ ଦେବାପାଇଁ ସେ ପଶୁପାଳନ ସମ୍ବାଦ ସରବରାହ ସଂସ୍ଥାକୁ ସକ୍ରିୟ କରାଇଥିଲେ ।

ପଶୁସମ୍ପଦର ବିକାଶପ୍ରତି ସର୍ବଦା ଯତ୍ନଶୀଳ ଥିଲେ ମଧ୍ୟ ଜୀବଜନ୍ତୁଙ୍କ ପ୍ରତି ନିର୍ଯ୍ୟାତନା / ନିଷ୍ଠୁରତାକୁ ସେ ବରଦାସ୍ତ କରିପାରୁ ନଥିଲେ । ସେଥିପାଇଁ ରାଜ୍ୟରେ ଥିବା ''ଜୀବେ ନିଷ୍ଠୁରତା ନିରୋଧ ସମିତି'' (S.P.C.A) କୁ ଅଧିକ କ୍ରିୟାଶୀଳ କରାଇଥିଲେ ଏବଂ ତାହା ଅଧୀନରେ ଏକ ଦାତବ୍ୟ ପଶୁଚିକିତ୍ସା କଟକର ସତୀଚଉରାଠାରେ ନୂଆକରି ପ୍ରତିଷ୍ଠା କରାଇଥିଲେ । ରାସ୍ତା କଡ଼ରେ ଛେଳିକଟାର ବିରୋଧପାଇଁ ଭ୍ରାମ୍ୟମାଣ କୋର୍ଟ (Mobile court) ବ୍ୟବସ୍ଥା କରି ଏ ଦିଗରେ ବହୁଦୂର ସଫଳତା ହାସଲ କରାଯାଇଥିଲା । ପଶୁସଂପଦ ବିକାଶର ଭିତ୍ତିଭୂମି ପକେଇବାରେ ସେ କୌଣସି ହେଳା ପ୍ରଦର୍ଶନ କରିନଥିଲେ ।

ପ୍ରଶାସନ କ୍ଷେତ୍ରରେ କଠିଣ ଥିଲେ ମଧ୍ୟ କର୍ମଚାରୀଙ୍କ ଦୁଃଖ ଦୁର୍ଦ୍ଦଶା ମୋଚନ କରିବାରେ ସେ କେବେ ହେଳା କରୁ ନଥିଲେ । ସବୁ ଶ୍ରେଣୀର କର୍ମମଚାରୀଙ୍କ ପାଇଁ ତାଙ୍କ ଦ୍ୱାର ଉନ୍ମୁକ୍ତ ଥିଲା । ଭଡ଼ାଘରେ ଚାଲୁଥିବା ବିଭାଗୀୟ କାର୍ଯ୍ୟାଳୟଗୁଡ଼ିକୁ ଉଠାଇ ଆଣି ବିଭାଗୀୟ ହତା ମଧ୍ୟରେ ପ୍ରତିଷ୍ଠିତ କରାଇ ସେ ବିଭାଗର ଅର୍ଥବ୍ୟୟକୁ ରୋକି ପାରିଥିଲେ ।

ପଶୁପାଳନ ବିଭାଗର IAS ଓ ଭେଟେନାରୀ କଲେଜରୁ ପ୍ରଫେସର ମାନେ ଆସି ନିର୍ଦ୍ଦେଶାଳୟ ଦାୟିତ୍ୱ ତୁଲାଉଥିଲେ ମଧ୍ୟ, ସେମାନଙ୍କର କାର୍ଯ୍ୟର ସମୀକ୍ଷାକଲେ ଜଣାଯିବ ଯେ ଡଃ. ମହାନ୍ତିଥିଲେ ସେମାନଙ୍କଠାରୁ ସମ୍ପୂର୍ଣ୍ଣ ନିଆରା । ସେ ଚାହୁଁଥିଲେ ପଶୁସଂପଦ ବିକାଶରେ ଓଡ଼ିଶାର ବିକାଶ ହେଉ । ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ ମଧ୍ୟ ସେ ନିଜ ଲକ୍ଷ୍ୟପଥରୁ ବିଚ୍ୟୁତ ନ ହୋଇ ଆଗେଇ ଚାଲିଥିଲେ । ଏହାହିଁ ତାଙ୍କର ବିଶେଷତ୍ୱ ।

*ପୂର୍ବତନ ଯୁଗ୍ମନିର୍ଦ୍ଦେଶକ,*
*ଓଡ଼ିଶା ପଶୁପାଳନ ବିଭାଗ, କଟକ*



(ସମାଜସେବା)

# ଓଡ଼ିଆ ପ୍ରେମୀ - ସଂଗଠକ ଗୁରୁପ୍ରସାଦ

ଅନ୍ନଦା ପ୍ରସାଦ ରାୟ

ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି ଓ ସାଧାରଣ ଜୀବନକୁ ସ୍ପର୍ଶ କଲାଭଳି ଯେଉଁମାନେ ନିରନ୍ତର କାର୍ଯ୍ୟରତ ସେମାନଙ୍କ ଭିତରେ ଡାକ୍ତର ଗୁରୁପ୍ରସାଦ ମହାନ୍ତି ଅନ୍ୟତମ । ସେ ଜଣେ ପଶୁଚିକିତ୍ସାବିତ୍ ଏବଂ ସେ ଆମେରିକାରେ ଏହି ବିଷୟରେ ଡକ୍ଟରେଟ୍ କରିଛନ୍ତି । ଓଡ଼ିଶାର ପଶୁଚିକିତ୍ସା ବିଭାଗର (ଭେଟେରିନାରି) ସେ ଥିଲେ ନିର୍ଦ୍ଦେଶକ । ବର୍ତ୍ତମାନ ସେ ଅବସର ଗ୍ରହଣ କରିଛନ୍ତି । ଏଭଳି ଉଚ୍ଚ ପଦବୀରେ ରହି ମଧ୍ୟ ସେ ନିଜର ଅର୍ଥକାରୀ ଭବିଷ୍ୟତକୁ ଦୃଷ୍ଟିପାତ କରିନାହାନ୍ତି କି ନିଷ୍କ୍ରିୟ ହୋଇ ବସି ନାହାନ୍ତି । ସେ ଚାହିଁଥିଲେ ଅନ୍ୟ ଅବସରପ୍ରାପ୍ତ ଅଧିକାରୀଙ୍କ ଭଳି ଆଉ କିଛି ବୈଷୟିକ ସ୍ୱାର୍ଥ ସାଧନରେ ନିଜକୁ ନିୟୋଜିତ କରି ପାରିଥାନ୍ତେ । କିନ୍ତୁ ତାଙ୍କ ଭିତରେ ଥିବା ମାତୃଭୂମି ମାତୃଭାଷାର ପ୍ରୀତି ଓ ପ୍ରେରଣା ତାଙ୍କୁ ଉତ୍କଳ ସମ୍ମିଳନୀ ଭଳି ଏକ ବିରାଟ ସଂଗଠନର କର୍ମକର୍ତ୍ତାରେ କାର୍ଯ୍ୟ କରିବାକୁ ଅନୁପ୍ରେରିତ କରି ପାରିଛି । ପ୍ରଥମେ ସେ କଟକ ଜିଲା ଉତ୍କଳ ସମ୍ମିଳନୀର ସଭାପତି ଥିଲେ । ତାଙ୍କର ଦକ୍ଷତା ଓ ଅଙ୍ଗୀକାରବଦ୍ଧତା ଯୋଗୁଁ ସେ ପରବର୍ତ୍ତୀ ସମୟରେ ରାଜ୍ୟସ୍ତରୀୟ ଉତ୍କଳ ସମ୍ମିଳନୀର ଉପସଭାପତି ଦାୟିତ୍ୱରେ ରହିଛନ୍ତି । ଏହା ତାଙ୍କର ବ୍ୟକ୍ତିତ୍ୱର ଏକ ଜ୍ୱଳନ୍ତ ନିଦର୍ଶନ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଗୌରଶ୍ୟାମ ନାୟକ ତାଙ୍କର ଭିଣୋଇ । ତାଙ୍କ ରକ୍ତରେ ଦେଶସେବାର ଭାବନା ଓ ସଂଗଠନ ଓ ଆନ୍ଦୋଳନର ଶକ୍ତି ରହିଛି । ତାଙ୍କ ପରିବାରରେ ବୈଷ୍ଣବ ସଂସ୍କାର ରହିଛି ସେ ନିଜେ ରାଧାକୃଷ୍ଣଙ୍କର ଜଣେ ଏକନିଷ୍ଠ ଉପାସକ ।

ଗୁରୁବାବୁ କେବଳ ଓଡ଼ିଶାରେ ନୁହେଁ, ବିଦେଶରେ ମଧ୍ୟ ଓଡ଼ିଆଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରସାର ପାଇଁ କାର୍ଯ୍ୟ କରୁଛନ୍ତି । ବିଚ୍ଛିନ୍ନାଞ୍ଚଳକୁ ନିଜେ ଯାଇ ସେଠାରେ ଥିବା ଓଡ଼ିଆମାନଙ୍କର ସମସ୍ୟାକୁ ଅନୁଧ୍ୟାନ କରୁଛନ୍ତି । ଏହା ତାଙ୍କର ଦେଶପ୍ରୀତିର ପରିଚୟ ଦିଏ । ଆଜି ପର୍ଯ୍ୟନ୍ତ ସେ ବିଦେଶ ଭ୍ରମଣ କଲାବେଳେ ଓଡ଼ିଶାର ଯେଉଁମାନେ ବିଦେଶରେ ରହିଛନ୍ତି, ସେମାନଙ୍କୁ ସଂଗଠିତ କରି ନିଜକୁ ସେତୁ ଭାବରେ ଉପସ୍ଥାପିତ କରି ପାରିଛନ୍ତି । ଓଡ଼ିଶାର ଭାଷା ଆନ୍ଦୋଳନ ପାଇଁ ସେ ମଧ୍ୟ ବିଦେଶୀ ସାହାଯ୍ୟ ଆଣି କାର୍ଯ୍ୟ କରୁଛନ୍ତି । ଚଳିତବର୍ଷ ଉତ୍କଳ ସମ୍ମିଳନୀର ଶତାବ୍ଦୀ ସମାରୋହକୁ ସେ ସଫଳତାର

ସହିତ ଅନୁଷ୍ଠିତ କରାଇ ପାରିଛନ୍ତି । କେବଳ ଉତ୍କଳ ସମ୍ମିଳନୀ ନୁହେଁ, ରାଜ୍ୟର ପ୍ରାଚୀନ ସାହିତ୍ୟାନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟନିର୍ବାହୀ ସଭ୍ୟ ଭାବରେ ରହି ସେ ଏହି ସଂସ୍ଥାର ଶତାବ୍ଦୀ ସମାରୋହକୁ ମଧ୍ୟ ସାଫଲ୍ୟମଣ୍ଡିତ କରି ପାରିଛନ୍ତି । ଓଡ଼ିଶାର ବିଭିନ୍ନ ସାହିତ୍ୟ ଓ ସଂସ୍କୃତି ସଂଗଠନ ଯଥା 'ଉତ୍କଳ ପାଠକ ସଂସଦ', 'ଲେଖକ ସହଯୋଗ ସମିତି', 'ଉତ୍କଳ ସାହିତ୍ୟ କଳା ପରିଷଦ, 'ଶ୍ରୀ ରାଧାରମଣ ଦେବଙ୍କ ଜନ୍ମ ଶତବାର୍ଷିକ ଉତ୍ସବ' ସହିତ ସେ କ୍ରିୟାଶୀଳ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ତାଙ୍କର ଓଡ଼ିଆ ସାହିତ୍ୟ ପ୍ରତି କେବଳ ଅନୁରାଗ ନୁହେଁ ବରଂ ସାହିତ୍ୟର ପ୍ରସାର ପାଇଁ ବହୁ ସାଂଗଠନିକ ସମର୍ଥନ ରହିଛି । ତାଙ୍କର ଇଂରାଜୀ ସାହିତ୍ୟରେ ଗଭୀର ପ୍ରବେଶ ସତ୍ତ୍ୱେ ସେ ଓଡ଼ିଆରେ ତାଙ୍କର ସୃଜନାତ୍ମକ ଅଭିବ୍ୟକ୍ତି ପ୍ରକାଶ କରିଆସିଛନ୍ତି । ବହୁ ଓଡ଼ିଆ ଲେଖକଙ୍କୁ ସେ ଲେଖକ ସହଯୋଗ ସମିତି ମାଧ୍ୟମରେ ଲୋକ ଲୋଚନକୁ ଆଣିଛନ୍ତି । ତାଙ୍କର ଓଡ଼ିଆ ପ୍ରୀତି ଅତି ଗଭୀର । ଦୂରଭାଷରେ (ଟେଲିଫୋନ) ସେ 'ହ୍ୟାଲୋ' କହିବା ପରିବର୍ତ୍ତେ 'ବନ୍ଦେ ଉତ୍କଳ ଜନନୀ' କହିଥାନ୍ତି । ତାଙ୍କୁ ଓଡ଼ିଶାରେ ଓ ଓଡ଼ିଶା ବାହାରେ ବହୁ ଅନୁଷ୍ଠାନ ତରଫରୁ ସମ୍ମାନିତ କରାଯାଇଛି ।

ଉତ୍କଳ ଗୌରବ ମଧୁସୂଦନଙ୍କ ଜନ୍ମ ଓ ଶ୍ରାଦ୍ଧଦିବସକୁ ସେ ରାଜ୍ୟସ୍ତରରେ ଯଥାବିଧି ମହାସମାରୋହରେ ପାଳନ କରିଥାନ୍ତି । ମଧୁବାବୁ ତାଙ୍କର ଆଦର୍ଶ ତଥା ଓଡ଼ିଶାର ସମସ୍ତ କୃତି ସନ୍ତାନ ତାଙ୍କର ଆରାଧ୍ୟ । ଉତ୍କଳ ସମ୍ମିଳନୀର ସେ ଉପସଭାପତି ଭାବେ ଦାୟିତ୍ୱରେ ରହିଥିଲାବେଳେ ମୁଁ ଅଭ୍ୟର୍ଥନା ସମିତିର ସଭାପତି ଦାୟିତ୍ୱରେ ଥିଲି । ସେତେବେଳେ ମୁଁ ଲକ୍ଷ୍ୟ କରିଛି ତାଙ୍କର ପ୍ରଗାଢ଼ ଆନ୍ତରିକତା ଓ ନିପୁଣତା । ସେ ମୋର ସମକାଳୀନ । ମୁଁ ବିଭିନ୍ନ ବିଦ୍ୟାଳୟ ମହାବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ସେ ମୋର ସମସାମୟିକ ଛାତ୍ରଭାବେ ଗୋଟିଏ ବର୍ଷ ଆଗପଛ ହୋଇ ଅଧ୍ୟୟନ କରୁଥିଲେ । ମୋର ତାଙ୍କ ସହିତ ଦୀର୍ଘଦିନର ସମ୍ପର୍କ । ସେ ମଧ୍ୟ ଜଣେ ଉଚ୍ଚକୋଟୀର ଲେଖକ । ବିଭିନ୍ନ ପତ୍ରପତ୍ରିକାରେ ସେ ଗଠନମୂଳକ ପ୍ରସଙ୍ଗରେ ପ୍ରବନ୍ଧ ରଚନା କରି ଲୋକପ୍ରିୟ ହୋଇ ପାରିଛନ୍ତି । କେତେକ ଉପାଦେୟ ପୁସ୍ତକ ମଧ୍ୟ ସେ ରଚନା କରିଛନ୍ତି । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ଓ ଜଗନ୍ନାଥ ଧର୍ମ ଇତ୍ୟାଦି ବିଷୟବସ୍ତୁ ଉପରେ ସେ ବହୁ ବିଦ୍ୟାଳୟ ଓ ମହାବିଦ୍ୟାଳୟ ମାନଙ୍କରେ ବକ୍ତୃତା ପ୍ରଦାନ କରି ବୌଦ୍ଧିକ ଆଲୋଡ଼ନ ସୃଷ୍ଟି କରନ୍ତି । ସେ ପିଲାଦିନୁଁ କବିତା ଲେଖୁଥିଲେ । ସଂଗଠନ କରିବାରେ ସେ ଏତେ ଆଗ୍ରହୀ ଏବଂ ନିପୁଣ ଯେ ସମ୍ପ୍ରତି ସେ ୧୯୫୪ ମସିହାରେ ଯେଉଁମାନେ ମାଟ୍ରିକୁଲେଟ ସେମାନଙ୍କର ଗୋଟିଏ ସମ୍ମିଳନୀ ଆହୂତ କରିଥିଲେ । ସେଥିରେ ଓଡ଼ିଶାର ୧୯୫୪ ମସିହାର ବହୁ ମାଟ୍ରିକୁଲେଟ୍ ଯୋଗ ଦେଇଥିଲେ । ଆମେରିକାର ପୂର୍ବତନ ରାଷ୍ଟ୍ରଦୂତ ଶ୍ରୀଯୁକ୍ତ ଲଳିତ ମାନସିଂହ ଏହାଙ୍କୁ ଉଦଘାଟନ କରିଥିଲେ । ଗୁରୁବାବୁ ସଂଗଠନ, ଆନ୍ଦୋଳନ ଓ

କଲ୍ୟାଣକର କର୍ମରେ ନିରନ୍ତର ବ୍ୟାପୃତ ରହି ନିଜ ଜୀବନକୁ ସାର୍ଥକ କରିଛନ୍ତି । ଏତେ ଯୋଗ୍ୟତା ଓ ଦକ୍ଷତାର ଅଧିକାରୀ ହୋଇ ମଧ ତାଙ୍କ ମନରେ ଅହଂକାର ନାହିଁ । ସେ ଖୁବ୍ ବନ୍ଧୁସ୍ନେହୀ, ସମାଜସଚେତନ, ମଧୁରଭାଷୀ, ହସ ହସ ମୁହଁ ଆଉ ତୃପ୍ତି ଓ ପୂର୍ଣ୍ଣତାରେ ଜଣେ ଦୃଷ୍ଟାନ୍ତ ଯୋଗ୍ୟ ମଣିଷ । ଆଉ ଶହେବର୍ଷପରେ ଉତ୍କଳ ସମ୍ମିଳନୀର ଶତାବ୍ଦୀ ସମାରୋହ ବେଳକୁ ସେ ଇତିହାସର ସ୍ମରଣୀୟ ଚରିତ୍ର ହୋଇ ରହିବେ । ଓଡ଼ିଶାରେ ଚାରିଜଣ ଗୁରୁପ୍ରସାଦ ମହାନ୍ତି ଖୁବ୍ ଜଣାଶୁଣା । ଜଣେ ସର୍ଜନ ଡାକ୍ତର ଗୁରୁପ୍ରସାଦ ମହାନ୍ତି ଯେ କଟକ ବଡ଼ମେଡ଼ିକାଲ ଆଶୁ ଚିକିତ୍ସାବିଭାଗରେ ଅଧକ୍ଷ ଥିଲେ, ଆଉ ଜଣେ ଏଡ୍‌ଭୋକେଟ ଗୁରୁପ୍ରସାଦ ମହାନ୍ତି ଯେ ଜଣେ ସୁଦକ୍ଷ ଆଇନଜ୍ଞ ଓ ଲେଖକ, ଆଉଜଣେ ମେଜର ଗୁରୁପ୍ରସାଦ ମହାନ୍ତି ଯେ ଆଧୁନିକ କବିତାର ଜଣେ ପ୍ରଥିତଯଥା କବି ତଥା ଇଂରାଜୀ ଅଧାପକ ଏବଂ ଶେଷରେ ଡାକ୍ତର ଗୁରୁପ୍ରସାଦ ମହାନ୍ତି ଯେ ଉତ୍କଳ ସମ୍ମିଳନୀର ଉପସଭାପତି ଓ ଜଣେ କୃତବିଦ୍ୟ ସମାଜ ସଂଗଠକ ଭାବେ ଆମ ନିକଟରେ ଆଜି ଅଭିନନ୍ଦନୀୟ । ସେ ଆହୁରି ଯଶସ୍ୱୀ ଓ ତେଜସ୍ୱୀ ହୁଅନ୍ତୁ ମୋର ଈଶ୍ୱରଙ୍କ ନିକଟରେ ଏତିକି ପ୍ରାର୍ଥନା ।

*ସଭାପତି, ଉତ୍କଳ ସାହିତ୍ୟ ସମାଜ, କଟକ ।*



# ''ମନରେ ବହୁତ ଆଶା''

ସ୍ୱର୍ଗତ ଜଗଦୀଶ ମହାପାତ୍ର

ବଞ୍ଚିରହିବ କେମିତି ଆମ ମାତୃଭାଷା
ଗୁରୁପ୍ରସାଦ ମନେ ମନେ ବାନ୍ଧିଛନ୍ତି ଅଶା
ଖୋଲୁଛନ୍ତି ବିଦ୍ୟାଳୟ ଗାଆଁକୁ ଗାଆଁ ଯାଇ
ବିଚ୍ଛିନ୍ନାଞ୍ଚଳେ ଓଡ଼ିଆ ଭାଷା ବଞ୍ଚାଇବାପାଇଁ ।।

ଓଡ଼ିଆ ଗାଆଁ ଗଣ୍ଡାରେ ତାଙ୍କର ହିଁ ସ୍ଥାନ
କରୁଛନ୍ତି ଲୋକେ ତାଙ୍କୁ ଆଦର ସମ୍ମାନ
ଝାଡ଼ଖଣ୍ଡେ ନଥିଲା ତ ଓଡ଼ିଆ ପାଠପଢ଼ା
ଏବେ ଓଡ଼ିଆ ହେଲାଣି ପିଲାଙ୍କର ଲୋଡ଼ା

ବିଦ୍ୟାଳୟ କେଉଁଠାରେ କେମିତି ଖୋଲିବ
ତାଙ୍କର ଧ୍ୟାନ ସ୍କୁଲ ସବୁ କିପରି ଚାଲିବ
ଗାଁକୁ ଗାଁ ବୁଲିବୁଲି କରନ୍ତି ନିରୀକ୍ଷଣ
ଝାଡ଼ଖଣ୍ଡେ ସୃଷ୍ଟିକଲେ ମାତୃଭାଷା ଆନ୍ଦୋଳନ ।।

ଚିନ୍ତା ଖାଲି ଦିନରାତି ଏକମାତ୍ର ଧ୍ୟାନ
ଓଡ଼ିଆ ଜାତି ସୁରକ୍ଷାରେ ପୂର୍ଣ୍ଣ ଅବଦାନ
ମାଆ, ମାଟି, ମାତୃଭାଷା ସଙ୍ଗେ କେ ତୁଳନା
ଅମଣିଷ ଚିତ୍ତେ ନାହିଁ ଏସବୁ ଭାବନା ।।

ଓଡ଼ିଆରେ ପଢ଼ିଲେ ହିଁ ସଞ୍ଚରିବ ଜ୍ଞାନ
କହନ୍ତି ବଞ୍ଚାଅ ଭାଷା ଦୃଢ଼ କରି ମନ ।।

*ପୂର୍ବତନ ସଭାପତି, ଝାଡ଼ଖଣ୍ଡ ପ୍ରଦେଶ ଓଡ଼ିଆ ଶିକ୍ଷକ ସଂଘ,*
*ଖଇରପାଳ, ପୂର୍ବ ସିଂହଭୂମ ।*



# ଝାଡ଼ଖଣ୍ଡରେ ଓଡ଼ିଆଶିକ୍ଷା ପ୍ରସାରରେ ଗୁରୁବାବୁଙ୍କ ଅବଦାନ

ସରୋଜ କୁମାର ପ୍ରଧାନ

ଗୁରୁବାବୁ ଆମ ଝାଡ଼ଖଣ୍ଡର ଜଣେ ସଚ୍ଚା ଓଡ଼ିଆ (ସ୍ୱତ୍ୟ) କର୍ମଯୋଗୀ । ପୂର୍ଣ୍ଣାଙ୍ଗ ଉତ୍କଳ ନ୍ୟାସୀ ମଣ୍ଡଳର ସଂପାଦକ ଶ୍ରୀଯୁକ୍ତ ପର୍ଶୁରାମ ଦ୍ୱିବେଦୀ ଗତ ଇଂରେଜୀ ୧୯୯୮ ମସିହା ମଇ ମାସରେ ଚକ୍ରଧରପୁରର ଓଡ଼ିଆ ମଧ୍ୟବିଦ୍ୟାଳୟ ପୁରୁଣାବସ୍ତିରେ ଆମ୍ଭମାନଙ୍କୁ ତାଙ୍କର ପରିଚୟ କରାଇଥିଲେ । ତାଙ୍କପରି ଶିକ୍ଷାଗତ ଯୋଗ୍ୟତା ସମ୍ପନ୍ନ ନିଜ ଦେଶ ତଥା ଯୁକ୍ତରାଷ୍ଟ୍ର ଆମେରିକାରୁ ଖ୍ୟାତି ଲାଭ କରି ଓଡ଼ିଶାର ମୁଖ୍ୟ ପଦବୀ ଡାଇରେକ୍ଟର ପଦରେ ଦୀର୍ଘଦିନ କାର୍ଯ୍ୟ କରିଥିବା ବ୍ୟକ୍ତି ଝାଡ଼ଖଣ୍ଡର ବଣ ଜଙ୍ଗଲ ପୂର୍ଣ୍ଣ ମାଟି କାଦୁଅ ର ଗାଁଆରେ ପଶି ଓଡ଼ିଆ ମାନଙ୍କର ମାତୃଭାଷା ଫେରାଇ ଆଣିପାରିବେ ବୋଲି ମୋର ଆଦୌ ବିଶ୍ୱାସ ନଥିଲା । ସେ ଝାଡ଼ଖଣ୍ଡକୁ ଆସି ପ୍ରଥମେ ସିଂହଭୂମି ଓଡ଼ିଆ ଶିକ୍ଷକ ସଂଘ ଗଠନ କରାଇଥିଲେ । ସେ ସ୍ୱର୍ଗତ ହରିଶ୍ଚନ୍ଦ୍ର ବକସିପାତ୍ର, ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ମିଶ୍ର, ଶ୍ରୀଯୁକ୍ତ ଭଗବାନ ରଥ, ଶ୍ରୀଯୁକ୍ତ ଅଭୟକୁମାର ସାମନ୍ତରାୟ ଓଡ଼ିଶାର ମାନ୍ୟବର ଗଣଶିକ୍ଷା ମନ୍ତ୍ରୀ ସୁରେନ୍ଦ୍ର ନାଥ ନାୟକଙ୍କୁ ଆଣି ଆମର ସିଂହଭୂମିର ଗ୍ରାମ ଗୁଡ଼ିକରେ ପରିଚୟ କରାଇ ଓଡ଼ିଆ ଭାଷା ସଂସ୍କୃତିର ସୁରକ୍ଷା କିପରି ହେବ ସେହି ଚେଷ୍ଟାରେ ଲାଗିଥିଲେ । ଝାଡ଼ଖଣ୍ଡ ରାଜ୍ୟର ରାଞ୍ଚୀ, ଗୁମ୍‌ଲା ଓଡ଼ିଆ ଜିଲ୍ଲା ହେଲେ ସୁଦ୍ଧା ପୂର୍ବସିଂହଭୂମି, ଷଢ଼େଇକଳା ଖରସୁଆଁ ଓ ପଶ୍ଚିମ ସିଂହଭୂମି ହେଉଛି ସଂପୂର୍ଣ୍ଣ ରୂପେ ଓଡ଼ିଆ ଜିଲ୍ଲା । ଏହି ତିନିଗୋଟି ଜିଲ୍ଲାରେ ଯେତେ ସରକାରୀ ସ୍କୁଲ ରହିଥିଲା ପ୍ରାୟ ସେସବୁ ପ୍ରତ୍ୟେକ ସ୍କୁଲରେ ଓଡ଼ିଆ ମାଧ୍ୟମରେ ଓଡ଼ିଆକୁ ମାତୃଭାଷାରୂପେ ରଖି ପଢ଼ାଯାଉଥିଲା । ବିହାର ସରକାରଙ୍କ ଅବହେଳା ଯୋଗୁଁ ଆମ ଓଡ଼ିଆ ସ୍କୁଲ ଗୁଡ଼ିକ ଅଣଓଡ଼ିଆ ସ୍କୁଲରେ ପରିଣତ ହୋଇଗଲା । ଝାଡ଼ଖଣ୍ଡ ରାଜ୍ୟ ଗଠନ ହେଲାପରେ ମଧ୍ୟ ଏଠାକାର ବହୁ ଓଡ଼ିଆ ସ୍କୁଲଗୁଡ଼ିକରେ ଓଡ଼ିଆ ଶିକ୍ଷକ ସରକାର ଯୋଗାଇ ଦେଇ ନାହାନ୍ତି । ବିଭିନ୍ନ ଗ୍ରାମବାସୀଙ୍କ ଦସ୍ତଖତରେ ଓଡ଼ିଆଶିକ୍ଷକ ପାଇଁ ଝାଡ଼ଖଣ୍ଡର ଶିକ୍ଷାମନ୍ତ୍ରୀ, ରାଜ୍ୟପାଳ, ଜିଲ୍ଲାଶିକ୍ଷା ଅଧିକ୍ଷକ, ଡେପୁଟି କମିଶନର, ସଂଖ୍ୟାଲଘୁ ଭାଷା ଆୟୁକ୍ତ, ବିଭିନ୍ନ ସରକାରୀ ଅଫିସରଙ୍କୁ ଦରଖାସ୍ତ ଦିଆଗଲା, ତଥାପି ଓଡ଼ିଆ ଶିକ୍ଷକମାନଙ୍କ ବଦଳି (ସ୍ଥାନାନ୍ତର)

ଓଡ଼ିଆ ସ୍କୁଲକୁ ହେଲା ନାହିଁ । ଭାରତର ମାନ୍ୟବର ରାଷ୍ଟ୍ରପତିଙ୍କୁ ମଧ୍ୟ ଓଡ଼ିଆ ଜନ ସାଧାରଣ ଓଡ଼ିଆ ଶିକ୍ଷକ ଯୋଗାଇବାକୁ ତଥା ନିଜ " ମୌଳିକ ଅଧିକାର ନିଜ ମାତୃଭାଷାରେ ପାଠ ପଢ଼ିବା ପାଇଁ ଜଣାଇଲେ ମଧ କିଛି କାର୍ଯ୍ୟ ହୋଇ ପାରିଲା ନାହିଁ । ଏଥିରେ ଗୁରୁବାବୁଙ୍କ ଭୂମିକା ଅତ୍ୟନ୍ତ ପ୍ରଶଂସନୀୟ ଅଟେ । ଗୁରୁବାବୁ ପାଞ୍ଚବର୍ଷ ଆଗରୁ ଲକ୍ଷ୍ୟରଖିଥିଲେ ଆମେ ପ୍ରତ୍ୟେକ ଗ୍ରାମରେ ଓଡ଼ିଆ ମଧୁ ବର୍ଣ୍ଣବୋଧ ଯୋଗାଇ ଦେବା । ଗ୍ରାମର ଲୋକଙ୍କୁ ନିଜ ମାତୃଭାଷାର ମହତ୍ତ୍ୱକୁ ମନେ କରାଇବା । ସେମାନେ ନିଶ୍ଚୟ ତାଙ୍କ ମାତୃଭାଷା ଓଡ଼ିଆରେ ପଢ଼ିଲେଖି ପାରିବେ । ତାଙ୍କର ଏହି ଆଶାକୁ ପୂର୍ଣ୍ଣ କରିବାରେ ଉତ୍କଳ ସମ୍ମିଳନୀ ପକ୍ଷରୁ ଝାଡ଼ଖଣ୍ଡର ବିଭିନ୍ନ ଗ୍ରାମରେ ଓଡ଼ିଆମାନଙ୍କୁ ନେଇ ବୈଠକ କରାଗଲା । ଗୁରୁବାବୁ ଝାଡ଼ଖଣ୍ଡ ତଥା ପଶ୍ଚିମବଙ୍ଗର ମେଦିନିପୁର ଜିଲ୍ଲାରେ ଅନେକଗୁଡ଼ିଏ "ଉତ୍କଳ ସମ୍ମିଳନୀ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ" ପ୍ରତିଷ୍ଠା କଲେ । ଏହି ବିଦ୍ୟାଳୟ ମାନଙ୍କ ଜରିଆରେ ଏଠାକାର ସ୍ଥାନୀୟ ପିଲାମାନେ ନିଜ ମାତୃଭାଷା ଓଡ଼ିଆ ଲେଖି ପଢ଼ି ପାରୁଛନ୍ତି । ବର୍ତ୍ତମାନ ସୁଦ୍ଧା ଝାଡ଼ଖଣ୍ଡର ଆହୁରି ଅନେକ ଗାଆଁ ରହିଛି ଯେଉଁଥିରେ ସଂପୂର୍ଣ୍ଣ ରୂପେ ଓଡ଼ିଆ ଲୋକ ବସବାସ କରନ୍ତି ଓଡ଼ିଆ ଶିକ୍ଷକ ଅଭାବ ଯୋଗୁ ସେମାନେ ନିଜ ମାତୃଭାଷା ଓଡ଼ିଆକୁ ଛାଡ଼ି ହିନ୍ଦୀ ପଢ଼ିବା ପାଇଁ ବାଧ୍ୟ ହୋଇଛନ୍ତି । ଗୁରୁବାବୁ ଯେତେବେଳେ ଝାଡ଼ଖଣ୍ଡ ବା ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ସଂସ୍କୃତିର ବିକାଶ ପାଇଁ ବାହାରି ପଡ଼ନ୍ତି ସେତେବେଳେ ସେ ଭୁଲିଯାଆନ୍ତି ଯେ ସେ ଜଣେ ଓଡ଼ିଶା ସରକାରଙ୍କ ଅବସର ପ୍ରାପ୍ତ ନିର୍ଦ୍ଦେଶକ ତଥା ଉତ୍କଳ ସମ୍ମିଳନୀର ଉପସଭାପତି । ସେ ଏହି କାର୍ଯ୍ୟରେ ବାହାରି ପଡ଼ିଲେ ମନେ ହୁଏ ଜଣେ ପଚିଶ ବର୍ଷର ସଂଗ୍ରାମୀ ଯୁବକ । ସେ ଅନେକ ଥର ମୋ ସହିତ ଦେଢ଼ଶହ କିଲୋମିଟର ପର୍ଯ୍ୟନ୍ତ ମଟର ସାଇକେଲ ପଛରେ ବସି ଗୋଟିଏ ଦିନରେ ଏଠାକାର ଖାଲ, ଢ଼ିପା ଗାଆଁର ବଣ ଜଙ୍ଗଲ ରାସ୍ତାରେ ନିଜ ମାତୃଭାଷାର ସୁରକ୍ଷାପାଇଁ ବିଭିନ୍ନ ଗାଆଁକୁ ଯାଆନ୍ତି । କେବେହେଲେ (ଥକାବଟ) ହାଲିଆ ଅନୁଭବ କରନ୍ତି ନାହିଁ । ଗୁରୁବାବୁଙ୍କ ସବୁଠାରୁ ଭଲଗୁଣ ହେଲା ପ୍ରତ୍ୟେକ ସ୍ଥାନରେ ଯେ କୌଣସି ଭାଷାଭାଷୀ ଲୋକସଙ୍ଗେ କଥାବାର୍ତ୍ତା ହେବେ ନିଜ ମାତୃଭାଷା ଓଡ଼ିଆରେ ହିଁ କଥାବାର୍ତ୍ତା ହେବେ । ସତ୍ୟ, ନିଷ୍ଠାପର କର୍ମଠ ବ୍ୟକ୍ତିଙ୍କୁ ଖୁବଶୀଘ୍ର ନିଜର କରି ନିଅନ୍ତି । ମିଥ୍ୟା କପଟୀ ବ୍ୟକ୍ତିଙ୍କଠାରୁ ସେ ଅନେକ ଦୂରରେ ରହିଥାନ୍ତି । ପ୍ରଗତୀଶିଳ କର୍ମକୁ ନିରନ୍ତର କାର୍ଯ୍ୟକାରୀ ରଖିବା ତାଙ୍କର ମୁଖ୍ୟ ବିଚାର ଧାରା । ବିଚ୍ଛିନ୍ନାଞ୍ଚଳରେ କିପରି ଲକ୍ଷ ଲକ୍ଷ ଓଡ଼ିଆ ନିଜ ମାତୃଭାଷା ଓଡ଼ିଆକୁ ପଢ଼ି ଲେଖିପାରିବେ । ପ୍ରତ୍ୟେକ ଗାଆଁରେ ଓଡ଼ିଆ ପାଠାଗାର କିପରି ହେବ ପ୍ରତ୍ୟେକ ଗାଆଁକୁ ଅଧିକରୁ ଅଧିକ ଓଡ଼ିଆ ଖବର କାଗଜ ପତ୍ରିକା ଆଦି ପହଞ୍ଚି ପାରିବ ସେସବୁ ତାଙ୍କର ମୁଖ୍ୟ ଲକ୍ଷ୍ୟ ରହିଛି । ଗୁରୁବାବୁଙ୍କୁ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ପ୍ରଚାର ଦିଗରେ ସାହାଯ୍ୟ କରୁଥିବା ଓଡିଶାର ଓଡ଼ିଆ ବୀର

ମାନଙ୍କପରି ମଧ୍ୟ ଝାଡ଼ଖଣ୍ଡର ଓଡ଼ିଆ ଜନତା କେବେ ଭୁଲିପାରିବେ ନାହିଁ । ବର୍ତ୍ତମାନ ଗୁରୁବାବୁଙ୍କ ନିର୍ଦ୍ଦେଶରେ ବିଭିନ୍ନ ଗାଆଁରେ ସମସ୍ତ ପିଲା ଓଡ଼ିଆ ମଧୁବର୍ଣ୍ଣବୋଧ ର ଜ୍ଞାନ ପାଇଛନ୍ତି ଭବିଷ୍ୟତରେ ସେହି ପିଲାମାନେ ସାରଳା ମହାଭାରତ ବା ଓଡ଼ିଆ ସାହିତ୍ୟର ଇତିହାସକୁ ପଢ଼ି ନିଜେ ଜ୍ଞାନ ଅର୍ଜନ କରିବେ ଏହା ଆମ ବିଚ୍ଛିନ୍ନାଞ୍ଚଳ ପାଇଁ ଗର୍ବ ଓ ଗୌରବର ବିଷୟ ଅଟେ ।

ଗୁରୁବାବୁ କୌଣସି ସଭା କରି ଭାଷଣ ଦେବାକୁ ପସନ୍ଦ କରନ୍ତି ନାହିଁ । ତାଙ୍କ ମୁଖ୍ୟ ଭୂମିକା ହେଲା କର୍ମ କରିବା । ଓଡ଼ିଆଜାତିର ଉନ୍ନତି କିପରି ହେବ ଓଡ଼ିଆଭାଷା ସାହିତ୍ୟର ବିକାଶ କିପରି ହେବ । ଝାଡ଼ଖଣ୍ଡକୁ ଆସିଲେ ତାଙ୍କର ନିଜ ଘର ପରିବାରଙ୍କ କଥା ସେ ଭୁଲି ଯାଆନ୍ତି ଏଠି ଚିନ୍ତା ଥାଏ କେବଳ ଓଡ଼ିଆମାନେ କିପରି ନିଜ ମାତୃଭାଷା ଓଡ଼ିଆକୁ ପଢ଼ି ଲେଖି ପାରିବେ ଓ ନିଜ ଜାତିର ଟେକ ରଖିପାରିବେ । ଗୁରୁବାବୁ ଝାଡ଼ଖଣ୍ଡରେ ବିଚ୍ଛିନ୍ନାଞ୍ଚଳ ଓଡ଼ିଆ ଶିକ୍ଷାପ୍ରସାର ସମିତି ଗଠନ କରାଇଛନ୍ତି । ଝାଡ଼ଖଣ୍ଡରେ ପାଞ୍ଚଟି ବୃହତ ଓଡ଼ିଆ ପାଠାଗାର ତଥା ଏକଶହରୁ ଅଧିକ ଓଡ଼ିଆ ବିଦ୍ୟାଳୟର ସ୍ଥାପନ ନିଜେ କରାଇଛନ୍ତି । ଏଣୁ ମୁଁ ତାଙ୍କ ବିଷୟରେ ଯାହାବି ଲେଖିବି ତାଙ୍କ କର୍ମ ହିସାବରେ ମୋର ଲେଖା ଅନେକ ଛୋଟ ହୋଇ ରହିବ । ଗୁରୁବାବୁଙ୍କୁ ଝାଡ଼ଖଣ୍ଡର ଓଡ଼ିଆ ଭାଷାସଂସ୍କୃତିର ବିକାଶ ଦିଗରେ ସାହାଯ୍ୟକାରୀଭାବେ ଶ୍ରୀ ପ୍ରବୋଧ କୁମାର ମିଶ୍ର, ଶ୍ରୀ ଜଗଦୀଶ ମହାପାତ୍ର, ଶ୍ରୀ ରବୀନ୍ଦ୍ର କୁମାର ମିଶ୍ର, ଶ୍ରୀ ରବୀନ୍ଦ୍ର ଶତପଥି, ଶ୍ରୀ ତାରାଚାନ୍ଦ ମହାନ୍ତି, ଶ୍ରୀ ସୁମନ୍ତ ମହାନ୍ତି, ଶ୍ରୀ ଜୟରାମ ଦାଶପାତ୍ର, ଶ୍ରୀ ହଳଧର ଦାଶ, ଶ୍ରୀ ଶଶାଙ୍କ ଶେଖର ପ୍ରହରାଜଙ୍କ ଭୂମିକା ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

*ସାଧାରଣ ସଂପାଦକ, ଝାଡ଼ଖଣ୍ଡ ପ୍ରଦେଶ ଓଡ଼ିଆ ଶିକ୍ଷକ ସଂଘ,*
*ଚକ୍ରଧରପୁର ।*



# ବିଚ୍ଛିନ୍ନାଞ୍ଚଳ ଓଡ଼ିଆଙ୍କ ଦରଦୀବନ୍ଧୁ : ଗୁରୁପ୍ରସାଦ ମହାନ୍ତି

ପ୍ରବୋଧ କୁମାର ମିଶ୍ର

ଓଡ଼ିଶାରୁ ''ଗୁରୁପ୍ରସାଦ ଅଭିନନ୍ଦନ ସମିତି'' ତରଫରୁ ଗୋଟିଏ ପତ୍ର ପାଇଲି । ଉକ୍ତ ସମିତି – '' ବିଚ୍ଛିନ୍ନାଞ୍ଚଳ ସେବାରେ ଗୁରୁପ୍ରସାଦ ମହାନ୍ତି''ଙ୍କ ବିଷୟରେ କିଛି ଲେଖି ପଠାଇବା ପାଇଁ ଅନୁରୋଧ କରିଛନ୍ତି ।

ତେଣୁ ଲେଖିବସିଲି । ବନ୍ଧୁ ଗୁରୁପ୍ରସାଦ ମହାନ୍ତିଙ୍କୁ ମୁଁ ଯେତେଦୂର ଜାଣିଛି, ସେ ବିଷୟରେ ଲେଖୁଛି । ପଶ୍ଚିମ ଓ ପୂର୍ବ ସିଂହଭୂମି ଓ ଷଢ଼େଇକଳା - ଖରସୁଆଁ ଅଞ୍ଚଳରେ ଲକ୍ଷ ଲକ୍ଷ ଓଡ଼ିଆ ନିଜର ମାତୃଭାଷା ଓଡ଼ିଆ ଓ ଓଡ଼ିଆ ସଂସ୍କୃତିକୁ ଭୁଲି ଯାଉଥିବା କଥା ଆଉ ଲୁଚି ରହିନାହିଁ । ଅତୀତର ବିହାରୀ ଶାସକମାନେ ଓଡ଼ିଆ ଶିକ୍ଷାର ଅବସାନ ଘଟାଇବାରେ ସଦା ତତ୍ପର ଥିବା ଯୋଗୁଁ ଆଜି ଶହ ଶହ ଖାଣ୍ଟି ଓଡ଼ିଆ ଶିକ୍ଷା ସଂସ୍ଥାସବୁ ହିନ୍ଦୀଶିକ୍ଷା ସଂସ୍ଥାରେ ରୂପାନ୍ତରିତ । ମାତୃଭାଷାକୁ ଭୁଲି ଓଡ଼ିଆ ପିଲାଏ ଉକ୍ତ ସଂସ୍ଥାରେ ହିନ୍ଦୀ ପାଠ ପଢୁଛନ୍ତି । ଏହାର ମୂଳ କାରଣ ହେଲା – ଓଡ଼ିଆ ପାଠ୍ୟ ପୁସ୍ତକର ଘୋର ଅଭାବ, ଓଡ଼ିଆ ଶିକ୍ଷକଙ୍କୁ ଅଣଓଡ଼ିଆ ଶିକ୍ଷା ସଂସ୍ଥାକୁ ବଦଳି କରି ତାଙ୍କ ବଦଳରେ ହିନ୍ଦୀ ଶିକ୍ଷକ ଯୋଗାଇବା ଏବଂ ପରିଶେଷରେ ଅନେକ ବେସରକାରୀ ଓଡ଼ିଆ ବିଦ୍ୟାଳୟମାନଙ୍କର ଘୋର ଅଭାବ ଘଟାଇବା ଓ ସରକାରୀ ଉଦାସୀନତା ।

ଓଡ଼ିଶା ପ୍ରଦେଶରୁ , ସମୟ ସମୟରେ ଉପରୋକ୍ତ ଅସୁବିଧାର କଥା, ଅନେକ ଓଡ଼ିଆ ନେତାମାନେ ସଭା, ସମିତି କରି ଓ ଭାଷଣ ମାଧ୍ୟମରେ ନିଜ ବିଚାର ରଖୁଥିଲେ ସିନା କିନ୍ତୁ ସବୁ କଥାରେ ସରକାରୀ କଳ ଆଖିବୁଜି ରହୁଥିଲେ । ସେ କଥା ଏବେ ମଧ୍ୟ ଚାଲିଛି ।

ଠିକ୍ ଏହି ଘଡ଼ିସନ୍ଧି ବେଳେ ଓଡ଼ିଶା ପ୍ରଦେଶରେ ସ୍ୱତନ୍ତ୍ରତା ସଂଗ୍ରାମୀ ଶ୍ରୀ ସଚ୍ଚି ମିଶ୍ର, ଚିନ୍ତାମଣି ପାଣିଗ୍ରାହୀଙ୍କ ସହ ଅନେକ ନେତା ବିଚ୍ଛିନ୍ନାଞ୍ଚଳ ସ୍ଥିତ ଓଡ଼ିଆଙ୍କ, ଓଡ଼ିଆଶିକ୍ଷା ଓ ସଂସ୍କୃତିର ଦୂରବସ୍ଥାକୁ ରୋକିବା ପାଇଁ କିଛି କରିବାକୁ ଆଗେଇ ଆସିଲେ । ଫଳରେ ''ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ''ର ଜନ୍ମ ହେଲା । ଏହି

ସଂସ୍ଥାର ମାଧ୍ୟମରେ ସର୍ବପ୍ରଥମ ଶ୍ରୀ ସଚ୍ଚୀ ମିଶ୍ରଙ୍କ ନେତୃତ୍ୱରେ ଗୋଟିଏ ଦଳ ଚକ୍ରଧର ପୁର ସ୍ଥିତ ପୁରୁଣାବସ୍ତୀକୁ ଆସିଲେ । ଉକ୍ତ ଦଳର ସଭ୍ୟଥିଲେ ପ୍ରଖ୍ୟାତ ସମାଜସେବୀ ଭଗବାନ ରଥ, ଅବସର ପ୍ରାପ୍ତ ପଦାଧିକାରୀ ଡଃ. ଗୁରୁପ୍ରସାଦ ମହାନ୍ତି ତଥା ପର୍ଶୁରାମ ଦ୍ୱିବେଦୀ । ଉକ୍ତ ଦଳସଙ୍ଗେ, ପ୍ରବନ୍ଧ ଲେଖକସହ ପୁରୁଣାବସ୍ତୀ ଓଡ଼ିଆ ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ରବୀନ୍ଦ୍ର ଷଡ଼ଙ୍ଗୀ ଓ ଓଡ଼ିଆ ଯୁବନେତା ଶ୍ରୀ ସରୋଜ ପ୍ରଧାନ ନିକଟରେ ଥିବା ଓଡ଼ିଆ ଜନବସତି – କେରା, କୁଢ଼ୈକଳା, ସୋଣୁଆ ଚୈନପୁର ପ୍ରଭୃତିକୁ ଯାଇ ଓଡ଼ିଆ ଶିକ୍ଷାର ଦୁର୍ଦ୍ଦଶା ଓ ଓଡ଼ିଆମାରଣ ନୀତି ସମ୍ବନ୍ଧରେ ଅନେକକଥା ଜାଣି ପାରିଲେ । ପରବର୍ତ୍ତୀ କାଳରେ ଓଡ଼ିଶାରୁ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ , ଏବଂ ଅନେକ ଓଡ଼ିଆ ପ୍ରେମୀ ବିଧାୟକ ଓ ଖୋଦ୍ ବାଚସ୍ପତି ଶ୍ରୀ ଶରତ କର ମହାଶୟ ଆସି ଜାମସେଦପୁର ଠାରେ ଝାଡ଼ଖଣ୍ଡ ପ୍ରଦେଶ ସରକାର ଅଧୀନସ୍ଥ – ମନ୍ତ୍ରୀ ଡାଃ ଦୀନେଶ ଷଡ଼ଙ୍ଗୀ ଓ ସୁଦର୍ଶନ ଭଗତ ଶିକ୍ଷାମନ୍ତ୍ରୀ ଏବଂ ଅନେକ ଉଚ୍ଚପଦାଧିକାରୀ ମାନେ ଏକ ବୈଠକରେ ମିଳିତ ହେଲେ । ବୈଠକରେ ଗୃହୀତ ହୋଇଥିବା – ଓଡ଼ିଆ ଶିକ୍ଷାପାଇଁ ପାଠ୍ୟପୁସ୍ତକ, ଓଡ଼ିଆ ଶିକ୍ଷକ ନିଯୁକ୍ତି ସହ ଅନେକ କଥା ବିଷୟରେ ଆଲୋଚନା ହେଲା । ବିଚାର ହେଲା ଯେ ଓଡ଼ିଆ ପାଠ୍ୟପୁସ୍ତକ ଯୋଗାଇବା ଓ ଓଡ଼ିଆ ଶିକ୍ଷକ ନିଯୁକ୍ତି ସହ ଓଡ଼ିଆ ସ୍କୁଲମାନ ପ୍ରତିଷ୍ଠା ପାଇଁ ସରକାର ଚେଷ୍ଟା କରିବେ । ବିଚ୍ଛିନ୍ନାଞ୍ଚଳର ଏହି ଇଲାକାର ଓଡ଼ିଆମାନେ ଅନ୍ଧାରରୁ ଆଲୁଅକୁ ଆସିବା ଅନୁଭବ କଲେ ଫଳତଃ ଓଡ଼ିଆଶିକ୍ଷା ସୁଦୃଢ଼ କରିବାପାଇଁ ଚେତନା ଜାଗି ଉଠିଲା । ଏସବୁ କଥା ପଛରେ ଅନ୍ୟାନ୍ୟ ବିଶିଷ୍ଟ ନେତାମାନଙ୍କ ସହ ଡଃ. ଗୁରୁବାବୁଙ୍କ ପ୍ରଚେଷ୍ଟା, ଏଠାକାର ଓଡ଼ିଆଙ୍କ ପାଇଁ ଏକ ଅଭୁଲା ସ୍ମୃତି ।

ଓଡ଼ିଶା ପ୍ରଦେଶ ଓ ବିଚ୍ଛିନ୍ନାଞ୍ଚଳରେ ଥିବା ଓଡ଼ିଆଙ୍କ ମଧ୍ୟରୁ ଯଦି ୫୦ଜଣ ଓଡ଼ିଆ – ଗୁରୁବାବୁଙ୍କ ପରି ସକ୍ଷମ ଓ ସମର୍ପିତ ସମାଜ ସେବା କରି ପାରନ୍ତେ ତା ହେଲେ ବିଚ୍ଛିନ୍ନାଞ୍ଚଳରୁ ଓଡ଼ିଆଭାଷା -ସଂସ୍କୃତି ଲୋପ କେବେହେଁ ହେବନାହିଁ ବୋଲି ମୋର ଦୃଢ଼ ବିଶ୍ୱାସ ।

ଅବସର ପ୍ରାପ୍ତି ପରେ ଆରାମ ଜୀବନ ବିତାଇବାକୁ କିଏ ନ ଚାହେଁ ? କିନ୍ତୁ ଗୁରୁବାବୁ ସେ ଜୀବନ ବିତାଇବାରେ ଆଗ୍ରହୀ ନହୋଇ, ସ୍ୱର୍ଗତ ଉତ୍କଳମଣିଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଜାତିସେବା ବିଶେଷକରି ବିଚ୍ଛିନ୍ନାଞ୍ଚଳର ସେବାରେ ସମର୍ପିତ ହୋଇଥିବାରୁ ଓଡ଼ିଆଜାତି ତାଙ୍କଠାରେ ଋଣୀ । ଭଗବାନ ତାଙ୍କୁ ଦୀର୍ଘାୟୁ କରି ରଖିଥାନ୍ତୁ ଯଦ୍ୱାରା ଏ ଅଞ୍ଚଳରୁ ଓଡ଼ିଆ ଲୋପ ନ ହୋଇ ଏକ ସଶକ୍ତ ଓ ଉନ୍ନତ ଭାଷା ରୂପେ ଆଦର୍ଶ ହୋଇପାରୁ । ଏହାହିଁ ମୋର କାମନା ।

*ସଭାପତି, ପୂର୍ଣ୍ଣାଙ୍ଗ ଉତ୍କଳ ଉନ୍ନୟନ ନ୍ୟାସୀମଣ୍ଡଳ, ଚକ୍ରଧରପୁର ଶାଖା, ଝାଡ଼ଖଣ୍ଡ*



# ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କ ସମ୍ପର୍କରେ....

ଡଃ ଗୋପାଳକୃଷ୍ଣ ଶ୍ରୀଚନ୍ଦନ

ଡକ୍ଟର ଗୁରୁପ୍ରସାଦ ମହାନ୍ତି ଓଡ଼ିଶାର ପଶୁଚିକିତ୍ସା ଓ ପଶୁପାଳନ ବିଭାଗର ନିର୍ଦ୍ଦେଶକ ଥାଇ ତାଙ୍କର ଏକ ପୁସ୍ତକ ରଚନା ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀଦ୍ୱାରା ପୁରସ୍କୃତ ହୋଇଥିବା କଥା ମୁଁ ଜାଣିଥିଲି । ମାତ୍ର ତାଙ୍କ ସହ ପ୍ରତ୍ୟକ୍ଷ ସଂପର୍କ ଓ ଦେଖାସାକ୍ଷାତ ଘଟି ନଥିଲା । ମୁଁ ୧୯୯୫ ଜାନୁୟାରୀ ୮ ତାରିଖରେ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟହେଲି । ଗୁରୁବାବୁ ସମ୍ମିଳନୀ ପାଇଁ ଅଧିକ ସମୟ ଦେଇ ସକ୍ରିୟ ହୋଇ ପାରି ନଥିଲେ । ମାତ୍ର ଉତ୍କଳ ସମ୍ମିଳନୀ ପାଇଁ ତାଙ୍କର ଥିଲା ବହୁତ ନିଷ୍ଠା ଓ ଆଗ୍ରହ । ଗୋଟିଏ କାର୍ଯ୍ୟ କରି ଗୁରୁପ୍ରସାଦ ଆମ୍ଭମାନଙ୍କର, ବିଶେଷତଃ ମୋର ଦୃଷ୍ଟି ଆକର୍ଷଣ କଲେ ଓ ପ୍ରଶଂସାଭାଜନ ହେଲେ । ସେ କଥା ଯଥା ସ୍ଥାନରେ ଉଲ୍ଲେଖ କରିବି ।

ଖ୍ରୀ ୧୯୧୧ ବେଳକୁ କଟକସ୍ଥ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଜଣେ ଯୋଗ୍ୟ ବ୍ୟକ୍ତି ପ୍ରଧାନ ଶିକ୍ଷକ ଥିଲେ । ତାଙ୍କ ନାମ ନାରାୟଣ ପ୍ରସାଦ ମହାନ୍ତି, ନାରାୟଣ ପ୍ରସାଦ ମହାନ୍ତିଙ୍କର ଛାତ୍ରଥିଲେ ନେତାଜୀ ସୁବାଷ ଚନ୍ଦ୍ର ବୋଷ । ନାରାୟଣ ପ୍ରସାଦଙ୍କର ବଂଶଧର ହେଉଛନ୍ତି ଗୁରୁପ୍ରସାଦ । ଏକଥା ଡ଼କ୍ଟର ମହାନ୍ତି, ମୋତେ କହିଛନ୍ତି ଏବଂ ନାରାୟଣ ପ୍ରସାଦ ମହାନ୍ତିଙ୍କର ଏକ ଜୀବନୀ ପୁସ୍ତିକା ମୋତେ ଦେଇଥିଲେ ଏବଂ ଉତ୍କଳସମ୍ମିଳନୀ ଦ୍ୱାରା ନେତାଜୀଙ୍କ ପ୍ରଧାନ ଶିକ୍ଷକ ନାରାୟଣ ପ୍ରସାଦ ମହାନ୍ତିଙ୍କର ସ୍ମୃତିରକ୍ଷା ସଂପର୍କରେ କିଛି କରିବା ପାଇଁ କହିଥିଲେ । ଏ ସଂପର୍କରେ ରାଜ୍ୟସରକାରଙ୍କର ଦୃଷ୍ଟି ଆକର୍ଷଣ କରି ଚିଠିପତ୍ର ଲେଖିଥିବା କଥା ମୋର ମନେ ପଡୁଛି ।

ଗୁରୁପ୍ରସାଦ କଟକ ବାଦାମବାଡ଼ି ଜଗନ୍ନାଥ ସଡ଼କ ଅଞ୍ଚଳରେ ରହନ୍ତି ଏବଂ ନିଜ ବାସ ଭବନର ନାମ ରଖିଛନ୍ତି 'ଆଳିପିଙ୍ଗଳ ନିବାସ' । ନିଜର ଗ୍ରାମୀଣ ପରିଚୟ, ନିଜ ଭିଟାମାଟିର ସ୍ମୃତି ଅହର୍ନିଶ ଜାଗ୍ରତ ରଖିବା ନିମନ୍ତେ ଡକ୍ଟର ମହାନ୍ତି କଟକସ୍ଥ ନିଜ ବାସଭବନରେ ନାମ ଏପରି ରଖିଛନ୍ତି ।

ସେ ପଶୁ ଚିକିତ୍ସା ଓ ପଶୁପାଳନ ବିଦ୍ୟାରେ ସର୍ବୋଚ୍ଚ ଡିଗ୍ରୀ ବିଦ୍ୟାବାରିଧି (ପି.ଏଚ.ଡ଼ି) ପ୍ରାପ୍ତ ହୋଇଛନ୍ତି ଏବଂ ଏହି ଡିଗ୍ରୀ ପ୍ରାପ୍ତି ନିମନ୍ତେ ଯୁକ୍ତରାଷ୍ଟ୍ର ଆମେରିକାରେ

ଅଧ୍ୟୟନ ଓ ଗବେଷଣା କରିଛନ୍ତି । ରାଜ୍ୟ ପଶୁ ଚିକିତ୍ସା ଓ ପଶୁପାଳନ ବିଭାଗର ନିର୍ଦ୍ଦେଶକ ଭାବେ ସୁନାମ ଅର୍ଜନ କରି ଅବସର ଗ୍ରହଣ କରିଛନ୍ତି ସେ । ଆମେରିକାରେ ଅଧ୍ୟୟନ କରିଥିବାରୁ ଏବଂ ତାଙ୍କର ପୁଅ ବୋହୂ ସେଠାରେ ରହୁଥିବାରୁ ଆମେରିକା ମହାଦେଶ ସହିତ ଡକ୍ଟର ମହାନ୍ତିଙ୍କର ନିରବଚ୍ଛିନ୍ନ ସଂପର୍କ ଅଛି, ଯାହା ଉତ୍କଳସମ୍ମିଳନୀ ସହିତ ତାଙ୍କର ସଂପୃକ୍ତି ପରେ ତାଙ୍କର ଆମେରିକା ସଂପର୍କ ଉତ୍କଳ ସମ୍ମିଳନୀର ଆମେରିକାରେ ପ୍ରଚାର ଓ ପ୍ରସାର ନିମନ୍ତେ ଅନୁକୂଳ ହୋଇଛି ଏବଂ ଆର୍ଥିକ ଦୃଷ୍ଟିରୁ ସମ୍ମିଳନୀ ପ୍ରତି ଲାଭଦାୟକ ହୋଇଛି - ଏହା ମୋର ନିଜ ଅନୁଭୂତି ଓ ଅଭିଜ୍ଞତା ।

ହଁ, ଟିକିଏ ପଛକୁ ଫେରିଯାଏ । ଉତ୍କଳ ସମ୍ମିଳନୀର ନିୟମାବଳୀରେ ଅଛି - ସମ୍ମିଳନୀର ସଦର ମହକୁମା ହେଉଛି, ଓଡ଼ିଶାର ରାଜଧାନୀ ଭୁବନେଶ୍ୱର । ମାତ୍ର ୧୯୯୫ ଜାନୁୟାରୀ ୮ ତାରିଖ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର କାର୍ଯ୍ୟାଳୟ ଭୁବନେଶ୍ୱରରେ ନଥିଲା । ସମ୍ମିଳନୀର ସଭାପତି ବାବୁଜୀ ଡକ୍ଟର ରାଧାନାଥ ରଥ କଟକ ଗୋପବନ୍ଧୁ ଭବନରେ ଏବଂ ସାଧାରଣ ସମ୍ପାଦିକ / ମହାସଚିବ ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ବ୍ରହ୍ମପୁରସ୍ଥ ସଭାଗୃହ ମାର୍ଗରେ ଅବସ୍ଥାନ କରୁଥିଲେ । ତେଣୁ ବ୍ରହ୍ମପୁରରୁ ବ୍ରିଫକେସ୍‌ରେ ସମ୍ମିଳନୀ କାଗଜପତ୍ର ଧରି ବସନ୍ତ ବାବୁ କଟକ ଗୋପବନ୍ଧୁ ଭବନକୁ ସଭାପତିଙ୍କ ନିକଟକୁ ଆସନ୍ତି ଏବଂ ଉତ୍କଳ ସମ୍ମିଳନୀର ସାଂଗଠନିକ କାର୍ଯ୍ୟ ଏପରି ଚାଲିଥାଏ ।

୧୯୯୫ ଜାନୁୟାରୀ ୮ ତାରିଖରେ ଭୁବନେଶ୍ୱରସ୍ଥ ରୋଟାରୀ ଭବନରେ ଉତ୍କଳ ସମ୍ମିଳନୀର ପରିଷଦ ବୈଠକ ବସି ଯେଉଁ କାର୍ଯ୍ୟ ନିର୍ବାହୀ ସମିତି ଗଠିତ ହେଲା, ସେଥିରେ ମୁଁ (ଡକ୍ଟର ଗୋପାଳ କୃଷ୍ଣ ଶ୍ରୀଚନ୍ଦନ) ସଚିବ ଏବଂ ଡକ୍ଟର ଭାବଗ୍ରାହୀ ମିଶ୍ର (ଆଚାର୍ଯ୍ୟ ଭାବାନନ୍ଦ) କୋଷାଧ୍ୟକ୍ଷ ଭାବେ ନିର୍ବାଚିତ ହୋଇଥିଲୁଁ । ଉପସଭାପତିଭାବେ ନିର୍ବାଚିତ ହରିଶ୍ଚନ୍ଦ୍ର ବକ୍ସି ପାତ୍ର ସେତେବେଳେ ରାଜ୍ୟ ମନ୍ତ୍ରୀ ଥାନ୍ତି ଏବଂ ଭୁବନେଶ୍ୱରରେ ଅବସ୍ଥାନ କରୁଥାନ୍ତି । ଉତ୍କଳ ସମ୍ମିଳନୀ କାର୍ଯ୍ୟ ନିର୍ବାହୀ ସମିତି ବୈଠକ ଭ୍ରାମ୍ୟମାଣ ଭାବେ ଅନୁଷ୍ଠିତ ହେଉଥିଲା । କେତେବେଳେ ବକ୍ସିପାତ୍ରଙ୍କ ସରକାରୀ ବାସଭବନରେ ତ କେତେବେଳେ 'ସମୟ'ର ସମ୍ପାଦକ ସାତକଡ଼ି ହୋତାଙ୍କର ୯ - ଷ୍ଟେସନ ସ୍କୋୟାରରେ ଅବସ୍ଥିତ ବାସଭବନରେ ।

ଭାବଗ୍ରାହୀ ବାବୁ ଓ ମୁଁ ଗୋଟିଏ ଭଡ଼ାଘର ସନ୍ଧାନରେ ଥାଉଁ ଅଫିସ୍ କରିବାପାଇଁ । ଭୁବନେଶ୍ୱରର ୩୧ - ଏ - ଜନପଥ, ୟୁନିଟ୍-୩, ଖାରବେଳ ନଗରରେ ଗୋଦାବରୀଶ ସାହିତ୍ୟ ସଂସଦର 'ସାହିତ୍ୟ ଭବନ' ଅବସ୍ଥିତ । ଭାବଗ୍ରାହୀବାବୁ ଗୋଦାବରୀଶ ସାହିତ୍ୟ ସଂସଦର ପ୍ରାକ୍ତନ ସଭାପତି ଓ ମୁଁ ଏହାର ପ୍ରତିଷ୍ଠାତା ସଦସ୍ୟ ସାଙ୍ଗକୁ ୧୯୯୬ ବେଳକୁ ଉପସଭାପତି ଭାବେ ନିର୍ବାଚିତ ହୋଇଥାଏ । ତେଣୁ ଗୋଦାବରୀଶ ସାହିତ୍ୟ ସଂସଦର

କାର୍ଯ୍ୟାଳୟ ସୌଧର ଗୋଟିଏ ବଖରାନେଇ ଉତ୍କଳ ସମ୍ମିଳନୀର କାର୍ଯ୍ୟାଳୟ ଚଳାଇବା ପାଇଁ ମୁଁ ଓ ଡକ୍ଟର ମିଶ୍ର (କୋଷାଧକ୍ଷ) ସମର୍ଥ ହେଲୁଁ । କିନ୍ତୁ ବୈଠକ କରିବା ପାଇଁ ଚେୟାର, ଟେବୁଲ ନଥାଏ । କିଣିବା ପାଇଁ ପଇସା ବି ନାହିଁ । କାର୍ଯ୍ୟାଳୟ ଖୋଲିବା ପାଇଁ ପ୍ରାଥମିକ ଖର୍ଚ୍ଚ ଦିଗକୁ ସ୍ୱର୍ଗତ ବିଜୟ କୁମାର ପାଣି ଟ ୫୦୦-୦୦ ର ଚେକ୍ ଦେଇଥାନ୍ତି । ଗୁରୁବାବୁ ସେତେବେଳକୁ ପଶୁପାଳନ ବିଭାଗର ଡ଼ାଇରେକ୍ଟର ଥାନ୍ତି । ସେ ଗୋଦାବରୀଶ ସାହିତ୍ୟ ସଂସଦରେ ଅବସ୍ଥାପିତ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟକୁ ମଝିରେ ମଝିରେ ଆସନ୍ତି । ଚୌକି, ଟେବୁଲ୍ କିଛି ନଥିବା ଦେଖି ଥରେ ଗୁରୁବାବୁ କହିଲେ – ମୁଁ ୩୦ ଗୋଟି ଫୋଲଡ଼ିଂ (ଫିତା) ଚେୟାର ଯୋଗାଇ ଦେବି । ଡାଇରେକ୍ଟର ଭାବେ ସେ ଅତ୍ୟନ୍ତ କାର୍ଯ୍ୟ ବ୍ୟସ୍ତ ଅଫିସର । ମୁଁ ଲାଗିଥାଏଁ, କେମିତି ୩୦ ଗୋଟା ଚେୟାର କିଣିବା ପାଇଁ ଆବଶ୍ୟକ ଅର୍ଥ ଗୁରୁ ବାବୁଙ୍କ ଠାରୁ ମିଳିଯାଉ । ଦିନେ କଟକରୁ ଗୁରୁବାବୁ ଫୋନ୍ କଲେ –'' ମୋ ଲୋକ ଚେୟାର୍ ନେଇ ଯାଉଛି । ପୂର୍ବାହ୍ନ ୧୧ଟାରେ ଗୋଦାବରୀଶ ସାହିତ୍ୟ ସଂସଦସ୍ଥ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟଠାରେ ଗାଡ଼ି ପହଞ୍ଚିବ । ଆପଣ ଉପସ୍ଥିତ ଥିବେ ।'' ମୁଁ ଯାଇ କାର୍ଯ୍ୟାଳୟରେ ଉପସ୍ଥିତ ଥିଲି । ୩୦ ଚେୟାର ନେଇ ଗାଡ଼ି ପହଞ୍ଚିଲା । ତାକୁ ଅଫିସ ରୁମ୍‌ରେ ରଖାଇଲି । ରସିଦ ଲେଖିଦେଲି ଏବଂ ତା ସାଙ୍ଗକୁ ଏକ ପ୍ରଶଂସା ପତ୍ର ଦେଇଥିଲି । ଏ ପର୍ଯ୍ୟନ୍ତ ସେହି ଚେୟାରଗୁଡ଼ିକ ଉତ୍କଳ ସମ୍ମିଳନୀର କାର୍ଯ୍ୟାଳୟରେ ଅଛି । ଏହି ଚେୟାରଗୁଡ଼ିକ ଯୋଗୁଁ ସେହି ଦିନଠାରୁ କାର୍ଯ୍ୟ ନିର୍ବାହୀ ସମିତି ବୈଠକ କରିବା ସମ୍ଭବପର ହୋଇପାରୁଛି । ତାପରେ ଭାବଗ୍ରାହୀବାବୁ ଓ ମୁଁ ଅଫିସ୍ ପାଇଁ ଟେବୁଲ୍ ଚେୟାର କିଣିଥିଲୁଁ । ବହ୍ନିପାତ୍ର ଗୋଟିଏ ଗଡ଼୍‌ରେଜ ଛୋଟ ଆଲମାରି ଯୋଗାଇ ଦେଇଥିଲେ । ଏହିପରି ଭାବେ ଭୁବନେଶ୍ୱରରେ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟ ଚାଲିବା ପାଇଁ ଗୁରୁବାବୁ ଯେଉଁ ଆଖିଦୃଶିଆ ସାହାଯ୍ୟ କରିଥିଲେ, ତାହା ଭୁଲିବାର ନୁହେଁ !

ଜାନୁୟାରୀ ୮, ୧୯୯୫ ରେ ଆମ୍ଭେମାନେ କାର୍ଯ୍ୟନିର୍ବାହୀ ଭାବେ ନିର୍ବାଚିତ ହେଲାବେଳକୁ, ଯାହା ମନେପଡୁଛି, ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ସଂଖ୍ୟା ୬୦ ଭିତରେ ଥିଲେ, ସେଥିରୁ ବ୍ରହ୍ମପୁରର (ଗଞ୍ଜାମ ଜିଲ୍ଲାର) ୪୦ ଜଣ ଥିଲେ । ଅବଶ୍ୟ ଏ ଆଜୀବନ ସଂଖ୍ୟା ଉଣିଶ-ବିଶ୍ ହୋଇପାରେ । ଅନୁମାନରୁ କହୁଛି । ଆମେ, ଆଜୀବନ ସଭ୍ୟ ସଂଖ୍ୟା ବଢ଼ାଇବାକୁ ନିଷ୍ପତ୍ତି ନେଲୁଁ । ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ାରେ ରହୁଥିବା ଓଡ଼ିଆମାନଙ୍କୁ ଆଜୀବନ ସଭ୍ୟ କରିବାକୁ ଚିନ୍ତା କଲୁଁ । ଉତ୍କଳ ସମ୍ମିଳନୀ ଆଜୀବନ ସଭ୍ୟ ଚାନ୍ଦା ରଖାଯାଇଛି ଟ ୧୦୦.୦୦ । ଏବେ ବି ଚାନ୍ଦାପରିମାଣ ବଢ଼ା ଯାଇନାହିଁ ।

ଉତ୍କଳ ସମ୍ମିଳନୀ କୋଷାଧକ୍ଷ ଡ଼କ୍ଟର ଭାବଗ୍ରାହୀ ମିଶ୍ର (ଆଚାର୍ଯ୍ୟ ଭାବାନନ୍ଦ) ଓଡ଼ିଶାର ଶିକ୍ଷା ବିଭାଗ ଅଧୀନରେ ଓଡ଼ିଆ ଆଧ୍ୟାପକ ରହିବାପରେ ଉଚ୍ଚତର ଗବେଷଣା

ପାଇଁ ଯୁକ୍ତରାଷ୍ଟ୍ର ଆମେରିକା ଯାଇଥିଲେ ଏବଂ ସେଠାରେ ଆଠ ବର୍ଷ ଅଧ୍ୟାପକ ଥିଲେ । ତେଣୁ ସେ ଚାହୁଁଥିଲେ, ଆମେରିକା ମହାଦେଶରେ ଥିବା ଓଡ଼ିଆମାନେ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ହୁଅନ୍ତୁ । ଗୁରୁବାବୁ ବି ସେଇୟା ଚାହୁଁଥିଲେ । ଭାବଗ୍ରାହୀବାବୁ ତାଙ୍କର ଦୁଇଥର ଆମେରିକା ଯିବା ଅବସରରେ ମାତ୍ର ଦୁଇଜଣଙ୍କୁ ଆଜୀବନ ସଭ୍ୟ କରାଇଥିଲେ । ଏହି ସଭ୍ୟ କରାଇବା ପୂର୍ବରୁ ଆମ୍ଭେ ଆଲୋଚନା କରି ସ୍ଥିର କଲୁ, ସେତେବେଳେ ଆଜୀବନ ଚାନ୍ଦା ଶହେ ଟଙ୍କା ମାତ୍ର ଆମେରିକାନ୍ ଅଢ଼େଇ ଡଲାର ହେଉଥିବାରୁ ଆମେରିକାବାସୀ ଓଡ଼ିଆମାନଙ୍କ ପାଇଁ ଆଜୀବନ ସଭ୍ୟଚାନ୍ଦା ଅଧିକ ରଖାଯିବା ଉଚିତ ହେବ । ଆମେରିକାରେ ଦମ୍ପତିସଭ୍ୟ ହେବାକୁ ପସନ୍ଦ କରନ୍ତି । ମାତ୍ର ଉତ୍କଳ ସମ୍ମିଳନୀ ନିୟମାବଳୀରେ ଆଜୀବନ ଦମ୍ପତି ସଭ୍ୟର ବ୍ୟବସ୍ଥା ନଥିଲା । ତେଣୁ ମୁଁ, କୋଷାଧ୍ୟକ୍ଷ ଭାବଗ୍ରାହୀ ବାବୁ ସ୍ଥିର କଲୁଁ, ଜଣେ ଆଜୀବନ ସଭ୍ୟ ହେବାକୁ ଚାହିଁଲେ ପଚିଶ ଡ଼ଲାର ଏବଂ ସ୍ୱାମୀ ସ୍ତ୍ରୀ ଯୁଗ୍ମ ବା ଦମ୍ପତି ସଭ୍ୟ ହେବାକୁ ଚାହିଁଲେ ଚାଳିଶ ଡ଼ଲାର ଦେବା ଉଚିତ ହେବ । ଏହି ପ୍ରକାରେ ଭାବଗ୍ରାହୀ ବାବୁ ଆଗରୁ ଦୁଇଜଣଙ୍କୁ ସଭ୍ୟ କରିଥିଲେ ।

ଗୁରୁବାବୁଙ୍କର ଆମେରିକା ଯିବାର ଥାଏ । ଦିନେ ୧୦/୧୧ଟା ବେଳକୁ କଟକରୁ ଫୋନ୍ କଲେ –"ମୁଁ ଆଜି ଆମେରିକା ଅଭିମୁଖେ ଭୁବନେଶ୍ୱର ବିମାନଘାଟୀରୁ ଦିନ ଗୋଟାଏ ବେଳେ ଯାତ୍ରା କରିବି । ଆମେରିକାରେ ବାସ କରୁଥିବା ଓଡ଼ିଆମାନଙ୍କ ମଧ୍ୟରୁ ଆଜୀବନ ସଭ୍ୟ କରିବା ନିମନ୍ତେ ଏକ ରସିଦ ବହି ମୋତେ ଯୋଗାଇଦେବା ବ୍ୟବସ୍ଥା କରନ୍ତୁ । ଆଉ କେତେ ଡଲାର ଆଜୀବନ ସଭ୍ୟଚାନ୍ଦା ଆଦାୟ କରାଯିବ, କହନ୍ତୁ । ମୁଁ ଫୋନ୍‌ରେ କୋଷାଧ୍ୟକ୍ଷ ଭାବଗ୍ରାହୀ ବାବୁଙ୍କ ସହ ଆଲୋଚନା କରି ଗୁରୁବାବୁଙ୍କୁ ଫୋନ୍‌ରେ କହିଲି -"ଆପଣ ନିତ୍ୟାନନ୍ଦ ମହାପାତ୍ରଙ୍କ ଘରପାଖକୁ ଆସିଲେ ପନ୍ଦରଟିକିଆ ରସିଦ ବହିଟିଏ ସେଠାରୁ ନେଇଯିବେ, ମୁଁ ତାଙ୍କ ପାଖରେ ରସିଦ ବହି ପହଞ୍ଚାଇ ଦେବି । ସିଙ୍ଗଲ ଲାଇଫ ମେମ୍ବରସିପ୍ ଚାନ୍ଦା ପଚିଶ ଡ଼ଲାର ଓ ଡ଼ବଲ (କପଲ୍) ମେମ୍ବରସିପ୍ ଚାନ୍ଦା ଚାଳିଶ ଡ଼ଲାର ହିସାବରେ ଆଜୀବନ ସଭ୍ୟ ଚାନ୍ଦା ଆଦାୟ କରିବେ ।" ସେଇଆ ହିଁ ଘଟିଲା । ଗୁରୁବାବୁ ରସିଦ ବହି ନେଇ ଆମେରିକା ଗଲେ । ମାତ୍ର ଚାରିମାସ ରହିଲେ । ମଝିରେ ଥରେ ଫୋନ୍ କରି ସଭ୍ୟ କରିବାରେ ପ୍ରଗତି ବିଷୟରେ ଜଣାଇଲେ । ରସିଦ୍ ଆଉ ଦରକାର ପଡ଼ିବାରୁ ଜେରକ୍ସ କରି କାମ ତୁଲାଇବାକୁ ସେ ସ୍ଥିର କଲେ । ଆମେରିକା ଗଲାବେଳେ ମୋ ଦସ୍ତଖତରେ ଏକ ଶୁଭେଚ୍ଛାବାର୍ତ୍ତା ଓ ନିବେଦନ ପତ୍ର ନେଇଥିଲେ, ସେଠାରେ ଓଡ଼ିଆ ଭାଇ ଭଉଣୀମାନଙ୍କ ଉଦ୍ଦେଶ୍ୟରେ । ସଚିବ ଭାବେ ମୁଁ ଆମେରିକାବାସୀ ଓଡ଼ିଆମାନଙ୍କୁ ନିବେଦନ କରିଥିଲି ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ହେବା ନିମନ୍ତେ । ଚାରି ମାସ ପରେ ଦିନେ କଟକରୁ ଫୋନକରି କହିଲେ –"ମୁଁ

ଆମେରିକାରୁ ଫେରିଆସିଛି । ଆପଣ କାଲି ସକାଳ ୯ଟାରେ ଆସି ମୋଠାରୁ ଆଜୀବନ ସଭ୍ୟଚାନ୍ଦା ବାବଦକୁ ଚେକ୍ ନେଇଯିବେ । ଆପଣ ତୁରନ୍ତ ଆସିବେ, ଡ୍ରାଫ୍ଟ ନେଇ ଉତ୍କଳ ସମ୍ମିଳନୀ ଆକାଉଣ୍ଟରେ ଜମା କରିଦେବେ । ମୁଁ ତହିଁଆର ଦିନ ଗୁରୁବାବୁଙ୍କ ଆଳିପିଙ୍ଗଳ ନିବାସରେ ପହଞ୍ଚିଲା ବେଳକୁ ଶ୍ରୀ ବିପିନ୍ ବିହାରୀ ରଥ, ବରିଷ୍ଠ ଆଇନଜୀବୀ ଗୁରୁବାବୁଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ଉପସ୍ଥିତ ଅଛନ୍ତି । ପ୍ରାୟ ଘଣ୍ଟାଏ କାଳ ସେଠାରେ ରହି କଥାବାର୍ତ୍ତା ହେଲୁଁ । ସଭ୍ୟ ସଂଗ୍ରହ କରିବା ପାଇଁ ଯୁକ୍ତରାଷ୍ଟ୍ର ଓ କାନାଡ଼ା ଗସ୍ତ କରିବା ପାଇଁ ବିମାନ ଭଡ଼ାବାବଦ ଗୁରୁବାବୁଙ୍କର ପୁଅ ଝିଅ ଯେତିକି ଟଙ୍କା ଖର୍ଚ୍ଚ କରିଥିଲେ (ଗୁରୁବାବୁ କହିବା ମତେ) ସେ ସେତିକି ସଭ୍ୟଚାନ୍ଦା ସଂଗ୍ରହ କରି ଆଣିଛନ୍ତି । ପରେ ଆଉଥରେ ଗୁରୁବାବୁ ଆମେରିକା ଯାଇ ସଭ୍ୟସଂଗ୍ରହ କରିଥିଲେ ଏବଂ ଦୁଇଥରରେ ପ୍ରାୟ ୨୦୦ ଜଣ ଓଡ଼ିଆ ଏନ୍.ଆର.ଆଇ. ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ହୋଇଥିଲେ । ଦୁଇଥର ଯାଇ ମୁଁ ଗୁରୁବାବୁଙ୍କ କଟକ ବାସଭବନରୁ ଡ୍ରାଫ୍ଟ ଆଣି ଉତ୍କଳ ସମ୍ମିଳନୀ ପାଣ୍ଠିରେ ଜମା କରିଥିଲି । ପ୍ରାୟ ଦୁଇ ଲକ୍ଷ ଟଙ୍କା ଏ ବାବଦରେ ଗୁରୁବାବୁ ଆମେରିକାବାସୀ ଓଡ଼ିଆଙ୍କଠାରୁ ଆଜୀବନ ସଭ୍ୟଚାନ୍ଦା ସଂଗ୍ରହ କରିଥିଲେ । ଯୁକ୍ତରାଷ୍ଟ୍ର ଓ କାନାଡ଼ାରେ ଆଠଟି ଶାଖା (ଚାପ୍ଟର୍) ପ୍ରତିଷ୍ଠା କରିଥିଲେ । ସେ ନିଜେ ଦରିଆପାରି ସଂଯୋଜକ ଭାବେ ରହିଥିଲେ । ଏ ସମସ୍ତ କାର୍ଯ୍ୟ ଉତ୍କଳ ସମ୍ମିଳନୀର କାର୍ଯ୍ୟନିର୍ବାହୀ ସମିତିର ପରବର୍ତ୍ତୀ ବୈଠକରେ (ପୋଷ୍ଟ ଫ୍ୟାକ୍ଟୋ) ଅନୁମୋଦିତ ହୋଇ ବିଧି ସମ୍ମତ କରାଯାଇଥିଲା । ଏହା ହେଉଛି, ଭାରପ୍ରାପ୍ତ ସଭାପତି ବକ୍ସିପାତ୍ର ବଞ୍ଚିଥିବା ସମୟର ଘଟଣା । ଗୁରୁବାବୁଙ୍କର ଏପରି କାର୍ଯ୍ୟପାଇଁ ଉତ୍କଳ ସମ୍ମିଳନୀ କାର୍ଯ୍ୟ ନିର୍ବାହୀ ସମିତିରେ ପ୍ରଶଂସା କରାଯାଇ ପ୍ରସ୍ତାବ ଗୃହୀତ ହୋଇଛି ।

ପରେ ଜଣେ ଯୁକ୍ତରାଷ୍ଟ୍ର ଆମେରିକାବାସୀ ଓଡ଼ିଆ ଦାତାମାନଙ୍କଠାରୁ (ଶ୍ରୀ ଶରତ ଚନ୍ଦ୍ର ମହାପାତ୍ର) ଙ୍କ ଜରିଆରେ ଏକକାଳୀନ ପାଞ୍ଚ ଛଅ ଲକ୍ଷ ଟଙ୍କାର ଡ୍ରାଫ୍ଟ ଆଣି ବ୍ୟାଙ୍କରେ ଜମା କରାଇଥିଲେ ଏବଂ ''ବିଛିନ୍ନାଞ୍ଚଳ ଓଡ଼ିଆ ଶିକ୍ଷା ପ୍ରସାର ପାଣ୍ଠି'' ସୃଷ୍ଟି ହୋଇଥିଲା । ପରେ ଏହି ପାଣ୍ଠିରୁ ମିଳିଥିବା ସୁଧରେ ପ୍ରଥମେ ସିଂହଭୂମି ବିଛିନ୍ନାଞ୍ଚଳରେ ବିଦ୍ୟାଳୟ ଖୋଲାଯାଇ ଓଡ଼ିଆ ଶିକ୍ଷା ଦେବାର ବ୍ୟବସ୍ଥା ହୋଇଛି । ଏ ସମସ୍ତ କାର୍ଯ୍ୟ କାର୍ଯ୍ୟକାରୀ ହେଲାବେଳେ ମୁଁ ଉତ୍କଳ ସମ୍ମିଳନୀ ସଚିବ ଭାବେ ସକ୍ରିୟ ଥିଲି । ଉତ୍କଳ ସମ୍ମିଳନୀ କାର୍ଯ୍ୟ ନିର୍ବାହୀ ସମିତିର ଅନୁମୋଦନ ସହକାରେ ଏ ସମସ୍ତ କାର୍ଯ୍ୟ କରାଯାଇଥିଲା ଏବଂ ଏବେ କାର୍ଯ୍ୟକାରୀ ହେଉଛି । ଅବଶ୍ୟ ଏ ସମ୍ପର୍କରେ ଏହା ଭିତରେ କଣ ପରିବର୍ତ୍ତନ ଘଟିଛି, ମୋତେ ଜଣାନାହିଁ ।

ଯୁକ୍ତରାଷ୍ଟ୍ର ଆମେରିକାରେ ଗଠିତ ଶାଖାଗୁଡ଼ିକ ସହିତ ପତ୍ରାଳାପ ଦ୍ୱାରା ମୁଁ ଏତେ ଜଣାଶୁଣା ହୋଇଯାଇଥିଲି ଯେ ସେଠାରେ ଜୁଲାଇ ୪ ତାରିଖରେ, ଅନୁଷ୍ଠିତ

ଓଡ଼ିଆମାନଙ୍କ ବାର୍ଷିକ ସମ୍ମିଳନୀରେ ଯୋଗଦେବାକୁ ମୋତେ ନିମନ୍ତ୍ରଣ ମିଳିଥିଲା । ମାତ୍ର ସମୟର ସ୍ୱଳ୍ପତା ଓ ବ୍ୟୟବହୁଳ ବିମାନଯାତ୍ରା ଯୋଗୁଁ ଯାଇପାରିନଥିଲି । ଗୁରୁବାବୁ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ହେବାପରେ ପ୍ରଥମେ କଟକ ଜିଲ୍ଲା ଶାଖାର ଉପସଭାପତି ଥିଲେ । ସଭାପତିଥାନ୍ତି ସ୍ୱର୍ଗତ ଅଧ୍ୟାପକ କ୍ଷେତ୍ରମୋହନ ଶତପଥୀ । ଶ୍ରୀ ଶତପଥୀଙ୍କ ଦେହାନ୍ତ ପରେ ଗୁରୁବାବୁ ସଭାପତି ହେଲେ । କେନ୍ଦ୍ର (ଉ:ସ) କାର୍ଯ୍ୟ ନିର୍ବାହୀ ସମିତିର ସ୍ୱତନ୍ତ୍ର ନିମନ୍ତ୍ରିତ ସଭ୍ୟଭାବେ ସେ ମନୋନୀତ ହୋଇ ବି କେନ୍ଦ୍ରୀୟ ନୀତି ନିର୍ଦ୍ଧାରଣ ଓ କାର୍ଯ୍ୟାନୁଷ୍ଠାନରେ ସକ୍ରିୟ ଭାବେ ସଂପୃକ୍ତ ହେଲେ । କଟକ ଜିଲ୍ଲା ଶାଖାର ସଭ୍ୟ ସଂଖ୍ୟା ବୃଦ୍ଧି ଏବଂ ଏହାର ସାଂଗଠନିକ ଦୃଢ଼ତା ତଥା ଦକ୍ଷତା ବୃଦ୍ଧିପାଇଁ ଗୁରୁବାବୁ କଣ କରିଛନ୍ତି, ସେ ସମୟରେ ଯିଏ ତାଙ୍କ ଘନିଷ୍ଠ ସମ୍ପର୍କରେ ଆସିଛି, ସିଏ ହୃଦୟଙ୍ଗମ କରିପାରିବ । କଟକ ଜିଲ୍ଲା ଶାଖାରେ ବହୁ ରାଜନୈତିକ ଦଳୀୟ ତଥା ବହୁ ମତବାଦର ବରିଷ୍ଠ ବୁଦ୍ଧିଜୀବୀ ଆଜୀବନ ସଭ୍ୟମାନଙ୍କୁ ସାଙ୍ଗରେ ନେଇ ଏହାର ସଭାପତି ଦାୟିତ୍ୱ (ଏହି ସଙ୍ଘର ପ୍ରାଥମିକ ଗଠନ ସମୟରେ) ତୁଲାଇବା କେବଳ ଗୁରୁବାବୁଙ୍କ ପରି ବ୍ୟକ୍ତିଙ୍କ ପକ୍ଷେ ସମ୍ଭବପର ହୋଇଥିଲା । ମୁଁ ନିକଟରୁ ଏସବୁ ଦେଖିଛି ଓ ଜାଣିଛି । କାରଣ ଓଡ଼ିଶାର ପ୍ରତିଷ୍ଠିତ ଖବରକାଗଜଗୁଡ଼ିକ କଟକରେ ଏବଂ ଏହି ଖବରକାଗଜର ସଂପାଦକ ଓ ଅନ୍ୟାନ୍ୟ କାର୍ଯ୍ୟନିର୍ବାହୀମାନେ କଟକ ଜିଲ୍ଲା ଶାଖାର ସଭ୍ୟ ଏବଂ କାର୍ଯ୍ୟନିର୍ବାହୀ ସଦସ୍ୟଭାବେ କଟକ ଜିଲ୍ଲା ଶାଖାକୁ ନିୟନ୍ତ୍ରଣ କରି ଆସିଛନ୍ତି । ତେଣୁ ଏପରି ଏକ ଜିଲ୍ଲାଶାଖାର ମୁଖ୍ୟଭାବେ କାମ କରିବା ନିଶ୍ଚୟ କଷ୍ଟକର । ପୁନଶ୍ଚ ଗୁରୁବାବୁ ଜଣେ ଅବସରପ୍ରାପ୍ତ ଉଚ୍ଚ ସରକାରୀ ପଦାଧିକାରୀଥିବାରୁ ତାଙ୍କ ଠାରୁ ଅନ୍ତଃସ୍ରୋତା ଫଲ୍ଗୁପରି ସାଧାରଣକ୍ଷେତ୍ରରେ ଥାଇ କାମ କରୁଥିବା ସଭ୍ୟମାନଙ୍କର ପ୍ରଚ୍ଛନ୍ନ 'ଦୂରତା' ଥିଲା । (ଈର୍ଷା ଥିଲାବୋଲି କହୁନାହିଁ) ଏବେ ଅଛି କି ନାହିଁ, ମୁଁ କହିପାରିବି ନାହିଁ ! ଗୁରୁବାବୁ ଜାଣିଥିବେ ।

ଗୁରୁବାବୁ କଟକ ଲେଖକ ସହଯୋଗ ସମିତି ର ସଭାପତି ଏବଂ ଅନ୍ୟକେତେକ ସଂଗଠନ ସହିତ ସଂପୃକ୍ତ ଥିବାରୁ ତାଙ୍କର ସଂଗଠନ କ୍ଷେତ୍ରରେ ପ୍ରଭାବଥିଲା ଓ ଅଛି । ତେଣୁ ଉତ୍କଳ ସମ୍ମିଳନୀରେ କାମ କରିବା କିଛି ପରିମାଣରେ ତାଙ୍କ ପକ୍ଷେ ସହାୟକ ହୋଇପାରିଛି । ଗୋଟିଏ ବ୍ୟକ୍ତିଗତ କଥା ମନେପଡୁଛି । ଗୁରୁବାବୁ କଟକ ଲେଖକ ସହଯୋଗ ସମିତିର ସଭାପତି ଓ ଶ୍ରୀ ରଘୁନାଥ ମହାପାତ୍ର ସଂପାଦକ ଥିଲାବେଳେ ମୋର ଏକ ଗଳ୍ପ ସଂକଳନ-'ସୀମନ୍ତିନୀର ଡାଏରୀ' ଏହି ଲେଖକ ସହଯୋଗ ସମିତିଦ୍ୱାରା ପ୍ରକାଶିତ ହୋଇଥିଲା (୧୯୯୩ ରେ) ଏବଂ ରାଜା ରାମମୋହନ ରାୟ ଫାଉଣ୍ଡେସନ ସ୍କିମରେ ରାଜ୍ୟ ସଂସ୍କୃତି ବିଭାଗ କରିଆରେ ଓଡ଼ିଶାର ଲାଇବ୍ରେରୀମାନଙ୍କୁ ଯୋଗାଇ ଦିଆ ଯାଇଥିଲା । ଡକ୍ଟର ଗୁରୁପ୍ରସାଦ ମହାନ୍ତି ଏହି ଲେଖକ ସହଯୋଗ ସମିତିର ସଭାପତି

ଥିବା ଯେତେବେଳେ ମୁଁ ଜାଣି ନଥିଲି । ରଘୁନାଥ ବାବୁ, ସଂପାଦକ ମୋ ସହିତ ଯୋଗାଯୋଗ କରି ମୋର ପନ୍ଦରଟି ଗଳ୍ପ ନେଇ ବହିଟି ଛପାଇ ଦେଇଥିଲେ ଏବଂ ରୟାଲଟି ବାବଦକୁ (ମାତ୍ର) ପାଞ୍ଚଶହ ଟଙ୍କା ଦେଇଥିଲେ । ତେବେ ଏହା ମୋ ଲେଖକ ଜୀବନରେ ଏକ ସ୍ମରଣୀୟ ଘଟଣା । ଗୁରୁବାବୁ ଓ ରଘୁବାବୁ କଟକ ଲେଖକ ସହଯୋଗ ସମିତିର ଏକ ସ୍ଥାୟୀ କାର୍ଯ୍ୟାଳୟ ସୌଧ ନିର୍ମାଣ ଯୋଜନାରେ ଥିଲେ । ସମ୍ଭବତଃ ସଫଳ ହୋଇଛନ୍ତି । ମୋର କହିବା କଥା, ଗୁରୁବାବୁ ଜଣେ ସାରସ୍ୱତ ସଂଗଠକ, ସାଧକ ଏବଂ ଜଣେ ଭଲ ଲେଖକ ଓଡ଼ିଆ ଭାଷାରେ । ଅନ୍ୟଭାଷାରେ ସେ ବହି ଲେଖିଛନ୍ତି କି ନାହିଁ, ମୁଁ ଜାଣେ ନାହିଁ ।

ଗୁରୁବାବୁ ସାଂଗଠନିକ କ୍ଷେତ୍ରରେ ନିଜର 'ଟିମ୍' ଗଢ଼ି ଓ ସମଭାବାପନ୍ନ ବନ୍ଧୁମାନଙ୍କୁ ନେଇ କାମ କରିବାରେ ଓସ୍ତାଦ୍ । କଟକ ଲେଖକ ସହଯୋଗ ସମିତି ଓ କଟକ୍ ଜିଲ୍ଲା ଉତ୍କଳ ସମ୍ମିଳନୀ ତଥା କେନ୍ଦ୍ରୀୟ ଉତ୍କଳ ସମ୍ମିଳନୀର କାର୍ଯ୍ୟ କରିବାରେ ତାଙ୍କର କେତେ ଜଣ ବନ୍ଧୁଙ୍କୁ ଧରି ସେ କାମ କରି ଆସିଛନ୍ତି । ନାଁ କହୁନାହିଁ, ମାତ୍ର ଏକଥା ପ୍ରାୟ ସମସ୍ତେ ଜାଣନ୍ତି । ଗୁରୁବାବୁ ଉତ୍କଳ ସମ୍ମିଳନୀ କଟକ ଜିଲ୍ଲାଶାଖାର ସଭାପତି ଥିଲାବେଳେ କଟକ ବାଲିଯାତ୍ରାରେ ଉତ୍କଳ ସମ୍ମିଳନୀର ଦ୍ୱିତଳ ବିଶିଷ୍ଟ ଷ୍ଟଲ ଖୋଲା ହୋଇ ଆସୁଛି । ପ୍ରଥମ ବର୍ଷରେ, ମୋର ମନେ ପଡୁଛି, ୪୦/୪୫ ହଜାର ଟଙ୍କା ଏଥିରେ ବ୍ୟୟ ହୋଇଥିଲା । କେନ୍ଦ୍ର କାର୍ଯ୍ୟକାରୀ କମିଟିକୁ ୧୦ ହଜାର ଟଙ୍କା ଅନୁଦାନ ମାଗିଥିଲେ । ଆର୍ଥିକ ଅସ୍ୱଚ୍ଛଳତା ଦୃଷ୍ଟିରୁ କେନ୍ଦ୍ର କମିଟି ଅନୁଦାନ ମଞ୍ଜୁର କରି ପାରି ନଥିଲେ । ତଥାପି ଗୁରୁବାବୁ ତାଙ୍କ ନିଜ ଆକାଉଣ୍ଟରୁ ଟଙ୍କା ବାହାର କରି ଏହି ମଞ୍ଚ ତିଆରି ପାଇଁ ଅଗ୍ରୀମ ଖର୍ଚ୍ଚ କରିଥିବାର ମୁଁ ଜାଣେ । ପ୍ରତିବର୍ଷ ଏହି ଷ୍ଟଲ୍ ବାଲିଯାତ୍ରାରେ ଖୋଲା ହେଉଛି ଏବଂ ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ପ୍ରଥମ ଦିନ ଉଦ୍‌ଘାଟିତ ହେଉଛି । ମୁଁ ଏହି ଉଦ୍‌ଘାଟନ ଉତ୍ସବରେ ଯୋଗ ଦେଇଛି ଏବଂ ଉତ୍କଳ ସମ୍ମିଳନୀ ମଞ୍ଚଉପରୁ ଗତିଶୀଳ ଯାତ୍ରା ଦେଖଣାହାରୀଙ୍କୁ ଉତ୍କଳ ସମ୍ମିଳନୀ ସଂପର୍କରେ ଉଦ୍‌ବୋଧନ ଦେଇଛି । ଗୁରୁବାବୁଙ୍କ ପ୍ରସ୍ତାବ କ୍ରମେ ଭୁବନେଶ୍ୱର ପୁସ୍ତକ ମେଳାରେ ଥରେ ଉତ୍କଳ ସମ୍ମିଳନୀ ତରଫରୁ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା ।

ଏପରି ବ୍ୟୟ ବହୁଳ ଷ୍ଟଲ ପ୍ରତିଷ୍ଠା ଏବଂ ପୁସ୍ତକମେଳାରେ ଆଲୋଚନା କାର୍ଯ୍ୟକ୍ରମରେ ଅର୍ଥବ୍ୟୟ ନ କରି ଆଦିବାସୀ ଅନଗ୍ରସର ଜିଲା ଗୁଡ଼ିକରେ ଉତ୍କଳ ସମ୍ମିଳନୀ ସଚେତନତା ଶିବିର ପ୍ରବର୍ତ୍ତନ କରିବା ପାଇଁ ମୁଁ ତାଙ୍କୁ କେତେଥର କହିଛି । ଏହା ମୋର ବ୍ୟକ୍ତିଗତ ମତ । କାରଣ କଟକ-ପୁରୀ, ବାଲେଶ୍ୱର ପଟେ ସବୁକାମ ହେଉଛି ଧାରଣାରୁ ବର୍ତ୍ତମାନ ଉପକୂଳବର୍ତ୍ତୀ ଓଡ଼ିଶା, ପଶ୍ଚିମ, ଦକ୍ଷିଣ ଓ ଉତ୍ତର ଓଡ଼ିଶା ଆଦି ଅଞ୍ଚଳରେ ବିଚ୍ଛିନ୍ନତାବାଦୀ ଦୁଆମୁଣ୍ଡ ଟେକୁଛି ।

ଷଢ଼େଇକଳା-ଖରସୁଆଁ ସମେତ ଉତ୍ତର ବିଚ୍ଛିନ୍ନାଞ୍ଚଳ (ସିଂହଭୂମି, ଟାଟା-ଜାମସେଦପୁର)ରେ ଓଡ଼ିଆ ଭାଷାର ପ୍ରସାର ଓ ସୁରକ୍ଷା ଦିଗରେ ଗୁରୁପ୍ରସାଦଙ୍କର ଭାବପ୍ରବଣତା ଓ ନିଷ୍ଠା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରେ । ମୋର ମନେ ଅଛି, କେତେଥର ଟ୍ରକରେ ବସି ଭୁବନେଶ୍ୱରରୁ ସିଂହଭୂମି ପର୍ଯ୍ୟନ୍ତ ପର୍ଶୁରାମ ଦ୍ୱିବେଦୀଙ୍କ ସହ ପାଠ୍ୟପୁସ୍ତକ ବାଣ୍ଟିବାକୁ ସେ ଯାଇଛନ୍ତି । ଜଣେ ବିଭାଗୀୟ ମୁଖ୍ୟ ସ୍ତରର ଅବସର ପ୍ରାପ୍ତ ଅଫିସର ଟ୍ରକ ଡାଲାରେ ବସି ଓଡ଼ିଆ ଭାଷାର ପ୍ରସାର ଓ ସୁରକ୍ଷା ପାଇଁ ବିଚ୍ଛିନ୍ନାଞ୍ଚଳକୁ ଯିବା ସମ୍ଭବତଃ ଏହା ମାତ୍ର ଏକକ ଦୃଷ୍ଟାନ୍ତ । ବରଂ ଉଡ଼ାଜାହାଜରେ ବସି ଉତ୍କଳ ସମ୍ମିଳନୀ କର୍ମକର୍ତ୍ତା ମଧ୍ୟରୁ କେହି କେହି ସମ୍ମିଳନୀ ତରଫରୁ ପାଠ୍ୟପୁସ୍ତକ ବଣ୍ଟନ ଓ ଅନ୍ୟାନ୍ୟ କାର୍ଯ୍ୟ କ୍ରମରେ ଯାଉଥିବାର ଏକକ ଦୃଷ୍ଟାନ୍ତ ସଂପର୍କରେ ଆମ୍ଭେମାନେ ସଚେତନ । ମୋତେ ଥରେ ଟ୍ରକରେ ବହି ବାଣ୍ଟିବାକୁ ଦ୍ୱିବେଦୀ ଓ ଗୁରୁବାବୁ ଡାକିଥିଲେ ।ମାତ୍ର କାର୍ଯ୍ୟବ୍ୟସ୍ତତା ଓ ଶାରୀରିକ ଦୁର୍ବଳତା ଯୋଗୁଁ ମୁଁ ଯାଇପାରି ନଥିଲି । ୨୦୦୦ ମସିହାରେ 'ବିହାର ପୁନର୍ଗଠନ ବିଲ୍' ସଂସଦରେ ବିଚାର ଚାଲିଥିଲାବେଳେ ଏବଂ ଅନ୍ୟ ସମୟରେ ଷଢ଼େଇକଳା-ଖରସୁଆଁକୁ ଓଡ଼ିଶାକୁ ଫେରାଇଦେବା ଦାବୀ ସପକ୍ଷରେ ଜନମତ ଜାଗ୍ରତ କରିବା ପାଇଁ ତତ୍କଳୀନ ଭାରପ୍ରାପ୍ତ ସଭାପତିଙ୍କ ସହ ଗୁରୁବାବୁ ଓ ମୁଁ ଅନ୍ୟ ଯୁବ କର୍ମୀମାନଙ୍କ ସହ ଓଡ଼ିଶାର ବିଭିନ୍ନ ଜିଲ୍ଲାକୁ ସଭାସମିତି କରିବା ପାଇଁ ଯାଇଛୁ । ଯେଉଁ ଗାଡ଼ିରେ ଯାଉ ଥାଉଁ ତାହାର ସମ୍ମୁଖ ଭାଗରେ ଏବଂ ସଭା ସ୍ଥଳରେ ଉତ୍କଳ ସମ୍ମିଳନୀ ବ୍ୟାନର ଲାଗିବ ଏବଂ 'ବନ୍ଦେ ଉତ୍କଳ ଜନନୀ' କ୍ୟାସେଟ ବାଜାଯିବ । କଟକ ଜିଲ୍ଲା ଶାଖା ତରଫରୁ ଗୁରୁବାବୁ ଶାଖା ସଭାପତି ଥିବାବେଳେ ତାଙ୍କ ନିଜ ପାସ୍‌ବହିରୁ ଟଙ୍କା ଉଠାଇ ତାଙ୍କ ବୋହୂ ଓ ବନ୍ଧୁ ଅମରେନ୍ଦ୍ର ମହାନ୍ତିଙ୍କ ଦ୍ୱାରା ''ବନ୍ଦେ ଉତ୍କଳ ସମ୍ମିଳନୀ'' କ୍ୟାସେଟ ସ୍ୱତନ୍ତ୍ର ଭାବରେ ପ୍ରସ୍ତୁତ କରାଇଥିଲେ । ସେସବୁ ବିକ୍ରିହୋଇ ଥିଲା । ଅବଶ୍ୟ ପରେ ରାଜ୍ୟ ସରକାର ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ତରଫରୁ (ଶାନ୍ତନୁ ମହାପାତ୍ରଙ୍କ ନିର୍ଦ୍ଦେଶନାରେ) ''ବନ୍ଦେ ଉତ୍କଳ ଜନନୀ''ର କ୍ୟାସେଟ ପ୍ରସ୍ତୁତ କରି ବିକ୍ରି କରିଥିଲେ ଏବେ ବି ଭୁବନେଶ୍ୱର ପୁସ୍ତକ ମେଳାରେ ଏହି କ୍ୟାସେଟ ବିକ୍ରି ହୁଏ ।

ପର୍ଶୁରାମ ଦ୍ୱିବେଦୀ ଗୁରୁବାବୁ ଓ ମୁଁ ଯାଜପୁର ଜିଲ୍ଲା ଶାଖା ସଭାପତିଙ୍କ ଆହ୍ୱାନ କ୍ରମେ ହାଟ ଦିନମାନଙ୍କରେ ଯାଜପୁର ଅଞ୍ଚଳକୁ ଯାଇଛୁଁ ଏବଂ ଓଡ଼ିଆ ଭାଷାରେ ନାମ ଫଳକ, ବିଜ୍ଞାପନ ଫଳକ ଲେଖିବାପାଇଁ ହାଟବଜାରକୁ ଆସିଥିବା ଜନତାଙ୍କୁ ମିଳିତଭାବେ ଉଦବୋଧନ ଦେଇଛୁଁ । ଓଡ଼ିଆ ଭାଷାର ସାର୍ବଜନୀନ ବ୍ୟବହାର ନିମନ୍ତେ ପ୍ରବର୍ତ୍ତାଇଛୁଁ । ଓଡ଼ିଆ ଭାଷାରେ ନିମନ୍ତ୍ରଣ ନ ପାଇଲେ, ଯେତେ ଅନ୍ତରଙ୍ଗ ବନ୍ଧୁ ହେଲେ ବି ବିବାହ ବ୍ରତ ଉତ୍ସବକୁ ନଯିବା ପାଇଁ ଶପଥ ନେଇଥିବା ଉତ୍କଳ ସମ୍ମିଳନୀର ସଭ୍ୟମାନଙ୍କଭିତରେ ଗୁରୁବାବୁ ଜଣେ ନିଷ୍ଠାପର ବ୍ୟକ୍ତି । କେତେଜଣଙ୍କ ସହିତ ଏହି କାରଣରୁ ସେ ବନ୍ଧୁତା

ହରାଇଥିବା ପ୍ରକାଶ କରିଛନ୍ତି । ମୁଁ ତାହାର ଜଣେ ଭୁକ୍ତଭୋଗୀ । ବିବାହ ବ୍ରତକୁ ଓଡ଼ିଆରେ ନିମନ୍ତ୍ରଣ ପତ୍ର ପାଇଗଲେ ସେ ନିଜ ରଚିତ ଓଡ଼ିଆ ପୁସ୍ତକ ଉପହାର ଦିଅନ୍ତି । ଗତ ଜାନୁୟାରୀ ମାସରେ ମୋ ସାନପୁଅ ବାହାଘରକୁ ଅଭୟ ସାମନ୍ତରାୟଙ୍କ ସହ ଆସି ପୁଅବୋହୂଙ୍କୁ ଆଶୀର୍ବାଦ ପୂର୍ବକ ତାଙ୍କ ଲିଖିତ ଓଡ଼ିଆ ବହି ଉପହାର ଦେଇଥିବା ଘଟଣା ଆମେ ସ୍ୱାମୀ ସ୍ତ୍ରୀ ଆଦୌ ଭୁଲି ପାରିବୁନାହିଁ । ଆମ ଭିତରେ ଭିନ୍ନ ମତ ଥିବାରୁ ଉତ୍କଳ ସମ୍ମିଳନୀ ସଂପର୍କୀୟ ମୋର ଦୁଇବନ୍ଧୁ କଟକରୁ ଆସି ଭୋଜି ଖାଇବା ପୂର୍ବରୁ କହିଦେଇ ଚାଲିଯାଇଥିଲେ । ଏ କଥା ମୁଁ ସବୁଦିନ ପାଇଁ ମନେ ରଖିବି । କେବଳ ଉତ୍କଳ ସମ୍ମିଳନୀ ନୁହେଁ, ବିଶ୍ୱ ଓଡ଼ିଆ ସମ୍ମିଳନୀ, ପୂର୍ଣ୍ଣାଙ୍ଗ ଉତ୍କଳ ବିକାଶ ନ୍ୟାସୀ ମଣ୍ଡଳରେ ରହି ମଧ୍ୟ ଗୁରୁବାବୁ ଓଡ଼ିଆ ଭାଷା ସଂସ୍କୃତିର ସୁରକ୍ଷା ଏବଂ ଓଡ଼ିଆ ଜାତିର ସମୃଦ୍ଧି ପାଇଁ କାମ କରନ୍ତି । ଶ୍ରୀ ଜଗନ୍ନାଥଙ୍କର ତାଙ୍କ ପ୍ରତି କୃପାଅଛି, ତେଣୁ ସେ ପ୍ରାୟ ପ୍ରତିଦିନ ଉତ୍କଳ ସମ୍ମିଳନୀ କାମରେ ଲାଗିଥାନ୍ତି, ତାଙ୍କ ଯୋଡ଼ି ଅଭୟ ସାମନ୍ତରାୟଙ୍କ ସାଙ୍ଗରେ ।

୨୦୦୨ ନଭେମ୍ବର ୩୦ ତାରିଖରେ ଜୟପୁରଠାରେ ଉତ୍କଳ ସମ୍ମିଳନୀ ପରିଷଦର ଅଧିବେଶନରେ ଉତ୍କଳ ସମ୍ମିଳନୀ ନିୟମାବଳୀର ତୁରନ୍ତ ସଂଶୋଧନ କରି ସେହି ବୈଠକରେ ସାଂଗଠନିକ ନିର୍ବାଚନ ନିୟମାବଳୀର ତଥା ଉତ୍କଳ ସମ୍ମିଳନୀର କାର୍ଯ୍ୟ ନିର୍ବାହୀ ସମିତିରେ ଏକାଧିକଥର ଏ ସଂପର୍କୀୟ ଗୃହୀତ ପ୍ରସ୍ତାବର ବିରୁଦ୍ଧାଚରଣ କରୁଛି, ତେଣୁ ଏହି ନିର୍ବାଚନ ଅବୈଧ ଓ ଅସିଦ୍ଧ ବୋଲି ଦର୍ଶାଇ (ମୁଁ ଉକ୍ତ ବୈଠକରେ ମୋ ବ୍ୟକ୍ତିଗତ ଅସୁବିଧା ହେତୁ ଅନୁପସ୍ଥିତ ଥିଲି) ଉତ୍କଳ ସମ୍ମିଳନୀର କର୍ମକର୍ତ୍ତା, କାର୍ଯ୍ୟନିର୍ବାହୀ ସମିତି ସଦସ୍ୟ/ସଦସ୍ୟା, ସମସ୍ତଙ୍କ ଜିଲ୍ଲା ସଭାପତି ମାନଙ୍କୁ ପତ୍ର ଲେଖିଥିଲି ଆଉଥରେ ଠିକ୍ ବାଟରେ ନିର୍ବାଚନ କରାଇବା ପାଇଁ । ମୋ ମତ ସପକ୍ଷରେ ଯାଜପୁର ଜିଲ୍ଲା ଶାଖା ଏକ ପୂର୍ଣ୍ଣାଙ୍ଗ ଆଲୋଚନାସହ ପ୍ରସ୍ତାବ ଗ୍ରହଣ କରି କେନ୍ଦ୍ର କର୍ତ୍ତୃପକ୍ଷଙ୍କ ନିକଟକୁ ପଠାଇଥିଲେ, ମୋତେ ନକଲ ଦେଇ । ପାରଳାଖେମୁଣ୍ଡିରୁ (ଜୟପୁର ନିର୍ବାଚନରେ ସଂପାଦକଭାବେ ନିର୍ବାଚିତ) ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ସୌଜନ୍ୟ ମୂଳକ ଉତ୍ତର ଦେଇଛନ୍ତି । ଗୁରୁବାବୁ ଏହି ନିର୍ବାଚନରେ ଉପସଭାପତି ନିର୍ବାଚିତ ହୋଇଥିଲେ ମଧ୍ୟ ମୋତେ ନବ ବର୍ଷ ଦିବସରେ ଅଭିନନ୍ଦନ ଜଣାଇ ଯେଉଁ ପତ୍ର ଦେଇଥିଲେ ତାହା ନିମ୍ନରେ ପ୍ରଦତ୍ତ :

"ବନ୍ଦେ ଉତ୍କଳ ଜନନୀ, ବାଦାମବାଡ଼ି, ଇଂ ନୂଆବର୍ଷ ୨୦୦୩

ସମ୍ମାନନୀୟ ଶ୍ରୀଚନ୍ଦନବାବୁ, ନମସ୍କାର, ଇଂରାଜି ନବବର୍ଷରେ ଆପଣଙ୍କୁ ଅଭିନନ୍ଦନ ଜଣାଉଛି । ଆପଣଙ୍କ ଚିଠି ଯାଇ ସବୁ ବୁଝିଲି । ମଣିଷ ପରିସ୍ଥିତିର ଦାସ । ପରିସ୍ଥିତିରେ ପଡ଼ି ଯାହା ଘଟିଯାଇଛି ତାହାର ପରିଣାମ ସମସ୍ତେ ଭୋଗିବାକୁ ବାଧ୍ୟ । ଗତ

୨୦।୧୧।୨୦୦୨ ଦିନ ଜୟପୁର ଅଧିବେଶନରେ ଯେଉଁ ପରିସ୍ଥିତି ଉପୁଜିଲା । ତଦନୁଯାୟୀ ଅନେକ ପରିବର୍ତ୍ତନ ହୋଇଛି । ଆପଣ ଯାହା କରିବେ ତାର ପରିଣାମ ଯାହାହେବ ମଧ୍ୟ ଆମେ ଭୋଗ କରିବା । ତେଣୁ ଭବିଷ୍ୟତ ହିଁ ଏହାର ଉତ୍ତରଦାୟୀ ।

ସେ ଯାହା ହେଉ, ଆପଣଙ୍କ ସହିତ ମୋର ବନ୍ଧୁତା ଯାହା ଥିଲା ତାହା ହିଁ ରହିବବୋଲି ମୋର ଆଶା ଓ ବିଶ୍ୱାସ । କୌଣସି ପରିସ୍ଥିତିରେ ମୋତେ ଭୁଲ ବୁଝିବେ ନାହିଁ । ଯାହା ଘଟି ଯାଉନା କାହିଁକି ଓଡ଼ିଆ ଜାତି ପ୍ରତି ମୋର ଯେଉଁ ସେବା ମନୋବୃତ୍ତି ରହିଛି, ତହିଁରେ ତ୍ରୁଟି ଘଟିବ ନାହିଁ । ବିଦେଶରେ, ଦେଶରେ ବା ବିଚ୍ଛିନ୍ନାଞ୍ଚଳରେ ସେବା କାର୍ଯ୍ୟ ଚଳାଇ ରଖିବା ସଂକଳ୍ପ ମୁଁ ନେଇଛି । ଈଶ୍ୱର ଆପଣଙ୍କୁ ସୁଖ, ଶାନ୍ତି ଓ ଯଶ ଦିଅନ୍ତୁ ।

। ଇତି ।

ସ୍ନେହାଧୀନ, ଗୁରୁବାବୁ

ଆଉ ଗୋଟିଏ ପତ୍ରକୁ ଉଦ୍ଧୃତ କରୁଛି : ଉତ୍କଳ ସମ୍ମିଳନୀ ମୋର ଅନୁଭୂତିକୁ ପାଥେୟ କରି ତାଙ୍କ ଉଦ୍ଦେଶ୍ୟରେ ପ୍ରକାଶ ପାଉଥିବା ବହିରେ ତାଙ୍କ ପତ୍ରଗୁଡ଼ିକ ସନ୍ନିବେଶିତ କରିବି ବୋଲି ତାଙ୍କୁ ଲେଖିଥିଲି । ତାହାର ଉତ୍ତରରେ ସେ ଏହି ପତ୍ର ଲେଖିଥିଲେ ।

କଟକ, ତା ୩।୦୮।୦୪

ପ୍ରିୟ ଶ୍ରୀଚନ୍ଦନ ବାବୁ, ନମସ୍କାର, ଆପଣଙ୍କର ୨୮ ତାରିଖ ଚିଠି ପାଇ ଖୁସିହେଲି । ଆପଣଙ୍କ ପୁଅର ସ୍ୱାସ୍ଥ୍ୟ ସହିତ ଆପଣଙ୍କର ମନ ଖରାପ ରହୁଛି ଶୁଣି ଦୁଃଖିତ ହେଲି । ଏ ବୟସରେ ଆମ୍ଭମାନଙ୍କର ଶାନ୍ତି ଦରକାର । ମାତ୍ର କାହିଁକି ଯେ ଈଶ୍ୱର ଆପଣଙ୍କୁ ଏଭଳି ଦୁଃଖ ଦେଲେ ବୁଝି ହେଉନି । ଆପଣ ଜଣେ ଭଲ ଲଣ୍ଠିଷ୍ଠ । ଆପଣଙ୍କ ବିଚାରଧାରା ମୋତେ ଭଲ ଲାଗେ । ତେଣୁ ଆପଣଙ୍କ ହସ୍ତାଙ୍କିତ ଚିଠିଟିଏ ଦେଖିଲେ ଖୁବ୍ ଭଲଲାଗେ । ଈଶ୍ୱର ଆପଣଙ୍କ ଦୁଃଖ ଲାଘବ କରନ୍ତୁ, ସ୍ୱାସ୍ଥ୍ୟ ଆପଣଙ୍କର ଭଲ ରହୁ ଓ ଚିରଦିନ ଆପଣ ଉତ୍କଳ ସମ୍ମିଳନୀର ସେବାରେ ମନପ୍ରାଣ ଦିଅନ୍ତୁ, ତାହାହିଁ ମୋର କାମନା । ମୋର ପୋଷ୍ଟକାର୍ଡ଼କୁ ପରିଶିଷ୍ଟ କରିବେ ବୋଲି ଲେଖିଛନ୍ତି । (ଉତ୍କଳ ସମ୍ମିଳନୀରେ ମୋର ଅନୁଭୂତିକୁ ପାଥେୟ କରି ଏକ ବହି ଲେଖାଯାଉଛି, ସେଥିରେ ଗୁରୁବାବୁଙ୍କ ପତ୍ରଗୁଡ଼ିକୁ ସନ୍ନିବେଶିତକରିବି ବୋଲି ତାଙ୍କୁ ଲେଖିଥିଲି । ତାହାର ଉତ୍ତରରେ ସେ ଏପରି ଲେଖିଛନ୍ତି ।) ଏଥି ମଧ୍ୟରେ ଝାଡ଼ଖଣ୍ଡ ଓ ମେଦିନୀପୁରରେ କରାଯାଇଥିବା କାର୍ଯ୍ୟ ସବୁ ଆପଣଙ୍କ ପାଖକୁ ପଠାଇଦେବି । ଆପଣ ତାକୁ ଦେଖି ନିଶ୍ଚୟ ଖୁସୀହେବେ ।

(ମୋ ପୁଅ ବାହାଘରରେ ଯୋଗ ଦେବାକୁ ଗତ ଜାନୁୟାରୀ ୧୬ ତାରିଖରେ ମୋ ଘରକୁ ଆସିଥିଲା ବେଳେ ମଧ୍ୟ ଗୁରୁବାବୁ ଉତ୍କଳ ସମ୍ମିଳନୀ ଏହା ମଧ୍ୟରେ କଣ କରିଛି, ସେ ସବୁ କାଗଜପତ୍ର ଆଣି ବିଭାଘର ଭୋଜି ଓ ଅତିଥି ଚର୍ଚ୍ଚା ବ୍ୟସ୍ତତା ମଧ୍ୟରେ ମୋତେ ପନ୍ଦର ମିନିଟ୍‌କାଳ ବୁଝାଇଥିଲେ, ଅଭୟ ବାବୁଙ୍କ ସହିତ)

ଯାହା କିଛି ହୋଇଛି, ସେଥିରେ ଯେ ଆପଣଙ୍କର ଅବଦାନ ନାହିଁ ସେମିତି ଭାବିବେ ନାହିଁ । ଯେଉଁ ଦିନ ଆପଣଙ୍କଠାରୁ ରସିଦ ବହି ଖଣ୍ଡେନେଇ ଆମେରିକା ଗଲି, ଫେରି ଆସି ଆପଣଙ୍କ ହାତରେ ଦୁଇଲକ୍ଷ ପାଖାପାଖି ଟଙ୍କା ଧରେଇ ମୋତେ ଖୁବ୍ ଆନନ୍ଦ ଲାଗିଥିଲା । ଆଜି ମୁଁ ଯାହାକିଛି କରି ପାରୁଛି, ମୋ ସହିତ ଆପଣଥିବାପରି ଲାଗୁଛି । ପର୍ଶୁରାମବାବୁ ମଧ୍ୟ ମୋର ଅତ୍ୟନ୍ତ ଅନ୍ତରଙ୍ଗ । ତାଙ୍କୁ ଧରି ମୁଁ ପ୍ରଥମେ ବିଚ୍ଛିନ୍ନାଞ୍ଚଳକୁ ଯାଇଥିଲି । ସେତେବେଳେ ଉତ୍କଳ ସମ୍ମିଳନୀର କାର୍ଯ୍ୟ ହେଉଛି କହିଲେ, ସେ ଭୁଲ ବୁଝୁଥିଲେ । ମାତ୍ର ମୁଁ କହିଲି ଏଇଟା ଆମର ମୂଳଭିତ୍ତି । ତେଣୁ ନ୍ୟାସୀ ମଣ୍ଡଳ ସହିତ ସମ୍ମିଳନୀର ନାଆଁ ମଧ୍ୟ ରହିବ । ପରେ ଝାଡ଼ଖଣ୍ଡ କାର୍ଯ୍ୟାବଳୀ ପଠାଇବି ।

। ଇତି ।

ସ୍ନେହାଧୀନ,ଗୁରୁବାବୁ

"ଏତକ ତାଙ୍କ ପ୍ରଦତ୍ତ ପୋଷ୍ଟକାର୍ଡ଼ରୁ ଉତାରିଲାବେଳେ ଭାବାବେଗରେ ମୋ ଆଖି ଛଳ ଛଳ ହୋଇଯାଇଛି !

ଏ ସମ୍ପର୍କରେ ଗୁରୁବାବୁ ଆଉ ଗୋଟିଏ ପତ୍ର ଦେଇଛନ୍ତି । ତାହା ନିମ୍ନ ପ୍ରକାରେ –

"ବନ୍ଦେ ଉତ୍କଳ ଜନନୀ ! ବାଦାମବାଡ଼ି, ତା ୨୦।୭।୦୫

ପ୍ରିୟ ଗୋପାଳ କୃଷ୍ଣବାବୁ ! ନମସ୍କାର ! ଆପଣଙ୍କ ୧୫ ତାରିଖ ଚିଠିଟି ଏବେ ପାଇଲି । ଅଭୟବାବୁ କହୁଥିଲେ ଆପଣ ତାଙ୍କ ସହିତ କଥା ହୋଇଥିଲେ ବୋଲି । ମୋର ଫୋନ୍ ଠିକ୍ ନାହିଁ । ୧୨ ଦିନ ହେବ ଫୋନ ଖରାପ ହୋଇଛି । ଆପଣ ଷଢ଼େଇକଳା/ ଖରସୁଆଁ ଯାଇଥିଲେ ବୋଲି ଶୁଣି ଖୁସି ହେଲି । ସେଠାକାର ଶିକ୍ଷକ ଶିକ୍ଷୟିତ୍ରୀ ଦରମା ପାଇନାହାନ୍ତି । ଆମେ ସମସ୍ତେ ଆମର ହିସାବପତ୍ର ଦେଇସାରି ପଠାଇ ସାରିଥାନ୍ତୁ । ମାତ୍ର ଜଣେ କର୍ମକର୍ତ୍ତା ତାଙ୍କର ଏପର୍ଯ୍ୟନ୍ତ ଦେଇ ନାହାନ୍ତି । ତେବେ ଏହି ସପ୍ତାହ ଭିତରେ ସେ ତାଙ୍କ ହିସାବ ଦେଇ ସାରିଲେ ଏ ବର୍ଷ ଟଙ୍କା ମିଳିବ । ତେବେ ମୁଁ ଏହି ୨୩ ତାରିଖ ଦିନ ଝାଡ଼ଖଣ୍ଡ ଯାଉଛି । ସବୁକଥା ବୁଝି ସେମାନଙ୍କପାଇଁ ଟଙ୍କାର ବ୍ୟବସ୍ଥା କରିବି । କାମ କରିବାର ଅଭ୍ୟାସ ତାଙ୍କର ହିସାବ ନାହିଁ । ସେଥିପାଇଁ ଆମେ ସମସ୍ତେ ହଇରାଣ ହେଉଛୁ । ଆଶାକରେ ଶୀଘ୍ର ସବୁ ବ୍ୟବସ୍ଥା ହୋଇଯିବ । ମେଣ୍ଢିକୀ ସ୍କୁଲ ପାଇଁ ଟ ୫୦୦୦

ଦିଆଯାଇଛି । ସେମାନେ ତାଙ୍କର ବିଦ୍ୟାଳୟ ଗୃହ ତିଆରି କରିବେ । ପୂର୍ବ ସିଂହଭୂମିର ଜଣେ ଓଡ଼ିଆ ନେତା ଜଗଦୀଶ ମହାପାତ୍ର ମରିଗଲେ । ତାଙ୍କ ଏକାଦଶାହକୁ ମୁଁ ଯାଇ ପହଞ୍ଚିବି । ସେଠୁ ଫେରିଲେ ପ୍ରଶାନ୍ତ ପଟ୍ଟନାୟକଙ୍କ ସହିତ କଥା ହେବି । ଆଉ ସବୁ ଭଲ ।

। ଇତି ।

ସ୍ନେହାଧୀନ, ଗୁରୁବାବୁ

ପ୍ରତିଶ୍ରୁତି ରକ୍ଷାକରି ଗୁରୁବାବୁ ଖୁବ୍‌ତୁରନ୍ତ ଆମ୍ଭମାନଙ୍କୁ (ମୋତେ, ପ୍ରଶାନ୍ତ ଚନ୍ଦ୍ର ପଟ୍ଟନାୟକ ଓ ପର୍ଶୁରାମ ଦ୍ୱିବେଦୀଙ୍କୁ) ଫୋନରେ ଜଣାଇ କହିଲେ – ''ଆଜି ଅପରାହ୍ନ ୩ଟାବେଳେ ଭୁବନେଶ୍ୱରସ୍ଥ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟକୁ ଯିବି । ଆପଣମାନେ ଆସିଲେ, ସେଇଠି ବସି ବିଚ୍ଛିନ୍ନାଞ୍ଚଳରେ କଣ କାର୍ଯ୍ୟକ୍ରମ ହୋଇଛି ଓ କେତେ ଖର୍ଚ୍ଚ ହୋଇଛି, ଆଗକୁ କି କି କାମହେବ, କେତେ ଟଙ୍କା ଦରକାର ସବୁ ଆଲୋଚନା କରିବା ।'' ଆମ୍ଭେ ତିନିଜଣ ପହଞ୍ଚିଲା ବେଳକୁ ଗୁରୁବାବୁ ଉତ୍କଳ ସମ୍ମିଳନୀ କାର୍ଯ୍ୟାଳୟରେ କଟକରୁ  ଆସି ଉପସ୍ଥିତ ଥିଲେ । ଏବର ଉତ୍କଳ ସମ୍ମିଳନୀ ସଂପାଦକ ଡାକ୍ତର ପ୍ରହରାଜ ଏବଂ ଉପଦେଷ୍ଟା ଶ୍ରୀ ପଦ୍ମଚରଣ ନାୟକ ବି ଆସି ପହଞ୍ଚିଲେ । ସବୁ ବିସ୍ତୃତ ଭାବେ ଆଲୋଚନା ହେଲା । ମୁଁ କାର୍ଯ୍ୟକ୍ରମ ଓ ଖର୍ଚ୍ଚ ବିବରଣୀର ନକଲ ଚାହିଁବାରୁ ପାଖ ଜେରକ୍ସ ବୁଥକୁ ଯାଇ ଜେରକ୍ସ ନକଲ ମୋତେ ଦେଲେ । ଏହାକୁ ମୁଁ ଲେଖୁଥିବା ବହିରେ ବ୍ୟବହାର କରିବି ବୋଲି କହିବାରୁ ଗୁରୁବାବୁ ତାଙ୍କର ସ୍ୱଭାବସୁଲଭ ମୁରୁକି ହସି କହିଲେ – ''ବ୍ୟବହାର କରିବେ ? ହଉ ।''

ଆଉ ଗୋଟିଏ କଥା କହିବି – ଖରସୁଆଁର ଓଡ଼ିଆନେତା ଓ ଖରସୁଆଁ ଉତ୍କଳ ସାଂସ୍କୃତିକ ପରିଷଦର ସଂପାଦକ ଡାକ୍ତର ବିଶ୍ୱନାଥ କରଙ୍କ ଅକାଳ ବିୟୋଗରେ  କଟକ ଶହୀଦ ଭବନଠାରେ ଉତ୍କଳ ସମ୍ମିଳନୀ ତରଫରୁ ମୁଖ୍ୟମନ୍ତ୍ରୀ ଓ ଲୋକସେବକ ମଣ୍ଡଳର ଜାତୀୟସ୍ତରର କର୍ମକର୍ତ୍ତାଙ୍କ ଉପସ୍ଥିତିରେ ସ୍ୱର୍ଗତ ଡାକ୍ତର ବିଶ୍ୱନାଥଙ୍କୁ ମରଣୋତ୍ତର 'ଉତ୍କଳ ସନ୍ତାନ' ସମ୍ମାନ ପ୍ରଦାନ କରିବା ସାଙ୍ଗକୁ ତାଙ୍କ ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ସାହାଯ୍ୟାର୍ଥେ ଦଶହଜାର ଟଙ୍କାର ଚେକ୍ ପ୍ରଦାନ କରାଇଥିଲେ । ଏ ସଭାରେ ମୁଁ ଉପସ୍ଥିତ ଥିଲି । କାରଣ ସେତେବେଳକୁ ଆମ ମଧ୍ୟରେ  ଜୟପୁରଠାରେ ସାଂଗଠନିକ ନିର୍ବାଚନ ଜନିତ 'ଭିନ୍ନ ମତ' ସୃଷ୍ଟି ହୋଇ ନ ଥିଲା ।

କଟକ ଶାଖା ତରଫରୁ ଉତ୍କଳ ସମ୍ମିଳନୀ ବାର୍ଷିକ ଅଧିବେଶନ ଉପଲକ୍ଷ୍ୟେ ''ଉତ୍କଳ ନିର୍ଝର'', ''ଉତ୍କଳ ନିର୍ଘୋଷ'', ''ଉତ୍କଳ ନିସ୍ୱନ'' ଆଦି ନାମରେ ପ୍ରକାଶ ପାଇ ଆସୁଥିବା ବାର୍ଷିକ  ସ୍ମରଣିକା ଗ୍ରନ୍ଥ ପ୍ରକାଶନରେ ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କର ଭୂମିକା

ନିଶ୍ଚୟ ଓଜନିଆ । ଏ କଥା ସମସ୍ତେ ସ୍ୱୀକାର କରିବେ । ଉତ୍କଳ ସମ୍ମିଳନୀ ଶତାବ୍ଦୀ ସଂକଳନ (ଉତ୍କଳ ନିର୍ଝର) ୨୦୦୩ର ମୁଖ୍ୟ ସଂପାଦକ ଦାୟିତ୍ୱ ତୁଲାଇବାପାଇଁ ଗୁରୁବାବୁ ମୋତେ ଅନୁରୋଧ କରିଥିଲେ । ମୁଁ ସମୟ ଦେବାକୁ ଅସାମର୍ଥ୍ୟ ଜଣାଇବାରୁ ଅଧ୍ୟାପକ ଶ୍ରୀ ଶ୍ୟାମାପ୍ରସନ୍ନ ମିଶ୍ରଙ୍କୁ ଏ ଦାୟିତ୍ୱ ସେମାନେ ଦେଲେ । ମୁଁ ଓ ଗୁରୁବାବୁଙ୍କର ଉତ୍କଳ ସମ୍ମିଳନୀରେ ମିଳିମିଶି କାମ କରିବା ସଂପର୍କରେ ଲେଖିବାକୁ ବସିଲେ ଆଉ ବହୁତ ଲେଖିହେବ । ମାତ୍ର ଉପରୋକ୍ତ ବର୍ଣ୍ଣନା ତ କମ୍ ନୁହେଁ । ଉତ୍କଳ ସମ୍ମିଳନୀରେ 'ସତ୍ୟର ପ୍ରତିଷ୍ଠା' ପାଇଁ, ମାଡ଼ି ମକଚି କୌଣସି ପ୍ରକାରେ ଆମ ଇଚ୍ଛାକୁ ଅନ୍ୟମାନଙ୍କ ଉପରେ ଲଦିଦେଇ ଉତ୍କଳ ସମ୍ମିଳନୀକୁ ମନମୁଖି ଭାବେ ଓଡ଼ିଆମାନଙ୍କ ସେବାରେ ଚଳାଇବା ମନୋବୃତ୍ତିର ଅବସାନ ଦେଖିବାପାଇଁ ମୁଁ ଆଉ କେତେ ବର୍ଷ ବଞ୍ଚି ରହିବାକୁ ଚାହୁଁଛି । ଯାହା ମୋ ହାତରେ ନାହିଁ । ମାତ୍ର ମୋର ବନ୍ଧୁ ଓ ଭାଇ ଡକ୍ଟର ଗୁରୁପ୍ରସାଦ ମହାନ୍ତି ଉତ୍କଳ ସମ୍ମିଳନୀର ସ୍ୱର୍ଗତ ସଭାପତି ଡକ୍ଟର ରାଧାନାଥ ରଥଙ୍କ ପରି ଶହେବର୍ଷ ଆୟୁଷ ଅତିକ୍ରମ କରି ଉତ୍କଳ ଜନନୀ ଓ ଓଡ଼ିଆ ଜାତିର ସେବା କରୁଥାନ୍ତୁ — ଏତିକି ଶ୍ରୀ ଜଗନ୍ନାଥଙ୍କ ପାଦପଦ୍ମରେ ପ୍ରାର୍ଥନା କରି ଏଇଠି ବିରାମ ନେଉଛି । ଜୟ ଜଗନ୍ନାଥ, ବନ୍ଦେ ଉତ୍କଳ ଜନନୀ !! ଓଡ଼ିଆ ଜାତିର ମହାସଭା-ଉତ୍କଳ ସମ୍ମିଳନୀ ଦୀର୍ଘଜୀବୀ ହେଉ !!!

ଏନ୍ ୨/୮୭, ଭୁବନେଶ୍ୱର-୧୫



# ଜଣେ ସଫଳ ସହଯୋଗୀ

ରଘୁନାଥ ମହାପାତ୍ର

ଯିଏ ମଣିଷକୁ ଭଲ ପାଇପାରେ ସମାଜକୁ ଭଲ ପାଇପାରେ ଅନ୍ୟର ଉପକାର କରିବା ପାଇଁ ହୃଦୟରେ ଆବେଗ ରଖେ, ଅନ୍ୟର ଆନନ୍ଦରେ ନିଜେ ଆନନ୍ଦ ଅନୁଭବ କରେ ସେହିଭଳି ଦରଦୀ ମଣିଷ ହିଁ ସହଯୋଗୀ ହୋଇପାରେ । ଏଇଭଳି ଜଣେ ହୃଦୟବାନ୍ ଦରଦୀ ମଣିଷ ହେଉଛନ୍ତି ଡକ୍ଟର ଗୁରୁପ୍ରସାଦ ମହାନ୍ତି । ସେ ଉଚ୍ଚଶିକ୍ଷା ପାଇଁ ଆମେରିକା ଯାଇଥିଲେ, ସେଠାରେ ଉଚ୍ଚତର ଗବେଷଣା କରି ଜଣେ ଯଶସ୍ୱୀ ଛାତ୍ର ହିସାବରେ ସୁନାମ ଅର୍ଜନ କରିଥିଲେ । ନିଜର ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ସେ ଯଦି ଆଗ୍ରହୀ ହୋଇଥାନ୍ତେ, ତା ହେଲେ ଆମେରିକାକୁ ହିଁ ସେ ତାଙ୍କର କର୍ମକ୍ଷେତ୍ର ରୂପେ ଆଦରି ନେଇଥାନ୍ତେ ଏବଂ ପ୍ରଚୁର ଅର୍ଥ ଉପାର୍ଜନ କରି ଭୌତିକ ସୁଖଲାଭ କରିଥାନ୍ତେ । କିନ୍ତୁ ଭାରତୀୟ ସଂସ୍କୃତି ପ୍ରତି ଅନୁରକ୍ତି, ନିଜ ମାତୃଭୂମି ଓଡ଼ିଶା ପ୍ରତି ଗଭୀର ମମତା ଯୋଗୁଁ ସେ ବିଭବଶାଳୀ ଆମେରିକାର ଆର୍ଥିକ ଆକର୍ଷଣରେ ମୋହିତ ନ ହୋଇ ଫେରି ଆସିଥିଲେ ନିଜ ଜନ୍ମଭୂମି ଓଡ଼ିଶାକୁ । ପଶୁପାଳନ ବିଭାଗର ସରକାରୀ ଚାକିରୀରେ ଉଚ୍ଚପଦବୀରେ ନିଯୁକ୍ତି ପାଇଥିଲେ ଏବଂ ତାଙ୍କ ଭିତରେ ଥିଲା ଅଦମ୍ୟ ଉତ୍ସାହ ଓ କର୍ମପ୍ରେରଣା । ଦେଶ ମାତୃକାର ସେବା କରିବା, ଜନସାଧାରଣଙ୍କ ସେବା କରିବା, ଏହା ଥିଲା ତାଙ୍କ ଜୀବନର ଲକ୍ଷ୍ୟ ।

ଓଡ଼ିଶାରେ ଯେତେବେଳେ ଓମ୍‌ଫେଡ୍ ସ୍ଥାପନ ହୋଇ ନଥିଲା, ଦୁଗ୍ଧଚାଷୀମାନଙ୍କୁ ଏକତ୍ର କରି ସମବାୟ ସମିତି ମାଧ୍ୟମରେ ଦୁଗ୍ଧ ସଂଗ୍ରହ କରିବାର ଯେଉଁ ଯୋଜନା ଗ୍ରହଣ କରାଗଲା, ତାର ପ୍ରାରମ୍ଭିକ କାର୍ଯ୍ୟ ସ୍ୱରୂପ କଟକ, ପୁରୀ, ଢେଙ୍କାନାଳ ଓ କେଉଁଝର ଜିଲ୍ଲାରେ ସର୍ଭେ କରାଯାଇଥିଲା । ଏହି କାର୍ଯ୍ୟର ନେତୃତ୍ୱ ନେଇଥିଲେ ପଶୁପାଳନ ବିଭାଗର ଉପନିର୍ଦ୍ଦେଶକ ଗୁରୁପ୍ରସାଦ । ୧୯୭୦ ମସିହାରେ ପଶୁଚିକିତ୍ସା ମହାବିଦ୍ୟାଳୟର ଅଧ୍ୟାପକ ପଦବୀରୁ ଆସି ଯୋଗ ଦେଇଥିଲେ ଜଣେ ପ୍ରଶାସକ ଭାବେ ଉପନିର୍ଦ୍ଦେଶକ ପଦବୀରେ । ଚାକିରୀ ନୂଆ ହେଲେ ମଧ୍ୟ କର୍ମପ୍ରବଣତା ନୂଆ ନୁହେଁ । ଅବିଭକ୍ତ କଟକ ଜିଲ୍ଲାର ବାଲିକୁଦା ଥାନା ଅନ୍ତର୍ଗତ ବୋରିକିନାଠାରେ ପ୍ରଥମ କରି ଚାଷୀମାନଙ୍କୁ ଏକତ୍ର

କରି ଏକ ଦୁଗ୍ଧ ଉତ୍ପାଦକ ସଙ୍ଘ ଗଠନ କରିଥିଲେ । ଯାହା ବେଶ୍ ସଫଳ ହୋଇଥିଲା ଏବଂ ଦୁଗ୍ଧ ଉତ୍ପାଦକ ସଙ୍ଘର ମୂଳଭିତ୍ତି ସ୍ଥାପନ କରିଥିଲା । ଗୁଜୁରାଟର ଜଣେ ଦିଗ୍‌ଦ୍ରଷ୍ଟା ସହଯୋଗୀ ଶ୍ରୀ କୁରିଆନ୍ ସେତେବେଳେ ଗୁଜୁରାଟରେ ଦୁଗ୍ଧବନ୍ୟା ଖେଳାଇ ସମଗ୍ର ଭାରତର ଦୃଷ୍ଟି ଆକର୍ଷଣ କରିଥିଲେ । ଗୁଜୁରାଟ ଦୁଗ୍ଧ ଉତ୍ପାଦକ ସଂଘ ପରି ଏକ ରାଜ୍ୟସ୍ତରୀୟ ସଂଘ ପ୍ରତିଷ୍ଠା କରିବାର ସଂକଳ୍ପ ନେଇ ଗୁରୁପ୍ରସାଦ କାର୍ଯ୍ୟ କରିଥିଲେ । ତାଙ୍କରି ପ୍ରଚେଷ୍ଟାରେ ଓଡ଼ିଶାର ବହୁ ଜିଲ୍ଲାରେ ଦୁଗ୍ଧ ଉତ୍ପାଦକ ସଂଘ ଗଢ଼ି ଉଠିଥିଲା ଏବଂ ଶ୍ୱେତ ବିପ୍ଳବ ସଫଳ ହୋଇଥିଲା । ପରବର୍ତ୍ତୀ ସମୟରେ ତାହା 'ଓଡ଼ିଶା ଦୁଗ୍ଧ ଉତ୍ପାଦକ ସଂଘ' (ଓମ୍‌ଫେଡ୍)ରେ ପରିଣତ ହେଲା ।

୧୯୮୪ ମସିହାରେ ଓଡ଼ିଶା ପୋଲଟ୍ରି ଫେଡ଼େରେସନ୍‌ର ପ୍ରଥମ ପରିଚାଳନା ନିର୍ଦ୍ଦେଶକ ଭାବେ ସରକାର ତାଙ୍କୁ ନିଯୁକ୍ତି ଦେଲେ । କର୍ମ କରିବାର ଯେଉଁ ଧାରା ବା କୌଶଳ ଯାହାଙ୍କୁ ଜଣାଅଛି ତାଙ୍କ ପାଖରେ କୌଣସି କାର୍ଯ୍ୟ କଷ୍ଟକର ନୁହେଁ । ସେ ଦାୟିତ୍ୱ ନେବା ମାତ୍ରେ କଟକ, ଭୁବନେଶ୍ୱର, ନନ୍ଦନକାନନ ଓ କୋରାପୁଟର ସୁନାବେଡ଼ା ଆଦି ସ୍ଥାନରେ ଅଣ୍ଡା ଓ କୁକୁଡ଼ା ବିକ୍ରୟର ବ୍ୟବସ୍ଥା କରି କୁକୁଡ଼ାଚାଷୀମାନଙ୍କୁ ଉତ୍ସାହିତ କରିଥିଲେ । ଗାଁ ମାନଙ୍କରେ ବୁଲି ପ୍ରତ୍ୟକ୍ଷ ଭାବେ କୁକୁଡ଼ାଚାଷୀମାନଙ୍କ ସହିତ ସାକ୍ଷାତ କରି ସେମାନଙ୍କ ଭଲମନ୍ଦ ବିଷୟରେ ଆଲୋଚନା କରୁଥିଲେ ଏବଂ ପ୍ରତିବନ୍ଧକ ଦୂର କରିବା ପାଇଁ ବ୍ୟବସ୍ଥା ମଧ୍ୟ କରୁଥିଲେ ।

କିଛିଦିନ ପରେ ଯୁଗ୍ମ ନିର୍ଦ୍ଦେଶକ ପଦବୀକୁ ଉନ୍ନିତ ହୋଇ ଚିପିଲିମାଠାରେ ଅବସ୍ଥାପିତ ହୋଇଥିଲେ । ସେଠାରେ ବିରାଟ ପଶୁପାଳନ କେନ୍ଦ୍ର ସହ ଏକ ବିରାଟ କୃଷିଫାର୍ମ ରହିଥିଲା । ତାଙ୍କ କାର୍ଯ୍ୟକାଳ ଭିତରେ ଏହି ପରିସରରେ ଥିବା ବିଭିନ୍ନ ପଶୁପାଳନ କେନ୍ଦ୍ର ଓ କୃଷିଫାର୍ମର ପ୍ରଭୂତ ଉନ୍ନତି ହୋଇଥିଲା । ନିଜ ଉଦ୍ୟମରେ ସେଠରେ ଗୋଟିଏ ଜଗନ୍ନାଥ ମନ୍ଦିର ମଧ୍ୟ ପ୍ରତିଷ୍ଠା କରାଇଥିଲେ । ଏହା ଏକ ଆଧ୍ୟାତ୍ମିକ ଆନ୍ଦୋଳନ କହିଲେ ଅତ୍ୟୁକ୍ତି ହେବନାହିଁ । ଜନସାଧାରଣଙ୍କୁ ସତ୍‌ମାର୍ଗରେ ଯିବାକୁ ସତ୍‌ଉପାୟରେ ଅର୍ଥଉପାର୍ଜନ କରି ଜୀବନଯାପନ କରିବାକୁ ଏହି ସବୁ ଧାର୍ମିକ ଏବଂ ଆଧ୍ୟାତ୍ମିକ ଅନୁଷ୍ଠାନ ପ୍ରେରଣା ଦେଇଥାଏ ।

ପଶୁପାଳନ ବିଭାଗର ନିର୍ଦ୍ଦେଶକ ପଦବୀରେ ଅବସ୍ଥାପିତ ହୋଇ ସେ କଟକରେ ରହିଲେ । ସେହି ସମୟରେ କୁକୁଡ଼ା ଚାଷ ଏବଂ ଗୋପାଳନ ପାଇଁ ବହୁପ୍ରକାର ନୂଆ ନୂଆ ପରିକଳ୍ପନା ପ୍ରସ୍ତୁତ କରାଯାଇଥିଲା । ଓଡ଼ିଶାର ଦୁଗ୍ଧଚାଷୀ ଓ କୁକୁଡ଼ା ଚାଷୀମାନେ କିପରି ଅଧିକ ଲାଭବାନ ହେବେ, କିପରି ସେମାନଙ୍କର ଉନ୍ନତି ଘଟିବ ସେଥିପାଇଁ ସ୍ୱତନ୍ତ୍ରଭାବେ ଦୁଇଜଣ, ସମବାୟ ବିଭାଗର ସହକାରୀ ନିବନ୍ଧକ ତାଙ୍କ ଅଧୀନରେ ରହି କାର୍ଯ୍ୟ

କରୁଥିଲେ । ବ୍ଲକ୍ ସ୍ତରରେ ବରିଷ୍ଠ ପଶୁସହାୟକମାନଙ୍କୁ ସମବାୟ ସମ୍ପ୍ରସାରଣ ଅଧିକାରୀ ଭାବେ ନିଯୁକ୍ତି ଦିଆଯାଇଥିଲା ।

୧୯୯୭ ମସିହାରେ ସେ ସରକାରୀ ଚାକିରୀରୁ ଅବସର ଗ୍ରହଣ କଲେ । ସେଇ ବର୍ଷ କଟକ ଲେଖକ ସହଯୋଗ ସମିତିର ପରିଚାଳନା ବୋର୍ଡପାଇଁ ନିର୍ବାଚନ ହେଉଥାଏ । ଗୁରୁବାବୁ ପରିଚାଳନା ପରିଷଦର ଜଣେ ସଭ୍ୟଭାବେ ନିର୍ବାଚିତ ହେଲେ । ସମସ୍ତ ସଭ୍ୟ ଅନୁରୋଧକଲେ ଗୁରୁବାବୁ ସଭାପତି ଦାୟିତ୍ୱ ଗ୍ରହଣ କରନ୍ତୁ । ସେ ବିନା ଦ୍ୱିଧାରେ ତାହା ଗ୍ରହଣ କରି ତାଙ୍କ ଅସାଧାରଣ କାର୍ଯ୍ୟ ଦକ୍ଷତାର ପ୍ରମାଣ ଦେଲେ ।

ଲେଖକ ସହଯୋଗ ସମିତି ଆରମ୍ଭ ହେଲା ଦିନରୁ ଭଡ଼ା ଘରେ ହିଁ ଚାଲୁଥିଲା । ନିଜସ୍ୱ ଘରଖଣ୍ଡିଏ ନଥିଲା । ଘର କରିବାପାଇଁ ସମିତିର କର୍ମକର୍ତ୍ତା ବାରମ୍ବାର ତହସିଲଦାର ଓ ମ୍ୟୁନିସିପାଲିଟି ଚେୟାରମାନଙ୍କୁ ଅନୁରୋଧ କରୁଥିଲେ; କିନ୍ତୁ କେଉଁଠି ଖଣ୍ଡିଏ ସରକାରୀ ଜାଗା ମିଳି ପାରୁନଥିଲା । ସମସ୍ତଙ୍କ ଭିତରେ ଗୋଟାଏ ଉତ୍ସାହଥିଲା ସମିତିର ନିଜସ୍ୱ ଘର କରିବା ପାଇଁ; କିନ୍ତୁ ଉପାୟଟା କେହି ଖୋଜି ପାଉ ନଥିଲେ ।

ଗୁରୁବାବୁ ସଭାପତି ଦାୟିତ୍ୱ ନେବାପରେ ମତେ ବାରମ୍ବାର ଫୋନ୍‌କରି କହିଲେ – ‘‘ବୋର୍ଡ ମିଟିଂରେ ପ୍ରସ୍ତାବ ପାଶ୍ କରିଦେଲେ କ’ଣ ଘର ହୋଇଯିବ ? ସେଥିପାଇଁ ଉଦ୍ୟମ ଦରକାର । ଘରେ ଶୋଇରହିଲେ ଚଳିବ ନାହିଁ । ତାଙ୍କରି ପ୍ରେରଣାରେ ମୁଁ ମଧ୍ୟ ଚଳଚଞ୍ଚଳ ହୋଇଉଠିଲି । ଖାନନଗର ଅଞ୍ଚଳର ମ୍ୟୁନିସିପାଲିଟି କାଉନସିଲରଙ୍କଠାରୁ ଆରମ୍ଭ କରି କାଳୀମନ୍ଦିରର ଟ୍ରଷ୍ଟି କୌଶଲ୍ୟା ମାତା, ଓକିଲ ନାରାୟଣ ପରିଜା, କାଳନ୍ଦୀ ଚରଣ ପାଣିଗ୍ରାହୀ, ଖାନନଗରର କିଛି ପ୍ରଭାବଶାଳୀ ଭଦ୍ରବ୍ୟକ୍ତି ସମସ୍ତଙ୍କୁ ଅନୁରୋଧ କଲୁ ଆମକୁ ଅଧଗୁଣ୍ଠେ ଜମିଦେବାପାଇଁ । ଏ ଦିଗରେ ଓକିଲ ଶ୍ରୀ ନାରାୟଣ ପରିଜାଙ୍କ ଭୂମିକା ଆମ୍ଭମାନଙ୍କ ନିକଟରେ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିବ । ତାଙ୍କରି ମଧ୍ୟସ୍ଥି ଫଳରେ କାଳୀମନ୍ଦିର ଟ୍ରଷ୍ଟି କୌଶଲ୍ୟାମାତା ତାଙ୍କ ମନ୍ଦିର ଜାଗାରୁ ୩୦ ଡିସିମିଲି ଜମି ଘର କରିବା ପାଇଁ ଦାନପତ୍ର କରିଦେଲେ । ଏହି ଜମି ଖଣ୍ଡକ ମିଳିବାପରେ ଆମେ ଘରଟିଏ ଆରମ୍ଭକଲୁ । ସେଥିରେ ମଧ୍ୟ ପ୍ରତିବନ୍ଧକ ସୃଷ୍ଟି ହେଲା । ସରକାରୀ ବାଳିକା ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ଗୁରୁବାବୁଙ୍କ ନାମରେ ପୁରୀଘାଟ ଥାନାରେ ଏତେଲା ଦେଲେ ଯେ ଲେଖକ ସହଯୋଗ ସମିତିର ସଭାପତି ସ୍କୁଲ ଜମିର ପାଚେରୀଭାଙ୍ଗି ତାଙ୍କ ଜାଗାକୁ ମାଡ଼ିଯାଇଛନ୍ତି । ପୁଲିସ ସମିତି ନାମରେ କୋର୍ଟରେ କେଶ ଦେଲେ । ଏକ୍‌ଜିକ୍ୟୁଟିଭ୍ ମାଜିଷ୍ଟ୍ରେଟଙ୍କ କୋର୍ଟରେ କେଶ୍ ବିଚାର ହେଲା । କେଶ୍‌ରେ ଆମେ ବିଜୟୀ ହେଲୁ । ସେଠାରେ ଘର କରାଇ ନଦେବାପାଇଁ ରୀତିମତ କିଛିଲୋକ ଷଡ଼ଯନ୍ତ୍ର କଲେ । ବିରୋଧୀ ଶକ୍ତିକୁ ପରାହତ କରି ୧୯୯୯ ମସିହା ମେ ମାସରେ ଆମେ ସେ ଘରେ ଛାତ ପକାଇଲୁ ।

୨୦୦୧ ମସିହା ଜାନୁଆରୀରେ ନୂତନ ଗୃହକୁ ଆମ ସମିତି ଉଠିଆସିଲା । ମାସକୁ ମାସ ଆମେ ଯେଉଁ ଘରଭଡ଼ା ଦେଉଥିଲୁ ସେଥିରୁ ରକ୍ଷାପାଇଗଲୁ । ସମିତି ଖର୍ଚ୍ଚରୁ ବଂଚିଗଲା । କେବଳ ଯେ ଆମ ସମିତିର ଖର୍ଚ୍ଚ ବଂଚିଗଲା ତାହାନୁହେଁ, ସମିତିର ନିଜସ୍ୱ କାର୍ଯ୍ୟାଳୟ ହେବା ଫଳରେ କଟକର ସାଂସ୍କୃତିକ ପରିବେଶ ମଧ୍ୟରେ ଏହାର ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟିହେଲା । ଅନ୍ୟାନ୍ୟ ସାହିତ୍ୟ ଅନୁଷ୍ଠାନ ସେଠାରେ ସଭା ସମିତି କରି ସେମାନଙ୍କର ଅଭାବ ମେଣ୍ଟାଇ ପାରିଲେ ।

ସମିତିଗୃହ ନିର୍ମାଣ ଠାରୁ ଆରମ୍ଭକରି ଗୃହ ପ୍ରତିଷ୍ଠା ପର୍ଯ୍ୟନ୍ତ ସବୁକାର୍ଯ୍ୟରେ ଗୁରୁବାବୁ ଆଗୁଆ ହୋଇ ରହିଛନ୍ତି । ତାଙ୍କରି ଅକ୍ଳାନ୍ତ ଉଦ୍ୟମ ଫଳରେ ଏହା ଯେ ସଫଳ ହୋଇ ପାରିଲା ସେକଥାକୁ କେହି ଅସ୍ୱୀକାର କରିପାରିବେ ନାହିଁ ।

ସମିତିର ଆର୍ଥିକ ଅବସ୍ଥା ଭଲ ନଥିଲେ ମଧ ତାରି ଭିତରେ ନୂଆ ନୂଆ ବହି ପ୍ରକାଶ ହୋଇ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା ।

ଅନୋଉ ଅନୋଉ ସମିତି ସ୍ଥାପିତ ହେବାର ୨୫ ବର୍ଷ ୨୦୦୪କୁ ପୂରିଗଲା । ରୌପ୍ୟଜୟନ୍ତୀ ପାଳନ ପାଇଁ ଚାଲିଲା ସଭାସମିତି, କେତେ ପ୍ରକାର କାର୍ଯ୍ୟକ୍ରମର ଆୟୋଜନ, କବି ସମ୍ମଳନୀ, ପୁସ୍ତକ ଉଦ୍‌ଘାଟନ, ବର୍ଷିଆନ ସାହିତ୍ୟିକଙ୍କୁ ସମ୍ବର୍ଦ୍ଧନା । ଦାୟିତ୍ୱ ବାଣ୍ଟିଦିଆଗଲା ପରିଚାଳନା ପରିଷଦର ସଭ୍ୟମାନଙ୍କ ଭିତରେ; କିନ୍ତୁ କାମ କରୁଛି କିଏ ? ସବୁ ଦାୟିତ୍ୱ ସଭାପତି ସମ୍ପାଦକଙ୍କ ଉପରେ, ଅତିଥି ଠିକଣା କରିବା ଠାରୁ ଭୋଜିଭାତର ବ୍ୟବସ୍ଥା ପର୍ଯ୍ୟନ୍ତ । ଘର ପ୍ରତିଷ୍ଠା ବେଳେ ଅତିଥିମାନଙ୍କୁ ଭୋଜନ ଦେବାପାଇଁ ଯେପରି ବ୍ୟବସ୍ଥା କରାଯାଇଥିଲା ରୌପ୍ୟଜୟନ୍ତୀରେ ମଧ ତାଠାରୁ ଅଧିକ ବ୍ୟବସ୍ଥା ହୋଇଥିଲା । ଆମ ସମିତିର ସଭ୍ୟବନ୍ଧୁ କବିବନ୍ଧୁ ସମସ୍ତେ ଆସିଲେ, ଭୁରିଭୋଜନ କରି ଆମମାନଙ୍କର ଉଦ୍ୟମକୁ ପ୍ରଶଂସା କଲେ । କିନ୍ତୁ ଏତକ ଆୟୋଜନ କରିବାପାଇଁ ସଭାପତି, ସମ୍ପାଦକ ଯେ କେତେ ଲୋକଙ୍କ ଦ୍ୱାରସ୍ଥ ହୋଇଥିଲେ ସେ କଥା ତ କେହି ଜାଣିପାରିଲେ ନାହିଁ । ଏହା ଗୋପନ ଦଲିଲରେ ଲେଖା ହୋଇ ରହିଲା ସବୁଦିନପାଇଁ । ଗୁରୁବାବୁଙ୍କ ନେତୃତ୍ୱରେ ସବୁ କାର୍ଯ୍ୟ ତ ସଫଳ ହୋଇ ଚାଲିଛି ! ସେଇ ସଫଳତା ପଛରେ ମୋ ଗୁରୁପ୍ରସାଦଙ୍କ ନିଃସ୍ୱାର୍ଥପର ସେବାମନୋଭାବ ରହିଛି, ସେକଥାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ତାଙ୍କର କର୍ମତତ୍ପରତା ସମସ୍ତଙ୍କୁ ବିସ୍ମିତ କରେ । ମଣିଷ ଯେତେବେଳେ ବିଶ୍ରାମ ଚାହେଁ, ସେହି ବୟସରେ ସେ ବିଚ୍ଛିନ୍ନାଞ୍ଚଳଠାରୁ ଆରମ୍ଭ କରି ବମ୍ବେ, କଲିକତା, ଆମେରିକା ବୁଲି ଉତ୍କଳ ସମ୍ମିଳନୀ ପାଇଁ କାର୍ଯ୍ୟବ୍ୟସ୍ତ ରହନ୍ତି ।

ତାଙ୍କ ପାଖରେ ବିଶ୍ରାମ ନାହିଁ । ସବୁବେଳେ ସେ କର୍ମତତ୍ପର । କର୍ମ ହିଁ ତାଙ୍କର ଈଶ୍ୱର । ସାହିତ୍ୟସେବା ଠାରୁ ଆରମ୍ଭ କରି ଦେଶସେବା ପର୍ଯ୍ୟନ୍ତ ସେ ଯେଉଁ କାର୍ଯ୍ୟକରନ୍ତି

ତାହା ନିଷ୍ଠାପର ଭାବେ କରନ୍ତି । ସାହିତ୍ୟ, ସଂସ୍କୃତି ଓ ସମାଜସେବା ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ଗୁରୁବାବୁଙ୍କର ଅବଦାନକୁ ବିଭିନ୍ନ ଆଲୋଚକ ତାଙ୍କ ଲେଖା ମାଧ୍ୟମରେ ଦର୍ଶାଇଛନ୍ତି । କିନ୍ତୁ ତାଙ୍କର ସରକାରୀ କାର୍ଯ୍ୟକାଳ ଓ ପରବର୍ତ୍ତୀ ସମୟରେ ସମାଜସେବା କରିବାପାଇଁ ସମବାୟ ମାଧ୍ୟମରେ ସେ ଯେଉଁ କାର୍ଯ୍ୟଦକ୍ଷତା ଦେଖାଇ ପାରିଛନ୍ତି ତାହା ହୁଏତ ଓଡ଼ିଶାର ଅନେକ ଲୋକଙ୍କ ଅଜଣା ଥିବ । ମୋର ଏହି କ୍ଷୁଦ୍ର ଲେଖାଟି ମାଧ୍ୟମରେ ତାଙ୍କର ସେହି ପରିଚୟଟି ଦେବାକୁ ପ୍ରୟାସ କରିଛି ମାତ୍ର ।

ସେ ଜଣେ ସଫଳ ସହଯୋଗୀ ଭାବରେ କଟକ ଲେଖକ ସହଯୋଗ ସମିତିର ଯେଉଁ କାର୍ଯ୍ୟ କରିଯାଇଛନ୍ତି ତାହା ସାଂସ୍କୃତିକ ଇତିହାସରେ ନିଶ୍ଚୟ ଲିପିବଦ୍ଧ ହେବ । ଜଣେ ସଫଳ ସହଯୋଗୀ ହେବା ପାଇଁ ଯେଉଁ ତ୍ୟାଗ ମନୋଭାବ, ସାଧୁତା, କର୍ତ୍ତବ୍ୟ-ପରାୟଣତା ଗୁଣର ଆବଶ୍ୟକତା ରହିଛି, ସେହିସବୁ ଗୁଣରେ ଗୁରୁପ୍ରସାଦ ମହିମାନ୍ୱିତ । ତାଙ୍କ ଭଳି ଜଣେ ମହାନ୍ ଉଦାରମନା ବ୍ୟକ୍ତିଙ୍କୁ ସଭାପତି ଭାବେ ପାଇ ଲେଖକ ସହଯୋଗ ସମିତି ଗର୍ବିତ ।

*ସମ୍ପାଦକ, କଟକ ଲେଖକ ସହଯୋଗ ସମିତି, କଟକ*



# ପଶୁପକ୍ଷୀଙ୍କୁ ଭଲପାଉଥିବା ମଣିଷ

ଚକ୍ରଧର ବେହେରା

ମଣିଷ ସହିତ ମଣିଷର ପରିଚୟ ହିଁ ସଂପର୍କ ସୃଷ୍ଟିକରେ । ସଂପର୍କର ଡୋର ହିଁ ମଣିଷ ମନରେ ଆଣେ ମମତା, ହିଂସା, ସ୍ନେହ, ଦ୍ୱେଷ ଇତ୍ୟାଦିକୁ ! ସେ ମଣିଷ ହେଉ ବା ପଶୁ ହେଉ ସ୍ନେହର ରଜ୍ଜୁରେ ସମସ୍ତେ ଆପଣାର ହୋଇଯାନ୍ତି ! ଏହା ହିଁ ତ ହେଉଛି ବିଶ୍ୱଭ୍ରାତୃତ୍ୱର ବାର୍ତ୍ତା ! ଅନ୍ୟକୁ ଆପଣାର କରିବାରେ ଯେଉଁ ସାର୍ଥକତା ତାହା ଅନ୍ୟ କେଉଁଥିରୁ ମିଳିପାରେନା !

ଜୀବନ ମଧ୍ୟରେ ବହୁ ଲୋକ ଆସନ୍ତି, ଅନେକ ମଧ୍ୟ ଯାଆନ୍ତି ! ମାତ୍ର, କେତେକ ରହିଯାଆନ୍ତି ମନଭିତରେ ମନର ଅଜାଣତରେ । ସେମାନେ ମାଡ଼ିବସନ୍ତି ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ! ସେହିପରି ଜଣେ ବ୍ୟକ୍ତି ହେଉଛନ୍ତି ଡଃ ଗୁରୁପ୍ରସାଦ ମହାନ୍ତି ! ଏକାଧାରାରେ ଡାକ୍ତର, ସମାଜସେବୀ, ସଂସ୍କାରକ, ଲେଖକ, ବକ୍ତା ସର୍ବୋପରି ଜଣେ ଦରଦୀ ମଣିଷ ! ସମ୍ପର୍କର ପ୍ରଥମ ବନ୍ଧନର କିୟତ୍‌କାଳ ପୂର୍ବରୁ ତାଙ୍କୁ ମୁଁ ଚିହ୍ନିଥିଲି ଖବରକାଗଜ ମାଧ୍ୟମରେ । ସତୁରୀ ଦଶକରୁ ତାଙ୍କ ସହିତ ଏ ସଂପର୍କ ଏକ ସଭାକାର୍ଯ୍ୟ ମାଧ୍ୟମରେ ଆରମ୍ଭ ହୋଇଥିଲେ ହେଁ ପୂର୍ବରୁ ମୋ ମନରେ ଡାକ୍ତର କହିଲେ କେବଳ ରୋଗ ନିଦାନ କରନ୍ତି ଏହି ଧାରଣା ପରବର୍ତ୍ତୀ ପର୍ଯ୍ୟାୟରେ ଭୁଲବୋଲି ପ୍ରମାଣିତ ହୋଇଥିଲା । ଯେତେବେଳେ ଡଃ ମହାନ୍ତିଙ୍କ ବିଶେଷତ୍ୱକୁ ଉପଲବ୍ଧି କଲି, ତାଙ୍କ ସହିତ ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେବା ଅବସରରେ । ଅବଶ୍ୟ ଏଥିପାଇଁ ଜୀବେଦୟା କାର୍ଯ୍ୟକ୍ରମ ସଂଯୋଜିକା ବଡ଼ଭଉଣୀ ଶୈଳବାଳା ମହାନ୍ତି ହିଁ ସୁଯୋଗ ସୃଷ୍ଟିକରିଥିଲେ । ପରବର୍ତ୍ତି ପର୍ଯ୍ୟାୟରେ ଜୀବହିତୈଷୀ ସଂଘ ସୃଷ୍ଟି ହେଲା ଓ ଡଃ ମହାନ୍ତି ଆଦ୍ୟାବଧି ଏହାର ସଭାପତି ଭାବରେ କାର୍ଯ୍ୟରତ । ନିରବଚ୍ଛିନ୍ନ ଭାବରେ ପଶୁପକ୍ଷୀଙ୍କ ସୁରକ୍ଷା ନିମନ୍ତେ ଡଃ ମହାନ୍ତିଙ୍କ ଅବଦାନ ଚିର ସ୍ୱୀକୃତ ।

ଏ ଅବସରରେ ଏକ ଘଟଣା ମନେପଡ଼େ । ସାଧାରଣତଃ ଦେବୀପୂଜା ଅବସରରେ ପଶୁପକ୍ଷୀଙ୍କୁ ନିଜ ନିଜ କାମନାର ତୃପ୍ତିରେ ଭକ୍ତମାନେ ବଳିପକାନ୍ତି । କି ବିଭତ୍ସ ସେ ଦୃଶ୍ୟ । ଘାତକର କରାଳ ଚକ୍ଷୁ ଲେଲିହାନ ଖଡ୍ଗ ! ବିଚରା ନିରୀହ ଜୀବଟି ଧର୍ମ ନାଁରେ ଧର୍ମର ଅର୍ଗଳୀ ଫାଙ୍କ ମଧ୍ୟଦେଇ ମୃତ୍ୟୁକୁ ଆପଣେଇ ନିଏ ।

କଟକ ଜିଲ୍ଲା ଅନ୍ତର୍ଗତ ନରସିଂହପୁରସ୍ଥ କାନପୁର ଗ୍ରାମରେ ଏହିପରି କୁସଂସ୍କାର ବଶବର୍ତ୍ତୀ ହୋଇ ପଣାସଂକ୍ରାନ୍ତି ଅବସରରେ ଶହ ଶହ ଗ୍ରାମବାସୀ ନିଜ ମଙ୍ଗଳ ମନାସୀ ପଶୁପକ୍ଷୀଙ୍କୁ ବଳି ପ୍ରଦାନ କରନ୍ତି । ଏ ବିଷୟରେ ଆମେ ଅବଗତ ହୋଇ ତା ୧୪।୪।୨୦୦୧ ମସିହାରେ ଜୀବହିତୈଷୀ ସଂଘର ଏବଂ ରାମଲୀଳା ପ୍ରଚାର ସମିତି କର୍ମକର୍ତ୍ତା, ଡଃ ଗୁରୁପ୍ରସାଦ ମହାନ୍ତିଙ୍କ ନେତୃତ୍ୱରେ ୨ଟି ଗାଡ଼ିରେ ଗଲୁ । ସେଠାରେ ଶୁଣିଲୁ ସୋଲବନ୍ଧ, ଗଣଗଣା, ସାଗର, ବନ୍ଧଗୁଡ଼ା, ଅଢ଼େଇଗୁଣ୍ଡି ଗ୍ରାମଦେବୀଙ୍କ ଗ୍ରାମ ନିକଟରେ ଛେଳି, ବୋଦା, ମେଣ୍ଢା, କୁକୁଡ଼ା ବଳି ଦେବାପାଇଁ ବ୍ୟବସ୍ଥା ହୋଇଛି । ଏହା ଆମକୁ ବ୍ୟତିବ୍ୟସ୍ତ କରି ପକାଇଲା ଏବଂ ଏହାର ବିରୋଧପାଇଁ ସଚେତନତା ସୃଷ୍ଟି ଜରୁରୀ ଅନୁଭବ କରି ଆମେ ସୋଲବନ୍ଧ ଦେବୀଙ୍କ ସମ୍ମୁଖରେ ବଳି ବନ୍ଦକରିବାକୁ ଦେବୀଙ୍କ ପାଠରେ ଏକ ସାଧାରଣ ସଭା କରି ବଳି ବିପକ୍ଷରେ ସଚେତନତା ସୃଷ୍ଟିକଲୁ । କିଛି ଲୋକ ଏହାର ଯଥାର୍ଥତା ବୁଝି ବଳି ଦେବାରୁ କ୍ଷାନ୍ତ ହୋଇଥିବାବେଳେ ଆଉ କିଛିଲୋକ ବଳି ଦେବାକୁ ଜିଦ୍ ଧରିଲେ । ମୁଁ ଦେଖିଲି ବଳି ପକାଇବା ପ୍ରାୟ ନିଶ୍ଚିତ ! ଏହାକୁ ଅଟକାଇ ହେବନି ! ଫଳରେ ବଳିପାଇଁ ଉଦ୍ଦିଷ୍ଟ ଏକ ବୋଦାକୁ ମୁଁ ଯାବୋଡ଼ି ଧରିଲି । ଗୋଟିଏ ପଟରେ ବୋଦାର ବିକଳ ରଡ଼ି । ଅନ୍ୟପଟରେ ଘାତକର ଉଦଣ୍ଡ କ୍ରିୟା । ହଠାତ୍ ଶୈଳଅପା ଓ ଗୁରୁବାବୁଙ୍କ ନିର୍ଦ୍ଦେଶରେ ଆମ ସହିତ ଯାଇଥିବା କିଛି ଯୁବକ ମୋତେ ଟାଣି ଆଣିଲେ । ମୁଁ ଏହାର ବିରୋଧ କଲି ! ଯେ କୌଣସି ପରିସ୍ଥିତି ହେଉ ନା କାହିଁକି ମୁଁ ବୋଦାଟିକୁ ବଞ୍ଚାଇବି । ମାତ୍ର ମୋ କଥା କେହି ନଶୁଣି, ମୋତେ ଟାଣି ଧରିଲେ । ମୋତେ ବୁଝାଇଲେ ଗୁରୁବାବୁ ଦେଖ ଆମେ ବଳି ବନ୍ଦକରିବାକୁ ଆସିଛୁ । ନିଜେ ବଳିପଡ଼ିବା ପାଇଁ ନୁହେଁ । ତାଙ୍କ ମନରେ ଭୟଥାଏ ମାତାଲ, ଘାତକ ଛେଳି ବଦଳରେ କାଳେ ମୋତେ ଆଘାତ କରିବ ! ଏ ଘଟଣା ଏବେ ବି ମନେପଡ଼ିଲେ ଦେହ ଶିତେଇ ଉଠେ ।

ଜଣେ ପଶୁଚିକିତ୍ସକ ଭାବରେ ପଶୁପାଳନ ବିଭାଗରେ ଯୋଗଦେଇ ସେହି ବିଗଭାଗର ସର୍ବୋଚ୍ଚ ପଦବୀରୁ ଅବସର ଗ୍ରହଣ କରିଥିବା ଗୁରୁବାବୁ ପଶୁପକ୍ଷୀଙ୍କ ପାଇଁ ବହୁକାର୍ଯ୍ୟ କରିଥିଲାବେଳେ ସରକାରଙ୍କ ଉପରେ ଚାପପକାଇ ଢେଙ୍କାନାଳର ବଳଗଣ୍ଠାରେ ଷଣ୍ଢ ରକ୍ଷଣ କେନ୍ଦ୍ର ପ୍ରତିଷ୍ଠାକରି ଜୀବଙ୍କ ପ୍ରତି ହିତ ସାଧନ ପାଇଁ ସର୍ବଦା ସେ କର୍ତ୍ତବ୍ୟରତ ! ତାଙ୍କ ମତରେ ମଣିଷ ନିଜ ଅସୁବିଧା ଦୂର କରିବାକୁ ସକ୍ଷମ ଥିଲାବେଳେ ନିଜକୁ ସେ ଅସହାୟ ମନେକରି ମଣିଷ ଯାହା ଉପରେ ନିର୍ଭର କରିଚଳେ ସେହି ପଶୁପକ୍ଷୀଙ୍କୁ ଅବହେଳିତ, ଅସହାୟ ଭାବରେ ବଧକରି ଭକ୍ଷଣ କରିବା କ'ଣ ମାନବିକତାର ଅଧିକାର, ପରିଚୟ ? ସମସ୍ତେ ହେଉଛନ୍ତି ଈଶ୍ୱରଙ୍କ ସନ୍ତାନ ! ସମସ୍ତଙ୍କର ବଞ୍ଚିବାର ଅଧିକାର ଅଛି ! ବାକ୍‌ଶକ୍ତି ନାହିଁ ବୋଲି ସେମାନେ କ'ଣ ହତ୍ୟାର ଶିକାର

ହେବେ ? ଏ ବିଷୟରେ ଆଇନ ଥିଲେ ମଧ୍ୟ ତା'ର କାର୍ଯ୍ୟକାରିତା ଠିକ୍ ଭାବରେ ହେଉ ନଥିବାରୁ ଗୁରୁବାବୁ ନିଜ ଭାଷଣରେ ଏ ସମ୍ପର୍କରେ ତଥ୍ୟମୂଳକ ଭାବରେ ବିଭିନ୍ନ ସଭା ସମିତିରେ ଭାଷଣ ଦେଇ ସଚେତନତା ସୃଷ୍ଟି କରିଛନ୍ତି । କେବଳ ଏତିକି ନୁହେଁ ଓଡ଼ିଆ ଭାଷା ଓ ସ୍ୱାଭିମାନର ସୁରକ୍ଷା ଜଗନ୍ନାଥ ତତ୍ତ୍ୱର ପ୍ରସାର ଓ ମାନବବାଦୀ ଚିନ୍ତାଧାରାର ସେ ଜଣେ ମହାନ ସଂରକ୍ଷକ, ପ୍ରଚାରକ ଓ ପଥ ପ୍ରଦାର୍ଶକ । ବହୁ ଅନୁଷ୍ଠାନର ବିଭିନ୍ନ ପଦପଦବୀରେ ଥିବା ଗୁରୁବାବୁ ଯେ ଜଣେ ଭଲ ମଣିଷ ଏହାହିଁ ତାଙ୍କର ପରିଚୟ । ଲେଖକ ଭାବରେ ବହୁ ପୁସ୍ତକ ରଚନା କରି ଓଡ଼ିଶା ସାହିତ୍ୟ ଏକାଡେମୀ ସହ ବିଭିନ୍ନ ଅନୁଷ୍ଠାନପକ୍ଷରୁ ସେ ପୁରସ୍କୃତ ! କଟକର ଜଣେ ମୁରବୀ ଭାବରେ ତାଙ୍କର କାର୍ଯ୍ୟ ସର୍ବଜନବିଦିତ । ଏ ଅବସରରେ ତାଙ୍କର ଶତାୟୁ କାମନା କରୁଛି !

*ଆଡ଼ଭୋକେଟ୍, ସଭାପତି, ରାମଲୀଳା ପ୍ରଚାର ସମିତି,*
*ମାରୁତି ମଣ୍ଡପ, କଟକ*



# ସମାଜସେବୀ ଗୁରୁବାବୁ

ସରୋଜ ସିଂହ

ଗୁରୁବାବୁ ମୋର ନମସ୍ୟ ଅଟନ୍ତି । ମୁଁ ଯେତେବେଳେ ଶୁଣିବାକୁ ପାଇଲି ଗୁରୁବାବୁଙ୍କ ଜୟନ୍ତୀ ଉପଲକ୍ଷେ ଏକ ପୁସ୍ତକ ପ୍ରକାଶ ପାଉଛି; ସେତେବେଳେ ନିଷ୍ପତ୍ତି ନେଇଥିଲି ତାଙ୍କ ବିଷୟରେ ଯେତିକି ଜାଣିଛି ଓ ଅନୁଭବ କରିଛି ତାହା ମୋ ଲେଖାରେ ପ୍ରକାଶ କରିବି ।

ଗୁରୁବାବୁଙ୍କ ବିଷୟରେ ଅନେକ ବିଶିଷ୍ଟ ବ୍ୟକ୍ତିଙ୍କଠାରୁ ଶୁଣିଥିଲି । ତାଙ୍କ ସହିତ ପ୍ରଥମ ଦେଖା ହୋଇଥିଲା ଚୌଧୁରୀ ବଜାରର ଗୋପାଳଜୀଉ ମଠ ପରିସରରେ ଉତ୍କଳ ସମ୍ମିଳନୀର ଜିଲ୍ଲା କମିଟି ଗଠନ ହେବା ଦିନ । ମୁଁ ପ୍ରଫେସର କିଶୋର ଚନ୍ଦ୍ର ତ୍ରିପାଠୀଙ୍କ ସହିତ ଉକ୍ତ ସଭାରେ ଯୋଗ ଦେଇଥାଏ । ସଭାରେ କିଶୋରବାବୁ, ମନୋରମା ଦେବୀ, ଅନ୍ନଦା ପ୍ରସାଦ ରାୟଙ୍କ ସହିତ ଅନେକ ବିଶିଷ୍ଟ ବ୍ୟକ୍ତି ଯୋଗ ଦେଇଥାନ୍ତି । ସେହି ସଭାରେ ଗୁରୁବାବୁ ସଭାପତିତ୍ୱ କରୁଥିଲେ । ସେହି ବୈଠକରେ ମୁଁ ଉତ୍କଳ ସମ୍ମିଳନୀର କାର୍ଯ୍ୟକାରୀ କମିଟିର ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲି । ତାପରେ ବିଭିନ୍ନ ସମୟରେ ଗୁରୁବାବୁଙ୍କ ସହିତ ମୋର ସାକ୍ଷାତ ହେଲା । ତାଙ୍କ ସହିତ ମିଶିବା ପରେ ମୁଁ ଜାଣିପାରିଲି ଯେ, ସେ ତାଙ୍କ ଶେଷ ଜୀବନକୁ ସମାଜ ସେବାରେ ଲଗାଇବାକୁ ଚାହାନ୍ତି । ଏହା ଜାଣିବା ପରେ ମୋର ତାଙ୍କ ପ୍ରତି ଭକ୍ତିଭାବ ସ୍ୱତଃ ଜାଗ୍ରତ ହେଲା ଓ ମୁଁ ସବୁ କାର୍ଯ୍ୟରେ ନିଃସଙ୍କୋଚରେ ତାଙ୍କୁ ସମର୍ଥନ କରି ଚାଲିଲି । ତାପରେ ଆସିଗଲା ଉତ୍କଳ ସମ୍ମିଳନୀର ଶତବାର୍ଷିକ ଉତ୍ସବ । ଏହି ଶତବାର୍ଷିକ ଉତ୍ସବର ମୁଖ୍ୟ ସଂଯୋଜକ ଭାବରେ ଗୁରୁବାବୁ କଟକ ଜିଲ୍ଲାର ପ୍ରତିନିଧିତ୍ୱ କରୁଥାନ୍ତି । ତାଙ୍କର ସମାଜ ପ୍ରତି ତ୍ୟାଗ ଓ ନିଷ୍ଠା ପାଇଁ ମୁଁ ତାଙ୍କୁ ସମର୍ଥନ କରି ଆସୁଥିଲି କିନ୍ତୁ କଟକଠାରେ ଉତ୍କଳ ସମ୍ମିଳନୀର ଶତବାର୍ଷିକୀ ପାଳନ ସମୟରେ ମୋର କଟକ ପ୍ରୀତି ଯୋଗୁଁ ମୁଁ କଟକର ସମ୍ମାନ ବୃଦ୍ଧି କରିବା ସହିତ ଉତ୍କଳ ସମ୍ମିଳନୀର ଶତବାର୍ଷିକୀକୁ ସଫଳ କରିବା ପାଇଁ ଗୁରୁବାବୁଙ୍କ ସହ ମିଶି କାର୍ଯ୍ୟ କରିଥିଲି । ଏହାପରେ ଗୁରୁବାବୁ ଓଡ଼ିଶା ସୁରକ୍ଷା ସମିତିର ରାଜ୍ୟ ସଭାପତି ରୂପେ ନିର୍ବାଚିତ ହେଲେ । ମୁଁ ସମିତିର ମୁଖ୍ୟ ସମ୍ପାଦକ ଭାବେ ଦାୟିତ୍ୱ ତୁଲାଉଥିବା ଯୋଗୁଁ ଆମେ ଦୁହେଁ ଆହୁରି ନିକଟତର ହେବା ପାଇଁ ସୁଯୋଗ ପାଇଲୁ । ଫଳରେ ମୁଁ ଗୁରୁବାବୁଙ୍କୁ ଅତି ନିକଟରୁ ଭଲ ଭାବରେ ଜାଣିବାର ସୁଯୋଗ ପାଇଲି ।

ସେ ଏଭଳି ଜଣେ ବ୍ୟକ୍ତିତ୍ୱ ଯାହାଙ୍କୁ ଗର୍ବ ଟିକିଏ ହେଲେ ବି ସ୍ପର୍ଶ କରିପାରିନି । ତାଙ୍କୁ ଯଦି କେହି କଡ଼ା କଥା କହେ କିମ୍ବା ଅପମାନଜନକ କଥା କହେ ସେ ବିରକ୍ତିଭାବ ପ୍ରକାଶ କରିବା ପରିବର୍ତ୍ତେ ହସି ଦିଅନ୍ତି । କାରଣରୁ ୨୦୦୩ ମସିହାର ଉତ୍କଳ ସମ୍ମିଳନୀ ଶତବାର୍ଷିକୀ ସଫଳ ହୋଇପାରିଥିଲା ।

ଡକ୍ଟର ଗୁରୁପ୍ରସାଦ ମହାନ୍ତି ଏକାଧାରରେ ଜଣେ ସୁଲେଖକ, ସଂଗଠକ, ସୁବକ୍ତା, ଓ ଦକ୍ଷ ଉପଦେଷ୍ଟା ଅଟନ୍ତି । ଜଣେ ଭଲ ମଣିଷ ଭାବରେ ସାରା ରାଜ୍ୟରେ ସେ ପରିଚିତ । ତାଙ୍କର ଓଡ଼ିଆ ପ୍ରୀତି ତଥା ଓଡ଼ିଆ ଭାଷାର ସୁରକ୍ଷା ପାଇଁ କାର୍ଯ୍ୟ କରିବା ଶୈଳୀ ତାଙ୍କୁ ଆଜି ରାଜ୍ୟ ତଥା ପଡ଼ୋଶୀ ରାଜ୍ୟରେ ଥିବା ଓଡ଼ିଆମାନଙ୍କ ନିକଟରେ ଏକ ମହାନ ବ୍ୟକ୍ତିତ୍ୱ ଭାବରେ ପରିଚିତ କରାଇପାରିଛି । ପଶ୍ଚିମବଙ୍ଗର ମେଦିନୀପୁର, ଛତିଶଗଡ଼ ଓ ଝାଡ଼ଖଣ୍ଡ ରାଜ୍ୟରେ ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର କାର୍ଯ୍ୟ ପାଇଁ ସେ ଚିରଦିନ ଅବିସ୍ମରଣୀୟ ହୋଇ ରହିବେ । ସେଥିପାଇଁ ଆଜି ଡକ୍ଟର ମହାନ୍ତିଙ୍କ ପାଇଁ ଓଡ଼ିଶା ରାଜ୍ୟର ମାନ ବୃଦ୍ଧି ପାଇଛି । ଜଣେ ବିଶିଷ୍ଟ ସମାଜସେବୀ ଭାବେ ଖୁବ୍ କମ୍ ସମୟ ମଧ୍ୟରେ ସେ ରାଜ୍ୟର ପ୍ରଥମ ଧାଡ଼ିରେ ଅବତୀର୍ଣ୍ଣ ହୋଇ ନିଜକୁ ପ୍ରତିଷ୍ଠିତ କରି ପାରିଥିବା ଯୋଗୁଁ ଓଡ଼ିଆ ଜାତି ତାଙ୍କ ପାଇଁ ଗର୍ବିତ ।

ତାଙ୍କୁ ଓଡ଼ିଶା ସୁରକ୍ଷା ସମିତିର ସଭାପତି ରୂପେ ପାଇ ତାଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ପାଇଥିବା ଯୋଗୁଁ ମୁଁ ନିଜକୁ ଗର୍ବିତ ମନେକରେ । ଆଜିର ଏହି ପବିତ୍ର ଦିବସରେ ତାଙ୍କ ପାଇଁ ପଦେ ଲେଖିବାର ସୁଯୋଗ ପାଇଥିବା ଯୋଗୁଁ ନିଜକୁ ଧନ୍ୟ ମନେକରୁଛି । ମୁଁ ଡକ୍ଟର ମହାନ୍ତିଙ୍କ ଦୀର୍ଘ ନିରାମୟ ଜୀବନ କାମନା କରୁଛି ପ୍ରଭୁ ଶ୍ରୀ ଜଗନ୍ନାଥ ତାଙ୍କୁ ଶତାୟୁ ପୁରୁଷ କରି ଦେଶ ଓ ଦଶର ସେବାରେ ବ୍ରତୀ କରାନ୍ତୁ, ଏହାହିଁ ମୋର ପ୍ରାର୍ଥନା ।

।। ବନ୍ଦେ ଉତ୍କଳ ଜନନୀ ।।

*ସଭାପତି, କଟକ ସୁରକ୍ଷା କମିଟି, ସତୀଚଉରା ମାର୍ଗ, କଟକ*



# ବିଶ୍ୱ ସଂସ୍କୃତିର ସଂଯୋଗ ରେଖା - 'ଯେ ଯଥା ମାଂ ପ୍ରପଦ୍ୟନ୍ତେ'

ଡଃ ଶ୍ୟାମସୁନ୍ଦର ମିଶ୍ର

## ନିର୍ମାଣ କୌଶଳ :

ଅନତିପୂର୍ବେ ଏକ ପ୍ରାଜ୍ଞ ବଚନ ପ୍ରଚଳିତ ଥିଲା ଯେ ପୂର୍ବ ହେଉଛି ପୂର୍ବ, ପଶ୍ଚିମ ହେଉଛି ପଶ୍ଚିମ; ଏ ଦୁହେଁ କେବେ ଏକତ୍ର ହୋଇପାରିବେ ନାହିଁ (East is East, West is West, they can never meet) । କିନ୍ତୁ ଆଧୁନିକ ଯୁଗର ନୂତନ ପରିବେଶ ପୃଥିବୀକୁ ଏତେ ସଙ୍କୁଚିତ କରି ଦେଇଛି ଯେ, ଏ ବଚନକୁ ଆଜି ନୂଆକରି ବିଶ୍ଳେଷଣ କରିବାର ସମୟ ଆସିଯାଇଛି । ଡଃ ଗୁରୁ ପ୍ରସାଦ ମହାନ୍ତିଙ୍କ 'ଯେ ଯଥା ମାଂ ପ୍ରପଦ୍ୟନ୍ତେ' ଉପନ୍ୟାସରେ ଏହି ପୂର୍ବ-ପଶ୍ଚିମର ସଂଯୋଗ ପ୍ରକ୍ରିୟା ଦ୍ରୁତତର କରାଯାଇଥିବାର ଆଭାସ ମିଳେ । କେତେକ ପାଠକଙ୍କୁ ଏଥିରୁ ଭ୍ରମଣ କାହାଣୀର ସ୍ୱାଦ ମିଳିପାରେ । ତାହା ହୋଇଥିଲେ ମଧ ଏହାର ଉପାଦେୟତା କିଛି ଊଣା ହୋଇ ନଥାନ୍ତା । ଡଃ ମହାନ୍ତି ତାଙ୍କର କର୍ମଜୀବନରେ ଓ ଅବସର ପରେ ମଧ ଏକାଧିକବାର ଶିକ୍ଷା ଅର୍ଜନ ପାଇଁ ଓ ଭ୍ରମଣ ଉଦ୍ଦେଶ୍ୟରେ ଆମେରିକା ଓ ଅନ୍ୟ କେତେକ ପାଶ୍ଚାତ୍ୟ ଦେଶ ଭ୍ରମଣ କରିଛନ୍ତି । ତାଙ୍କର ସେହି ଅଭିଜ୍ଞତା ଭିତ୍ତିରେ 'ଗଲି ଆସିଲି ଯାହା ଦେଖିଲି ତାହା କହିଲି' ରୀତିରେ ପୁସ୍ତକଟି ଲିଖିତ ହୋଇଥିଲେ ତାହା ହୁଏତ ନିଛକ ଏକ ଭ୍ରମଣ କାହାଣୀ ହୋଇଥାନ୍ତା । କିନ୍ତୁ ଲେଖକ ସେଥିରେ କଳ୍ପନାର ପୁଟ ଦେଇ, ସ୍ୱକୀୟ ଚରିତ୍ରାବଳିର ସଂଯୋଜନ କରି, ସେମାନଙ୍କ କ୍ରିୟାକଳାପ, ସଂଳାପ ଓ ବିକାଶକ୍ରମରେ ଉତ୍କଣ୍ଠା ଓ ସଂବେଦନଶୀଳତାର ସମନ୍ୱୟ କରି ତାକୁ ସୁପାଠ୍ୟ ଉପନ୍ୟାସର ଗୌରବ ପ୍ରଦାନ କରିଛନ୍ତି ।

## ଚରିତ୍ରାବଳି :

ଉପନ୍ୟାସର ବିଷୟବସ୍ତୁ ଦୁଇଟି ପ୍ରଧାନ ଚରିତ୍ରକୁ ନେଇ ଗତି କରିଛି । ଗୋଟିଏ ହେଉଛନ୍ତି ଭାରତୀୟ ଯୁବକ ରବି ଦାସ ଏବଂ ଅନ୍ୟ ଜଣେ ହେଉଛନ୍ତି ଆମେରିକାର ଯୁବକ ରଡ଼ନି ହେଲଡ଼ଲ, ଯେ କି ପରେ ସ୍ୱାମୀ ରୁଦ୍ର ସିଦ୍ଧାନନ୍ଦରେ ପରିଣତ ହୋଇଛନ୍ତି ।

ଏହା ବ୍ୟତୀତ ଲେଖକଙ୍କ ଯୋଜନା ଅନୁଯାୟୀ ଉପନ୍ୟାସକୁ ପୂର୍ଣ୍ଣାଙ୍ଗ କରିବାରେ ଆଉ କେତୋଟି ଉଲ୍ଲେଖଯୋଗ୍ୟ ଚରିତ୍ର ଅଛନ୍ତି । ସେମାନେ ପ୍ରାୟ ସମସ୍ତେ ହେଉଛନ୍ତି ଆମେରିକାନ୍ ଯଥା ନାରୀ ଚରିତ୍ରରେ ପ୍ୟାଟ, ଜ୍ୟାନେଟ୍, ମିସେସ୍ ରିସ (ଜ୍ୟାନେଟ୍‌ର ମା), ଲିଣ୍ଡା (ପ୍ୟାଟ୍‌ର ଭଉଣୀ), ହେଲେନ୍, ବ୍ରାଉନ୍ ଏବଂ ମିସେସ୍ ନର୍ଟନ (ରବି ବାସର ଘର ମାଲିକାଣୀ) ଇତ୍ୟାଦି ଏବଂ ପୁରୁଷ ଚରିତ୍ରରେ ବିଲ୍ (ପ୍ୟାଟ୍‌ର ପ୍ରେମିକ), ଷ୍ଟିଭ୍ (ଜ୍ୟାନେଟ୍‌ର ପ୍ରେମିକ), ରିସ (ଜ୍ୟାନେଟ୍‌ର ବାପା, ଡଡ୍ (ଜ୍ୟାନେଟ୍‌ର ଭାଇ), ଡକ୍ଟର ବ୍ରାଜିଲ (ଅଧାପକ), ଡାଃ ଡେସୀ ୱାଲଟର (ରବିର ସହଧ୍ୟାୟୀ), କ୍ୟାଥଲିକ୍ ଚର୍ଚ୍ଚର ଫାଦର ଓ କର୍ମଚାରୀ, ସ୍ୱାମୀ ଭୈରବାନନ୍ଦ ଇତ୍ୟୋଦି । ଏହା ବ୍ୟତୀତ ଆଉ ଅନେକ ଚରିତ୍ର ଏଥିରେ ସଂଯୋଜିତ କରାଯାଇଚି ଯେଉଁମାନଙ୍କ ଉଲ୍ଲେଖ ନଥିଲେ ଉପନ୍ୟାସର ବିଶେଷ ଅଙ୍ଗହାନୀ ହୋଇ ନଥାନ୍ତା ବୋଲି ମନେହୁଏ ।

ପ୍ରବାହ :

ଉପନ୍ୟାସର ଆଦ୍ୟ ଓ ଅନ୍ତିମ ପରିଚ୍ଛେଦ ଦୁଇଟିର ବର୍ଣ୍ଣନା ଭାରତ ଭୂମିରେ ଋଷିକେଶର ଲଛମନ ଝୋଲା ନିକଟସ୍ଥ କୌଣସି ବୈଷ୍ଣବ ମଠକୁ ଆଧାର କରିଛି । କିନ୍ତୁ ଏହା ଛଡ଼ା ଅନ୍ୟ ସମସ୍ତ, ପରିଚ୍ଛେଦର ବର୍ଣ୍ଣନା ଯୁକ୍ତରାଷ୍ଟ୍ର ଆମେରିକାରେ । ସମସ୍ତ ବିଷୟବସ୍ତୁ ଦୁଇଟି ସମାନ୍ତରାଳ ଧାରାରେ ପ୍ରବାହିତ । ଗୋଟିଏ ଧାରା ଗତାନୁଗତିକ ରୀତିରେ ଯୁବକ ଯୁବତୀଙ୍କ ପ୍ରେମ, ମିଳନ, ବିଚ୍ଛେଦ, ସମାଜିକ ରୀତି, ତଜ୍ଜନିତ ଉତ୍କଣ୍ଠା, ନବାନୁରାଗ, ଇତ୍ୟାଦି ହୋଇଥିଲାବେଳେ ଅନ୍ୟଧାରାଟି କେବଳ ଆଧାତ୍ମିକତା ଓ ଧାର୍ମିକ ଅନୁସନ୍ଧିତ୍ସା ଆଧାରିତ ।

ପ୍ରଥମ ଧାରାର ଆରମ୍ଭ ହୁଏ ଭାରତୀୟ ଯୁବକ ରବି ଦାସ ଉଚ୍ଚଶିକ୍ଷା ପାଇଁ ଆମେରିକା ଯାଇ, ଯୁକ୍ତରାଷ୍ଟ୍ରର ଉତ୍ତରାଂଚଳରେ ଥିବା ଫାର୍ଗୋ ସହରରେ ପହଞ୍ଚିବା ପରେ । ସେଇ ବିଶ୍ୱବିଦ୍ୟାଳୟରେ ସେ କେତେକ ପ୍ରବୀଣ ଶିକ୍ଷକଙ୍କ ସାନ୍ନିଧ ଲାଭକରେ ଓ ଘର ମାଲିକାଣୀ ମିସେସ୍ ନରଟନଙ୍କ ଆଶ୍ରୟ ମଧ ପାଏ । ସେଇମାନଙ୍କଠାରେ ସେ ପାଏ ଆମେରିକାରେ ଶିକ୍ଷାର ଗୁଣାତ୍ମକ ମାନର ଉତ୍କର୍ଷର ପରିଚୟ । କିନ୍ତୁ ହୁଗୁଳା ପାରିବାରିକ ଜୀବନର ଏକ ଅବିକଳ ଚିତ୍ର ମିସେସ୍ ନରଟନ୍ ହେଉଛନ୍ତି ଜଣେ ନବେ ବର୍ଷିୟା ଏକାକିନୀ ମହିଳା । ତାଙ୍କର ଗୋଟିଏ ମାତ୍ର ଝିଅ ଥିଲା ଯେ ସୁଦୂର କାଲିଫର୍ଣିଆରେ ବିବାହ କଲା । ସାତ ବର୍ଷ ତଳେ ସେ ଝିଅ ମରିଯିବା ପରେ ସେ ପରିବାର ସହ ବୃଦ୍ଧାଙ୍କର କୌଣସି ସମ୍ପର୍କ ନାହିଁ । ନାତି ନାତୁଣୀଙ୍କ ସହ ମଧ୍ୟ ତାଙ୍କର ସାନ୍ନିଧ ନାହିଁ । ସେମାନଙ୍କୁ ଦେଖିଲେ ସେ ଖୁସି ହେବେ କି ବୋଲି ପଚରାଯିବାରୁ ସେ କହନ୍ତି ଯେ ସେ ଖୁସି ହେବେ କିନ୍ତୁ ସେମାନଙ୍କୁ ପାଖରେ ରଖିବାକୁ ତାଙ୍କର ଇଚ୍ଛା ନାହିଁ ।

କାରଣ "ସେମାନଙ୍କ ଚାଲିଚଳଣ, ହାବଭାବ ଅଭ୍ୟାସ ମୋତେ ଭଲ ଲାଗି ନପାରେ । କାରଣ ଏ ଦେଶର କିଶୋର କିଶୋରୀମାନଙ୍କୁ ଚଳେଇବା ବାପାମାଙ୍କ ପକ୍ଷରେ ମଧ୍ୟ ଅସମ୍ଭବ ହୋଇ ଉଠୁଛି । ଆଜିକାଲିର ଯୁବକଯୁବତୀମାନେ ଅତି ଉଶୃଙ୍ଖଳ ଓ ଅଦମ୍ୟ ହେଲେଣି ।" ମିସେସ୍ ନର୍ଟନଙ୍କ ଏହି ଉକ୍ତି ଆଜି ଭାରତର ବଡ଼ ବଡ଼ ନଗର ଜୀବନ ପ୍ରତି ମଧ୍ୟ ଅନେକ ପରିମାଣରେ ପ୍ରଯୁଜ୍ୟ ହୋଇଗଲାଣି ।

ବିଶ୍ୱବିଦ୍ୟାଳୟ ପରିସରରେ ରବିର ଯେଉଁ ସହଧ୍ୟାୟୀମାନଙ୍କ ସହ ଘନିଷ୍ଠତା ବଢ଼ିଥିଲା, ସେଥିରୁ ପ୍ରଧାନ ଦୁଇଟି ନାରୀ ଚରିତ୍ର ହେଉଛନ୍ତି ପ୍ୟାଟ୍ ଓ ଜ୍ୟାନେଟ୍ । ଅବଶ୍ୟ ସେ ଦୁହିଁଙ୍କର ଦୁଇଜଣ ପ୍ରେମିକ ଥିଲେ ଯଥାକ୍ରମେ ବିଲ୍ ଓ ଷ୍ଟିଭ୍; କିନ୍ତୁ ସେ ଦୁଇ ନାରୀ ରବିର ବ୍ୟକ୍ତିତ୍ୱ ପ୍ରତି ଆକର୍ଷିତ ଥିଲେ ଏବଂ ସେମାନଙ୍କ ପରିବାର ସହିତ ମଧ୍ୟ ରବିର ଘନିଷ୍ଠତା ପ୍ରତିଷ୍ଠିତ ହୋଇଥିଲା । ଆମେରିକାନ୍ ସମାଜରେ କୌଣସି ଯୁବତୀର ବିବାହ ପୂର୍ବରୁ ଏକାଧିକ ପୁରୁଷ ବନ୍ଧୁଙ୍କ ସହ ନିକଟ ସମ୍ପର୍କ ସୃଷ୍ଟି କରିବା ଅପରାଧ ନୁହେଁ । ଏପରିକି ସ୍ପର୍ଶ, ଆଲିଙ୍ଗନ, ଚୁମ୍ବନ ଇତ୍ୟାଦି ବାହ୍ୟିକ ଉପଚାର ମଧ୍ୟ ଦୋଷାବହ ନୁହେଁ । ପିତାମାତା ଓ ପରିବାର ଲୋକେ ମଧ୍ୟ ଏସବୁ ପ୍ରତି ଗୁରୁତ୍ୱ ଦିଅନ୍ତି ନାହିଁ ।

ସମୟକ୍ରମେ ପ୍ୟାଟ୍‌ର ବିଲ୍ ସହ ବିବାହ ହୋଇଗଲା । କିନ୍ତୁ ଷ୍ଟିଭ୍‌କୁ ସାମରିକ ବିଭାଗର ନିର୍ଦ୍ଦେଶକ୍ରମେ ଭିଏଟ୍‌ନାମ ଯୁଦ୍ଧକୁ ଯିବାକୁ ପଡ଼ିଲା । ସେଠାରେ ସେ ଆହତ ହୋଇ ଅନେକ ଦିନ ଧରି ଭିଏଟ୍‌ନାମ୍‌ର ବନ୍ଦୀଶାଳାରେ ରହିଲା ଏବଂ ଜ୍ୟାନେଟ୍‌ଠାରୁ ସମ୍ପର୍କ ଛିନ୍ନ ହୋଇଗଲା । ସେହି ସମୟରେ ଜ୍ୟାନେଟ୍ ଷ୍ଟିଭ୍‌କୁ ଭୁଲି ରବି ସହ ସମ୍ପର୍କ ବଢ଼ାଇଲା ଓ ତାକୁ ବିବାହ କରିବାର ସ୍ୱପ୍ନ ଦେଖିଲା । ରବି ମଧ୍ୟ ଜ୍ୟାନେଟ୍‌ର ରୂପ ମାଧୁରୀର ଜାଲରେ ସମ୍ପୂର୍ଣ୍ଣ ଛନ୍ଦି ହୋଇଗଲା ପରି ବୋଧହେଲା ।

ଜ୍ୟାନେଟ୍ ଓ ରବିର ପ୍ରେମ ପରିପକ୍ୱ ଅବସ୍ଥାରେ ପହଞ୍ଚିବା ବେଳେ ଖବର ପହଞ୍ଚିଲା ଯେ ଷ୍ଟିଭ୍ ଭିଏଟନାମ ବନ୍ଦୀଶାଳାରୁ ମୁକ୍ତ ହୋଇ ଆହତ ଅବସ୍ଥାରେ ଆମେରିକା ଆସୁଛି ଏବଂ ଜ୍ୟାନେଟ୍‌କୁ ଖୁବ୍ ମନେପକାଉଛି । ଏ କଥା ଶୁଣି ମଧ୍ୟ ଜ୍ୟାନେଟ୍ ରବି ପ୍ରତି ହିଁ ଆସକ୍ତି ପ୍ରକାଶ କଲା କିନ୍ତୁ ରବି ମନରେ ଏହା ଭାବାନ୍ତର ସୃଷ୍ଟି କଲା । ଭାରତୀୟ ଭାବନାର ପରିପ୍ରେକ୍ଷୀରେ ରବି ଷ୍ଟିଭ୍‌ର ପ୍ରଥମ ପ୍ରେମର ପବିତ୍ରତାକୁ ହୃଦୟଙ୍ଗମ କଲା ଓ ତା' ପ୍ରତି ସହାନୁଭୂତିଶୀଳ ହୋଇ ଉଠିଲା । ଜ୍ୟାନେଟ୍‌ର ପ୍ରେମକୁ ପ୍ରତ୍ୟାଖ୍ୟାନ କରି ସେ ନିଜର ଅଧ୍ୟୟନ ଶୀଘ୍ର ସମାପ୍ତ କରି ଫେରିଆସିଲା ନିଜର ପରିବାର କୋଳକୁ । ପ୍ରଥମ ଧାରାଟି ସେହିଠାରେ ସମାପ୍ତ ହେଲା ।

ଦ୍ୱିତୀୟ ଧାରାର ଆରମ୍ଭ ମଧ୍ୟ ପ୍ରଥମରୁ ସେହି ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରୁ । ଯାହାର କେନ୍ଦ୍ରବିନ୍ଦୁ ହେଉଛି ରୋଡ଼ନି । ରୋଡ଼ନି ହେଉଛି ମୂଳତଃ ଜର୍ମାନୀ ଜାତିର,

ଯାହାର ପରିବାର ଦୁଇପୁରୁଷ ତଳେ ଆମେରିକା ଆସି କୃଷି ଓ ବ୍ୟବସାୟକୁ ଆଶ୍ରୟ କରି ସେ ଦେଶର ନାଗରିକତା ଗ୍ରହଣ କରିଛନ୍ତି । ବାଳକ କାଳରୁ ରୋଡ଼ନି ଜଣେ ଅଧ୍ୟାତ୍ମବାଦୀ । ବୟସ ବଢ଼ିବା ସଙ୍ଗେ ତା ମଧ୍ୟରେ ଜାତ ଧାର୍ମିକ ଅନୁସନ୍ଧିତ୍ସା ତାକୁ ଭାରତୀୟ ଯୁବକ ରବି ପ୍ରତି ଆକର୍ଷିତ କଲା । ବିଶେଷ କରି ଭାରତୀୟ ଆଧ୍ୟାତ୍ମିକ ଚିନ୍ତନ ଓ ହିନ୍ଦୁ ବିଶ୍ୱାସ ପଦ୍ଧତି ସମ୍ପର୍କରେ ସମ୍ପୂର୍ଣ୍ଣ ଆମେରିକା ଅଜ୍ଞ ଥିବାବେଳେ ସେ ସମ୍ପର୍କରେ ତାହାର ଜାଣିବାର ଇଚ୍ଛା ପ୍ରବଳ ହୋଇଛି । ରବିକୁ ସେ ପରମ ବନ୍ଧୁ ରୂପେ ଗ୍ରହଣ କରିଛି ଏବଂ ରବିକୁ କ୍ୟାଥଲିକ ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିବା ପାଇଁ ପ୍ରବର୍ତ୍ତାଇଛି । ସମୟକ୍ରମେ ରବି ସହ ବ୍ୟାପକ କଥୋପକଥନରୁ ସେ ଜାଣିପାରିଛି ଯେ କ୍ୟାଥଲିକଙ୍କ ପରି ହିନ୍ଦୁମାନେ ଏକେଶ୍ୱରବାଦୀ ନ ହେଲେ ମଧ୍ୟ ଗଭୀର ତାତ୍ତ୍ୱିକ ଦୃଷ୍ଟିରୁ ବିଚାର କଲେ ଏ ସମସ୍ତ ଦେବଦେବୀଙ୍କ ମୂଳସତ୍ତା ଏକ ପରଂବ୍ରହ୍ମ । ତେଣୁ ଏଇ ସବୁ ଦେବଦେବୀଙ୍କ ଉପାସକ ମାନଙ୍କ ମଧ୍ୟରେ କୌଣସି ଧାର୍ମିକ ବିରୋଧ ନାହିଁ । ସେଇଥିପାଇଁ ହିନ୍ଦୁଶାସ୍ତ୍ରରେ କୁହାଯାଇଛି ଯେ,

''ସର୍ବଦେବଂ ନମସ୍କାରଂ କେଶବଂ ପ୍ରତିଗଚ୍ଛତି'' ଏବଂ ସେଇ ଚିନ୍ତାଧାରାରୁ ଉପନ୍ୟାସର ନାମକରଣଟିର ମଧ୍ୟ ସୃଷ୍ଟି ।

ରୋଡ଼ନି ହେଉଛି ନୀତିବାଦୀ, ସଂଯମୀ ଏବଂ କିଛି ପରିମାଣରେ ବୈରାଗ୍ୟବାଦୀ । ମୌଳିକ ଜର୍ମାନରକ୍ତର ରକ୍ଷଣଶୀଳତା ହେତୁ ଉନ୍ମୁକ୍ତ ଆମେରିକାନ୍ ରୀତିନୀତି ପ୍ରତି ମଧ୍ୟ କିଛି ପରିମାଣରେ ସେ ବୀତସ୍ପୃହ । ବନ୍ଧୁ ରବିର ଝିଅମାନଙ୍କ ସହ ମିଳାମିଶା ଦେଖି ସେ ଚିନ୍ତିତ ହୋଇ ତାକୁ ସାବଧାନ କରାଇ କହେ, ''ଏଇ ଆମେରିକାନ୍ ଝିଅଗୁଡ଼ାଙ୍କୁ ଜାଣିନୁ । ସେମାନେ ଗୋଟିଏ ଗୋଟିଏ ଡାହାଣୀ । ଥରେ ଯେ ତାଙ୍କ ପାଲରେ ପଡ଼େ ସେ ଆଉ ଉଧୁରିବ ନାହିଁ । ତୋର ଆଉ ଉନ୍ନତି ନାହିଁ ।''

କ୍ରମେ ଭାରତୀୟ ଦର୍ଶନ ପ୍ରତି ରୋଡ଼ନିର ପ୍ରବଳ ଆଗ୍ରହ ବଢ଼ିଲା । ବିଶେଷ କରି ପ୍ରେମ ଓ ଅହିଂସାର ପ୍ରତୀକ କୃଷ୍ଣଙ୍କ ସମ୍ପର୍କରେ ବହୁ ଗ୍ରନ୍ଥ ସେ ଅଧ୍ୟୟନ କଲା । ସେସବୁ ମୌଳିକ ସୂତ୍ରରୁ ଜାଣିବାପାଇଁ ସଂସ୍କୃତ ଜାଣିବାକୁ ଇଚ୍ଛା କରି ଦିନେ ସେ ବିଶ୍ୱବିଦ୍ୟାଳୟ ଶିକ୍ଷା ତ୍ୟାଗ କରି ସଂସ୍କୃତ ଅଧ୍ୟୟନ କରିବା ପାଇଁ ଭାରତର ବନାରସକୁ ଚାଲିଆସିଲା । ତା' ପରଠାରୁ ଅନେକ ବର୍ଷ ପର୍ଯ୍ୟନ୍ତ ରବି ସହିତ ତାର ଯୋଗସୂତ୍ର ଛିନ୍ନ ହୋଇଗଲା । ଶେଷ ଅଧ୍ୟାୟରେ ଆମେ ଦେଖୁ- ରବି ସପରିବାର ଋଷିକେଶକୁ ଯାଇଥିବାବେଳେ ଅକସ୍ମାତ ରବି ସେଠାରେ ରୋଡ଼ନିକୁ ଆବିଷ୍କାର କଲା । ଦୁଇବନ୍ଧୁ ଗଭୀର ଆନନ୍ଦ ଓ ଭାବପ୍ରବଣତା ସହ ପରସ୍ପରକୁ ଆଲିଙ୍ଗନ କଲେ; କିନ୍ତୁ ସେତେବେଳକୁ ସେ ଆମେରିକାର ଭୋଗବାଦୀ ସଭ୍ୟତା ପରିପୁଷ୍ଟ ରୋଡ଼ନି ନଥିଲା, ସେ ହୋଇଯାଇଥିଲା ତ୍ୟାଗୀ

ସନ୍ନ୍ୟାସୀ । ଗୈରୀକ ବସନ ପରିହିତ ସ୍ୱାମୀ ରୁଦ୍ରସିଦ୍ଧାନନ୍ଦ । ସେଇଠାରେ ହିଁ ଉପନ୍ୟାସର ଦ୍ୱିତୀୟ ଧାରାର ଯବନିକା ପଡ଼ିଲା ।

ବିଚିତ୍ର ବର୍ଣ୍ଣ :

ଭାରତୀୟ ଆଧ୍ୟାତ୍ମିକତାର ଆକର୍ଷଣୀୟ ବୈଶିଷ୍ଟ୍ୟ ପ୍ରତିପାଦନ କରିବା ଲେଖକଙ୍କର ମୌଳିକ ଉଦ୍ଦେଶ୍ୟ ଥିଲେ ମଧ୍ୟ ଉପନ୍ୟାସକୁ ସର୍ବାଙ୍ଗସୁନ୍ଦର ରୂପ ପ୍ରଦାନ କରିବା ପାଇଁ ସେ ଏଥିରେ ଅନେକ ଆନୁଷଙ୍ଗିକ ଚରିତ୍ର, ରସ ଓ ପରିବେଶର ସଂଯୋଜନା କରିଛନ୍ତି । ସ୍ୱାଭାବିକ ରୀତିରେ ଶୃଙ୍ଗାର ଚେତନାକୁ ସେ ଏଥିରେ ଯଥେଷ୍ଟ ସ୍ଥାନ ପ୍ରଦାନ କରିଛନ୍ତି । ରବିର ଦୁଇଜଣ ଆମେରିକୀୟ ବାନ୍ଧବୀଙ୍କ ସହ ଘନିଷ୍ଠତା ଏହାର ପରିବେଷଣରେ ଯଥେଷ୍ଟ ସୁଯୋଗ ସୃଷ୍ଟି କରିଛି । ରବିର ପ୍ରଥମ ସାକ୍ଷାତ ହୁଏ ପ୍ୟାଟ ସହିତ । ପ୍ରଥମ ଦର୍ଶନରେ ପ୍ୟାଟ୍‌ର ଅସାମାନ୍ୟ ସୌନ୍ଦର୍ଯ୍ୟ ବିଷୟରେ ରବିର ଯେଉଁ ଧାରଣା ସୃଷ୍ଟି ହୋଇଛି ଲେଖକ ତାହା ନିମ୍ନୋକ୍ତ ପ୍ରକାରେ ରୂପ ଦେଇଛନ୍ତି । ''ପାତଳ ତନୁ, ଗୋଲ ମୁହଁରେ ଖଣ୍ଡାଧାର ପରି ନାକ ! ପୋଛି ଆଣିଲା ପରି କପାଳ ତଳକୁ ପୋଟଳ ଚିରା ଆଖି ଦୁଇଟି । ଧଳା ମୁହଁରେ କଳାଡ଼ୋଳା ଦୁଇଟି ଚକ୍ ଚକ୍ କରୁଛି । ଧନୁଭଳି ଭ୍ରୂଲତା ଦୁଇଟି ଅଙ୍କା ହୋଇଛି, ଦୁର୍ବଳ ଯୁବକକୁ ତୀର ହାଣି ଅବଶ କରିଦେଲା ପରି ତା'ର ଚାହାଣୀ । କାନ୍ଧ ଉପରୁ ବେଶ୍ ଶଙ୍ଖାକୃତି ବେକଟା ତଳକୁ ବିସ୍ତାରିତ ହୋଇ ଛାତିଆଡ଼କୁ ବଳିହୋଇ ଯାଇଚି । X X X X ସତେ ଯେମିତି ଗୋଟାଏ ଅପସରା ।''

ଅନ୍ୟତମା ବାନ୍ଧବୀ ଜାନେଟ୍‌ର ରୂପ ବର୍ଣ୍ଣନାରେ ରବିର ଭାଷା ଆହୁରି ରୋମାଞ୍ଚକର ଓ ଗଦ୍‌ଗଦମୟ – ''ମୁହଁଟି ତାର ଯେମିତି ଗୋଟାଏ ଗୋଲାପ ଫୁଲ । କୁନ୍ଦିଲା ଭଳି ଗୋଲ ବେକ ଉପରେ ଥୁଆ ହୋଇଛି । ବଳିଲା ପରି ବାହୁ ଦୁଇଟି, ଛାତି ଓ ପିଚା ମଝିରେ ଅଣ୍ଟାଟା ଡମ୍ବରୁ ଭଳି ଦେଖାଯାଉଥାଏ । X X X X ଆଖି ଦୁଇଟି ହରିଣ ପରି ଚିରାଚିରା, ନୀଳରଙ୍ଗର ଡୋଳା ଦୁଇଟି ଢଳ ଢଳ କରୁଥାଏ । ଯେମିତି ଗୋଟାଏ ଆଙ୍କି ଦେଇଥିବା ଚିତ୍ର ପ୍ରତିମା । ଚାହିଁ ହେଉ ନଥାଏ ସିଆଡ଼େ ।''

ଜାନେଟ୍ ସହ ବନ୍ଧୁତା ନିବିଡ଼ ହେବାପରେ ଏହି ବିଦେଶିନୀ ମହିଳାଟି ପ୍ରତି ରବିର ମନୋରାଜ୍ୟରେ ଯେଉଁ ଜାନ୍ତବ କ୍ଷୁଧା ସୃଷ୍ଟି ହୋଇଛି, ତାହାର ଏକ ବାସ୍ତବ ଅନୁଭବ ଦେଇ ଲେଖକ କହନ୍ତି – ''ତା'ର ଉନ୍ନତ ଯୌବନ ଯେମିତି ମୋ ଛାତିରେ ବର୍ଚ୍ଛାଭଳି ଭିତରକୁ ଭିତରକୁ ଗଳି ଯାଉଥାଏ । କଣେଇ କରି ତା ମୁହଁକୁ ଚାହିଁଲି । ଘୂର୍ଣ୍ଣାୟମାନ ରଙ୍ଗବେରଙ୍ଗ ଆଲୁଅରେ ଗାଲଟା ତାର ଚିକ୍ ଚିକ୍ କରୁଚି । ମୋ ଆଡ଼େ ତା'ର ଲକ୍ଷ୍ୟ ନାହିଁ । ଆଖି ଦୁଇଟି ଯେମିତି ବୁଜି ଦେଇ ସେ ନାଚିବାରେ ଲାଗିଚି । ଏକ ଅବର୍ଣ୍ଣନୀୟ ଉନ୍ମାଦନାରେ ଦେହଟା ମୋର ଶୀତେଇ ଉଠୁଥାଏ । X X X X ଜ୍ୟାନେଟ୍ ଦେହରୁ

ଭାସିଆସୁଥାଏ ମିଠା ମିଠା ଇଉଡ଼ିକୋଲନ୍‌ର ସୁଗନ୍ଧ । ପ୍ରାଣଭରି ଆଘ୍ରାଣ କରୁଥାଏ ମୁଁ । ସତେ ଅବା ନନ୍ଦନକାନନର ପାରିଜାତର ଅପୂର୍ବ ମହକ ।''

ନାରୀ ସୌନ୍ଦର୍ଯ୍ୟର ଉପରୋକ୍ତ ବର୍ଣ୍ଣନାର ଭାଷାରେ ଅନେକତ୍ର ଭାରତୀୟ ରୂପକଳ୍ପନାର ଛବି ପ୍ରତିଫଳିତ ! କେବଳ ଭାଷା ନୁହେଁ, ଓଡ଼ିଶାର ପ୍ରାଚୀନ ଓ ମଧ୍ୟ ଯୁଗୀୟ କବିଙ୍କ ପରି ଉପମାନ ଓ ଉପମେୟର ସଂଯୋଜନା ମଧ୍ୟ ସେଥିରେ ଅଛି ଯେପରିକି – ''ପାନପତ୍ର ପରି କଳା ଲକେଟ୍‌ଟାଏ ହାରରେ ଲାଗି ବକ୍ଷସନ୍ଧିରେ ତା'ର ଧଳା ବ୍ଲାଉଜ୍‌ଟା ଉପରେ ଚିକ୍‌ ଚିକ୍‌ କରୁଥାଏ । ସତେ ଯେମିତି ତୁଷାର ଧବଳ କାଞ୍ଚନଜଙ୍ଘାର ବରଫାଚ୍ଛାଦିତ ଉପତ୍ୟକାରେ କୃଷ୍ଣକାୟ ଚିତାବାଘଟା ଖସିପଡ଼ି ଆଉ ଉଠି ପାରୁନାହିଁ ।'' ପୁଣି ରବି ଓ ଜାନେଟ୍‌ ଚନ୍ଦ୍ରାଲୋକିତ ରାତ୍ରିରେ ଗାଡ଼ିରେ ଯାଉଥିବା ବେଳେ ଅଳଙ୍କାର ବିନ୍ୟାସ ମଧ୍ୟରେ ଭଂଜୀୟ ନାୟକର ନାୟିକାକୁ ଚାଟୂକ୍ତି ପରି ରବି ଜନେଟ୍‌ର ମୁଖକୁ ଚନ୍ଦ୍ର ସହ ତୁଳନା କରି କହୁଚି –

''କହିଲି ବାହାରେ ଓ ଭିତରେ ଦୁଇଟା ଚନ୍ଦ୍ର ମୁଁ ଦେଖୁଚି । କେଉଁଟାକୁ ଦେଖିବି ? ଜାନେଟ୍ ମୋ ଗାଲରେ ଆଙ୍ଗୁଠି ଦାବିଦେଇ ପଚାରିଲା, ଏଇଟାକୁ ଚନ୍ଦ୍ର ବୋଲି କହୁଚ କି ?''

–ନା ନା, ସେଇଟା ନୁହେଁ । ବାହାରେ ଖାଲି ଚନ୍ଦ୍ରଟା ସିନା କିରଣ ଦେଉଛି, ହେଲେ ଗାଡ଼ି ଭିତରେ ଚନ୍ଦ୍ର ଆଉ କୁମୁଦର ସମାହାର । ଜାନେଟ ପଚାରିଲା– ସିଏ ପୁଣି କ'ଣ ?

କହିଲି– ତୁ ବୁଝିପାରିବୁ ନାହିଁ । ଆମ ଦେଶରେ ସୂର୍ଯ୍ୟଙ୍କୁ ଦେଖି ଦିନରେ ପଦ୍ମଫୁଲ ଫୁଟେ ଓ ରାତିରେ ଚନ୍ଦ୍ରକୁ ଦେଖି ଫୁଟିଉଠେ କଇଁଫୁଲ । ନାଲି, ଧଳା, ନୀଳ, ଗୋଲାପୀ ରଙ୍ଗର । ହେଲେ ଏଠି ଗୋଟେ ଗୋଲାପୀ କଇଁକୁ ଜାବୁଡ଼ି ଧରି ଚନ୍ଦ୍ରଟା ଗାଡ଼ି ଭିତରକୁ ପଶି ଆସିଛି–– ସେ ପୁଣି କେମିତି ସମ୍ଭବ !''

ତା ଗାଲ ଦୁଇଟାକୁ ଦେଖାଇ ଦେଇ କହିଲି– କଇଁ ଫୁଲର ଗୋଲାପୀ ପାଖୁଡ଼ାଗୁଡ଼ାକ ଏଇଠି ଚନ୍ଦ୍ରକୁ ଜାବୁଡ଼ି ଧରିଛନ୍ତି– ଚନ୍ଦ୍ର ପୁଣି କେଉଁଠି ?

ମୁହଁ ଚାରିପଟେ ଆଙ୍ଗୁଠି ବୁଲାଇ ଆଣି କହିଲି– ଏଇଠି ।

ଏପରି ଆଳଙ୍କାରିକ ଚାତୁର୍ଯ୍ୟ କେବଳ ଯେ ପ୍ରେମବର୍ଣ୍ଣନା ପର୍ଯ୍ୟାୟରେ ହୋଇଛି । ତାହା ନୁହେଁ ଅନ୍ୟତ୍ର ମଧ୍ୟ ଦେଖାଯାଏ । ନିଜର ଆଧ୍ୟାତ୍ମିକ ଅନୁଭୂତିର ପରିସରକୁ ବିସ୍ତୃତତର କରିବାପାଇଁ ରତନିକୁ ଉପଦେଶ ଦେବାଛଳରେ ରବି ଏହିପରି ଅଳଙ୍କାର ବାସ୍ତବ ଜୀବନ ମଧ୍ୟରୁ ପ୍ରୟୋଗ କରିଛି– ''ଦେଶ ଛାଡ଼ି ଯେତେବେଳେ ବିଦେଶକୁ ଯିବୁ ସେତେବେଳେ କ୍ଷୁଦ୍ର ସନ୍ତରଣାଗାରର ଆବଦ୍ଧ ଜଳରେ ରହୁଥିବା ସାନ ମାଛଟି ଏକ

ପୂର୍ଣ୍ଣଗର୍ଭା ପ୍ରକାଣ୍ଡ ପଦୀର ବହମାନ ଜଳରାଶି ଭିତରେ ସୁଅର ବିପରୀତ ଦିଗକୁ ପହଁରିଯାଇ ତହିଁରେ ବସବାସ କରୁଥିବା ଆହୁରି ଅନେକ ଜଳଚରମାନଙ୍କ ସଂସ୍ପର୍ଶରେ ଆସିଲାଭଳି ନାନା ଧର୍ମ, ନାନା ସଂସ୍କୃତି ଓ ନାନା ସଭ୍ୟତା ମଧ୍ୟରେ ଲୁକ୍‌କାୟିତ ବହୁ ନୂତନ ତଥ୍ୟର ଆବିଷ୍କାର କରି ପାରିବୁ'' ।

**ହାସ୍ୟରସ :**

ପୋଖତ ଲେଖକମାନଙ୍କ ରଚନାରେ ହାସ୍ୟରସ ଏକ ଆବଶ୍ୟକୀୟ ବସ୍ତୁ । ଅନେକ କ୍ଷେତ୍ରରେ ଏଥିପାଇଁ ସ୍ୱତନ୍ତ୍ର ଚରିତ୍ର ବା ପରିସ୍ଥିତି ସୃଷ୍ଟି କରାଯାଇ ନଥିଲେ ମଧ୍ୟ ବର୍ଣ୍ଣନା ମଧ୍ୟରେ ଏହା ଅନ୍ତର୍ନିହିତ ହୋଇଥାଏ । ଡଃ ମହାନ୍ତିଙ୍କ ରସବୋଧ ଉପନ୍ୟାସରେ ଅନେକ ସ୍ଥଳରେ ପ୍ରତିଫଳିତ ହୋଇ ଲଘୁ ହାସ୍ୟ ପରିବେଶ ସୃଷ୍ଟି କରିଛି; ଯେପରି କି ହରିଦ୍ୱାରକୁ ଯାତ୍ରା କରୁଥିବା ବେଳେ ବସ୍ ମଧ୍ୟରେ, ''ଗାଇଡ୍‌ର ମୁଣ୍ଡରେ ଥିବା ଲମ୍ୱା ଜଟାରେ ଫୁଲଟାଏ ବନ୍ଧା ହୋଇ କଥା କହିବାବେଳେ ମୁଣ୍ଡ ହଲିବା ତାଳେ ତାଳେ ଯେମିତି ହଲୁଥାଏ, ତାକୁ ଦେଖି ଡଲି ମୋ ପିଠିପଟେ ମୁହଁ ଲୁଚେଇ ହସିବାରେ ଲାଗିଥାଏ । କଥାଟା ଜମିଆସିଲା ବେଳକୁ ଜଟାଟା ଯେତେବେଳେ ଏପଟସେପଟ ହୋଇ ଦୋହଲି ଉଠେ, ଡଲି ମୋ ପିଠିକୁ ପୁଳାଏ ଲେଖାଏଁ ଚୁମୁଟିଦିଏ'' ଜଣେ ଆମେରିକାନ ମୁହଁରୁ ମହାତ୍ମାଗାନ୍ଧୀ 'ମ୍ୟାଗାନ୍ଦି' ରୂପେ ଉଚ୍ଚାରିତ ହେବାର ଶୁଣି କିମ୍ୱା ଧାର୍ମିକ ଆଲୋଚନା ବେଳେ ରଡ଼ନି ମୁହଁରୁ ହିନ୍ଦୁଧର୍ମ ସମ୍ପର୍କରେ କିମ୍ଭୂତକିମାକାର ବର୍ଣ୍ଣନା ଶୁଣି ପାଠକ ବେଶ୍ କୌତୂହଳୀ ହୁଏ । ଏହା ଛଡ଼ା ଜ୍ୟାନେଟ୍ ଓ ରବି ପରି ପ୍ରେମୀଯୁଗଳଙ୍କୁ ବନ୍ଧୁ ବାନ୍ଧବୀଙ୍କ ଥଟ୍ଟା ଟାପରା ମଧ୍ୟରୁ ହାସ୍ୟର ଖୋରାକ ମିଳିବା ସଙ୍ଗେ ସଙ୍ଗେ ଆମେରିକାନ୍‌ମାନଙ୍କର ପରିହାସପ୍ରିୟତାର ପରିଚୟ ମଧ୍ୟ ମିଳେ ।

**ଅନୁଭୂତିର ଛାପ :**

ପ୍ରତ୍ୟେକ ସାର୍ଥକ ଉପନ୍ୟାସରେ ଲେଖକ ନିଜର ପରିପାର୍ଶ୍ୱ ଓ ସମାଜକୁ ଯେପରି ଭାବରେ ଦେଖିଥାଏ, ତାହାର ଅବିକଳ ପ୍ରତିଫଳନ ହୋଇଛି ଏହି ଉପନ୍ୟାସଟିରେ । ଏଥିରୁ ଜଣାଯାଏ ଆମେରିକାରେ ବୃଦ୍ଧ-ବୃଦ୍ଧାମାନେ ମିସେସ୍ ନରଟନଙ୍କ ପରି କିପରି ଘୋର ନିଃସଙ୍ଗ ଜୀବନ ବିତାଉଛନ୍ତି । ଏହି ଅବସ୍ଥାର ବିଶ୍ଳେଷଣ କରି ଲେଖକ ରବି ମୁହଁରେ କୁହାଇଛନ୍ତି - ''ପୁଅ ଝିଅ ତଥା ନାତି ନାତୁଣୀଙ୍କଠାରୁ ଅଲଗା ହୋଇ ଏ ଦେଶର ଅଧିକାଂଶ ବୃଦ୍ଧବୃଦ୍ଧା ସହନଶୀଳତା ହରାଇଛନ୍ତି । ପାରିବାରିକ ବନ୍ଧନରୁ ମୁକ୍ତହୋଇ ସେମାନେ ଯେପରି ଏକୁଟିଆ ରହୁଛନ୍ତି, ତହିଁରେ ଦ୍ୱିତୀୟ ପୀଢ଼ିରୁ ଆଉ ତଳକୁ ସେମାନଙ୍କ ସମ୍ପର୍କ ତିଷ୍ଠି ରହିବା ଅସମ୍ଭବ । ଏଥିଲାଗି ଯଥେଷ୍ଟ ଧର୍ମଗତ କାରଣ ରହିଛି ।''

ଆମେ ଆମେରିକାର ସଭ୍ୟତା ବୋଲି ଯାହା କହୁ, ତାହା ସମଗ୍ର ଆମେରିକା ଦେଶରେ ସର୍ବତ୍ର ଏକାଭଳି ନୁହେଁ । ବଡ଼ ବଡ଼ ମେଟ୍ରୋପଲିଟାନ ସହରମାନଙ୍କରେ ଅର୍ଦ୍ଧାଧିକ ଲୋକଙ୍କ ବସତି । ସେଠାରେ ଲୋକଙ୍କ ପ୍ରଧାନ ଉପଜୀବ୍ୟ ହେଉଛି ଶିଳ୍ପ ଓ ବାଣିଜ୍ୟ । ଯାହାଦ୍ୱାରା ସେ ଦେଶ ପୃଥିବୀମଧ୍ୟରେ ସର୍ବୋଚ୍ଚ ଶିଖର ସ୍ପର୍ଶ କରିଛି । ପୃଥିବୀର ସର୍ବାଞ୍ଚଳର ଲୋକେ ସେଠାରେ ରହି ଏକ ମିଶ୍ରିତ ସଭ୍ୟତାର ରୂପ ଦେଇଛନ୍ତି, କିନ୍ତୁ ପୁସ୍ତକ ବର୍ଣ୍ଣିତ କ୍ଷୁଦ୍ର, ଫାର୍ଗୋ ସହର ଯାହାକି ଦେଶର ଉତ୍ତରାଞ୍ଚଳରେ ଥଣ୍ଡା ଜଳବାୟୁରେ ଅବସ୍ଥିତ ସେଠାର ଗ୍ରାମାଞ୍ଚଳର ଲୋକଙ୍କ ପ୍ରଧାନ ଜୀବିକା କୃଷି । କିନ୍ତୁ ସେଠାରେ ବର୍ଷରେ ୭ ମାସ ତୁଷାରାଛନ୍ନ ରହିବାରୁ ୫ ମାସ ମାତ୍ର ଚାଷବାସ ହୁଏ । କିନ୍ତୁ ଭାରତ ପରି ସେଠାରେ ଧାନ, ଗହମ, ରବି ଫସଲ ବା ପନିପରିବା ଇତ୍ୟାଦି ହୁଏ ନାହିଁ । ପ୍ରଧାନତଃ ଘାଷଚାଷ ହୁଏ, କାରଣ ବ୍ୟାପକ ପଶୁପାଳନ ହିଁ କୃଷକର ଜୀବିକା ଓ ସେ ଘାସ ବର୍ଷଯାକ ପଶୁମାନଙ୍କୁ ଆହାର ଯୋଗାଏ । ଲୋକଙ୍କ ଖାଦ୍ୟ ମଧ୍ୟ ପ୍ରଧାନତଃ ମାଂସ ଓ ଦୁଗ୍ଧଜାତ ପଦାର୍ଥ । ଆମର ଭାତ ବା ରୁଟି ପରି ତାଙ୍କର ଗୋମାଂସ ହିଁ ପ୍ରଧାନ ଖାଦ୍ୟ । ଗ୍ରାମାଞ୍ଚଳରେ ଯେଉଁ ରିସ୍ ପରିବାରର ଚିତ୍ର ଲେଖକଙ୍କ ଦ୍ୱାରା ବିଶେଷ ଭାବରେ ଚିତ୍ରିତ ହୋଇଛି, ସେଠାରେ ଲୋକେ ଦିନର ଅଧିକାଂଶ ସମୟ କଠୋର ପରିଶ୍ରମ କରି ଯାନ୍ତ୍ରିକ ପଦ୍ଧତିରେ କୃଷି ଓ ପଶୁପାଳନ କରନ୍ତି ଏବଂ ସେହି ଶ୍ରମର ଫଳକୁ ଆକଣ୍ଠ ଉପଭୋଗ କରନ୍ତି । ଏପରି ପ୍ରଚଣ୍ଡ ଭୋଗବାଦୀ ସଭ୍ୟତା ସମଗ୍ର ଆମେରିକାରେ ପ୍ରଭାବ ବିସ୍ତାର କରିଥିଲେ ମଧ୍ୟ ତା ମଧ୍ୟରୁ ରଡ଼ନି ପରି ସଂସାର ପରାଙ୍ମୁଖ ସନ୍ନ୍ୟାସୀଙ୍କ ଆବିର୍ଭାବ ପ୍ରକୃତିର ବୈଚିତ୍ର୍ୟ ପରି ମନେହୁଏ ।

ଶିକ୍ଷା କ୍ଷେତ୍ରରେ ଆମେରିକା ଆଜି ମଧ୍ୟ ଭାରତବାସୀଙ୍କ ଅନୁକରଣୀୟ ମନେହୁଏ । ଶିକ୍ଷକ ବ୍ରାଜିଲ ଓ ଟ୍ରେସି ପ୍ରଭୃତିଙ୍କ ଚରିତ୍ର ମଧ୍ୟରେ ଯେଉଁ ବିଦ୍ୟାନୁରାଗ ଓ ଛାତ୍ର ବତ୍ସଳତା ଦେଖାଯାଏ, ତାହା ରବି ପରି ବହୁ ଭାରତୀୟ ଛାତ୍ରଙ୍କୁ ଉଦ୍‌ବୁଦ୍ଧ କରିବ । ଆମେ ପ୍ରାଚୀନ ଭାରତୀୟ ଗୁରୁ ପରମ୍ପରାକୁ ନେଇ ଗର୍ବ କରୁ । କିନ୍ତୁ ସେହି ଗୁରୁମାନଙ୍କଠାରେ ଯେଉଁ ଜ୍ଞାନ ଓ ତ୍ୟାଗର ଚିତ୍ର କାବ୍ୟପୁରାଣ ଗ୍ରନ୍ଥମାନଙ୍କରୁ ମିଳେ, ତାହା ଗୁରୁପୂଜାର ଅଧିକାର ଦାବି କରୁଥିବା ଆଧୁନିକ ଶିକ୍ଷକ ସମାଜରେ ବିରଳ ହୋଇପଡୁଛି । ସେହି କ୍ଷେତ୍ରରେ ପ୍ରତିଯୋଗିତାମୂଳକ ଆର୍ଥିକ ବ୍ୟବସ୍ଥା ମଧ୍ୟରେ ଥାଇ ମଧ୍ୟ ଆମେରିକାର ଶିକ୍ଷକମାନଙ୍କ ଉଦାରତା ଆଜି ଆମର ଅନୁକରଣୀୟ ।

ପୃଥିବୀରେ ସଭ୍ୟତାର ଉତ୍‌ଥାନ ଓ ଅଗ୍ରଗତି ସମ୍ପର୍କରେ ପାଶ୍ଚାତ୍ୟ ଐତିହାସିକ ମାନଙ୍କର ମତାମତରେ ଅନୁପ୍ରାଣିତ ହୋଇ ଲେଖକ ଠାଏ କହିଛନ୍ତି, ''କାସ୍ପିୟାନ୍ ହ୍ରଦକୂଳରେ ବସବାସ କରୁଥିବା ପୁରାତନ ଆର୍ଯ୍ୟମାନେ ଯେତେବେଳେ ଗୃହପାଳିତ

ପଶୁମାନଙ୍କ ଲାଗି ଚାରଣ ଭୂମି ଖୋଜି ଖୋଜି ଦକ୍ଷିଣ ପଶ୍ଚିମ ଦିଗକୁ ଅଗ୍ରସର ହେଲେ ସେମାନଙ୍କର କେତେକ ଦଳ ହିମାଳୟ ଗିରିପଥ ଅତିକ୍ରମ କରି ସିନ୍ଧୁନଦୀ ତୀରରେ ଆର୍ଯ୍ୟ ସଭ୍ୟତା ସ୍ଥାପନ କଲେ । କିନ୍ତୁ ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଅନୁମାନ ଆଧାରିତ ଏହି ସିଦ୍ଧାନ୍ତ ଏବେ ନୂତନ ଗବେଷଣା ଓ ପ୍ରମାଣ ଫଳରେ ଭ୍ରାନ୍ତ ପ୍ରମାଣିତ ହୋଇଛି । ଆର୍ଯ୍ୟମାନେ ଭାରତକୁ ବହିରାଗତ ନୁହନ୍ତି । ଏଇ ଭାରତ ଭୂମିରୁ ହିଁ ଏକ ବିରାଟ ସଭ୍ୟତାର ଧାରା ପୃଥିବୀର ବିଭିନ୍ନ ଅଂଚଳକୁ ବିଚ୍ଛୁରିତ ହୋଇଛି । ମେକ୍ସିକୋ ଦେଶର ଅତି ପ୍ରାଚୀନ 'ମୟ' ସଭ୍ୟତା, ଆଫଗାନିସ୍ଥାନର ବାମିଆନ ବୁଦ୍ଧ (ଯାହା ନିକଟରେ ଧର୍ମାନ୍ଧ ମୁସଲମାନମାନଙ୍କ ଦ୍ୱାରା ଧ୍ୱସ୍ତ ହୋଇଛି) ଏବଂ ଏସିୟା ମହାଦେଶର ବିସ୍ତୃତ ଅଞ୍ଚଳରେ ପରିବ୍ୟାପ୍ତ ବୁଦ୍ଧ ଓ ସନାତନ ଧର୍ମଧାରାର ସଙ୍କେତ ସବୁ ଏହି ସତ୍ୟର ଘୋଷଣା କରନ୍ତି, ଯାହା ଏହି ପୁସ୍ତକର ପାଠକ ହୃଦୟଙ୍ଗମ କରିବା ଉଚିତ ।

**ଜନନୀ ଜନ୍ମଭୂମିଶ୍ଚ :**

ଉପନ୍ୟାସର ପ୍ରତ୍ୟେକ ପୃଷ୍ଠାରୁ ପ୍ରମାଣ ମିଳେ ଆମେରିକାର ସମ୍ପଦ, ପ୍ରାଚୁର୍ଯ୍ୟ ଓ ଶିକ୍ଷାପରିବେଶର ପ୍ରାଚୁର୍ଯ୍ୟ ଲେଖକଙ୍କୁ ବହୁ ଭାବରେ ଆକର୍ଷିତ କରିଛି । କେବଳ ଲେଖକ ନୁହନ୍ତି, ଏ ଦେଶର ଲକ୍ଷ ଲକ୍ଷ ପ୍ରତିଭାଧର ତରୁଣ ସେଇ ଆକର୍ଷଣରେ ବିଦେଶ ଯାଉଛନ୍ତି ଓ ସେଥିରୁ ନିଜକୁ ମୁକୁଳାଇ ନ ପାରି ସେଠାରେ ନିଜକୁ ହଜାଇ ଦେଇ ସେ ଦେଶର ନାଗରିକତ୍ୱ ଗ୍ରହଣ କରି ନେଉଛନ୍ତି । ଉପନ୍ୟାସର ନାୟକ ଇଚ୍ଛା କରିଥିଲେ ତାହା କରିପାରିଥାଆନ୍ତା । ଗୋଟିଏ ସମୟର ଚରମ ଦୁର୍ବଳତମ ମୁହୂର୍ତ୍ତକୁ ଅତିକ୍ରମ କରିପାରି ନଥିଲେ ସୁନ୍ଦରୀ ତରୁଣୀ ପ୍ରେମିକା ଜାନେଟ୍‌କୁ ବିବାହ କରି ଏକ ସମୃଦ୍ଧ ଶାନ୍ତ ଜୀବନ ଅତିବାହିତ କରିପାରିଥାନ୍ତା । କିନ୍ତୁ ତା'ର ବାରମ୍ବାର ମନେପଡୁଥିଲା ତାର ବାପା, ମା', ବୁଢ଼ୀ ମା' ଆଉ ଗ୍ରାମ୍ୟ ଜୀବନ, ଆଉ ମଧ ସେ ମନେପକାଉଥିଲା, ''କେତେ ସୁନ୍ଦର ସେଇ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଭାରତଭୂମି । ପବିତ୍ର ଜନ୍ମମାଟିକୁ ପୃଥିବୀର ଆରପଟେ ଛାଡ଼ି ଆସିଲି । ଏଇ ନା ହୁଏତ ସେଠି ବାଳସୂର୍ଯ୍ୟର ରକ୍ତିମ କରସ୍ପର୍ଶରେ ପ୍ରାଚୀ ସୁନ୍ଦରୀ କଅଁଳ ମୁହଁଟା ଲାଜରେ ନାଲି ହୋଇ ଉଠୁଥିବ ।''

କେବଳ ଆଜିର ଦେଶଭକ୍ତ ବୀରମାନେ ନୁହନ୍ତି, ଆମର ପୁରାଣ ସାହିତ୍ୟ ସବୁ ମଧ ଆମକୁ ଏଇ କଥା ଶିକ୍ଷା ଦିଅନ୍ତି । ଲଙ୍କା ବିଜୟପରେ ଶ୍ରୀରାମଙ୍କୁ ବିଭୀଷଣ ନିଜ ସିଂହାସନଟି ଅର୍ପଣ କରି ଅନୁରୋଧ କରିଥିଲା ଅଯୋଧ୍ୟା ନ ଫେରି ସ୍ୱର୍ଣ୍ଣମୟୀ ଲଙ୍କାରେ ରାଜତ୍ୱ କରିବା ପାଇଁ । ଲକ୍ଷ୍ମଣ ମଧ ରାମଙ୍କୁ ଏହି ଅନୁରୋଧ ରକ୍ଷା କରିବା ପାଇଁ ନିବେଦନ କରିଥିଲେ । ସେତେବେଳେ ରାମ କହିଥିଲେ –

''ଅପି ସ୍ୱର୍ଣ୍ଣମୟୀ ଲଙ୍କା ଲକ୍ଷ୍ମଣ ! ନ ମେ ରୋଚତେ
ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।''

ଅର୍ଥାତ୍ - ହେ ଲକ୍ଷ୍ମଣ ! ଲଙ୍କା ବହୁ ସମ୍ପଦଶାଳୀ ହୋଇପାରେ, କିନ୍ତୁ ଏଠାରେ ରହିବାର ଇଚ୍ଛା ମୋର ନାହିଁ, କାରଣ ଅଯୋଧ୍ୟାରେ ମୋ ଜନନୀ ଓ ଜନ୍ମମାଟି ମୋତେ ଅପେକ୍ଷା କରି ରହିଛନ୍ତି । ଆଜିର Brain Drain ବା ପ୍ରତିଭା ଅପସାରଣ ଯୁଗରେ ଏହାଠାରୁ ବଳି ମର୍ମସ୍ପର୍ଶୀ ଆହ୍ୱାନ ଆଉ କ'ଣ ହୋଇପାରେ ?

**ଶେଷ କଥନ :**

ଗ୍ରନ୍ଥଟିଏ ଭାବ, ଭାଷା, ଆଦର୍ଶ ଓ ବର୍ଣ୍ଣନାଭଙ୍ଗୀରେ ଯେତେ ଉନ୍ନତ ହେଲେ ମଧ୍ୟ, ପାଠକର ଗ୍ରାହକତା ତାହାର ଏକ ବଡ଼ ସାର୍ଥକତା । 'ଯେ ଯଥା ମାଂ ପ୍ରପଦ୍ୟନ୍ତେ' ଉପନ୍ୟାସଟିର ସଂଘର୍ଷମୟ, ଉତ୍କଣ୍ଠାପୂର୍ଣ୍ଣ ବିଚିତ୍ର ଘଟଣାବଳୀର ପରିବେଷଣ ପାଠକର ମନକୁ ନିଶ୍ଚୟ ଆପ୍ଲୁତ କରେ । ଠାଏ ଠାଏ ଆମେରିକାନ ଜୀବନ ପଦ୍ଧତିର ବାସ୍ତବ ସ୍ପର୍ଶ ଦେବାକୁ ଯାଇ ଲେଖକ ଏପରି କେତେକ ଶବ୍ଦାବଳି ଓ ପଦ ବ୍ୟବହାର କରିଛନ୍ତି ଯାହାର ଅର୍ଥ ଓ ଭାବ ସାଧାରଣ ଓଡ଼ିଆ ପାଠକ ପକ୍ଷରେ ବୁଝିବା ଦୁଷ୍କର । ସେପରି କେତୋଟି ପଦ ହେଲା - ୧. ଷ୍ଟେଡ଼ି (ବିବାହ ପୂର୍ବରୁ ଯୁବକ ଯୁବତୀ ନିବିଡ଼ ଭାବରେ ପରସ୍ପରକୁ ଚିହ୍ନିବା ପାଇଁ ଯେଉଁ ଘନିଷ୍ଠ ସମୟ ବିତାନ୍ତି), ୨. ଅଙ୍କଲ୍ ସାମ୍ (ତରୁଣମାନଙ୍କୁ ଯୁଦ୍ଧକୁ ଯିବାର ନିର୍ଦ୍ଦେଶ ଦେବା କର୍ତ୍ତୃପକ୍ଷ), ୩. ଡ୍ରାଫ୍ଟ (ଯୁଦ୍ଧକୁ ଯିବାର ଆଦେଶ ପତ୍ର), ୪. ଟେନ କମାଣ୍ଡମେଣ୍ଟ (ଖ୍ରୀଷ୍ଟଧର୍ମର ୧୦ଟି ଆଦର୍ଶ ବାଣୀ) ସବୁ ଶ୍ରେଣୀର ପାଠକମାନଙ୍କ ସୁବୋଧତା ପାଇଁ ଏପରି କେତୋଟି ପଦର ବ୍ୟାଖ୍ୟା ହୁଏତ ଆବଶ୍ୟକ ଥିଲା । ସାମୂହିକ ଭାବରେ ଦେଖିଲେ ପୁସ୍ତକଟି ଏକ ସାର୍ଥକ ଲୋକପ୍ରିୟ ରଚନା ଓ ସମୟୋପଯୋଗୀ ।

*ଅବସରପ୍ରାପ୍ତ ଅଧ୍ୟାପକ, ଓଡ଼ିଆ ବିଭାଗ,*
*ରେଭେନ୍ସା ମହାବିଦ୍ୟାଳୟ*



# ଆଧ୍ୟାତ୍ମିକ କଥା-ବିଭବ "ମୋହନବଂଶୀ"

ଡଃ ରତ୍ନାକର ଚଇନି

ପୁରାଣ କହେ, 'ବଂଶୀଧର କୃଷ୍ଣ' ସାନ୍ଦୀପନି ଆଶ୍ରମରୁ ଫେରିଲାପରେ 'ଚକ୍ରଧର କୃଷ୍ଣ' ହୋଇଯାଇଥିଲେ । ତାଙ୍କର ସମ୍ମୋହନ ବଂଶୀଧ୍ୱନି ଅପେକ୍ଷା ସୁଦର୍ଶନ ଚକ୍ରର ଅନାହତ ଗତି ହିଁ ଚଳମାନ ବିଶ୍ୱର ସବୁକିଛିକୁ ନିୟନ୍ତ୍ରଣ କଲା । ହିନ୍ଦୁର ଏଇ ଭାବ-ଭାବନା ଆଧ୍ୟାତ୍ମିକ ଜଗତରେ ଏକ ରହସ୍ୟମୟ ପ୍ରସଙ୍ଗ ମନେହୁଏ । ହିନ୍ଦୁଭାବନାରେ ବିଶ୍ୱାସୀ ମଣିଷ ଯେଉଁ ଦିନଠାରୁ କହିବାକୁ ଆରମ୍ଭ କଲା ଯେ, – ହିନ୍ଦୁ ଏକ ଧର୍ମ ନୁହେଁ, ଭାରତ ଭୂଖଣ୍ଡର ଜନ ସମୁଦାୟଙ୍କ ଆଚରଣ ସଂହିତା । କର୍ମ ଓ ଆଚରଣବିଧିକୁ ଏକୀଭୂତ କରିଦେବା ଯଦି ଧର୍ମର ନାମାନ୍ତର ହୁଏ, ତେବେ ହିନ୍ଦୁ ଏକ ଧର୍ମ ।

ଉଦାର ମାନବବାଦୀ ଚିନ୍ତାଧାରାର ପ୍ରସାରକ ଭାରତୀୟମାନେ ଦିନେ ପାଶ୍ଚାତ୍ୟ ଧର୍ମ-ଧାରଣାର ପ୍ରଚାରକ ମାନଙ୍କଠାରୁ ଶୁଣିଲେ – ଖ୍ରୀଷ୍ଟ ଜନ୍ମହେବାର ପାଞ୍ଚ ହଜାର ବର୍ଷ ଆଗରୁ କୃଷ୍ଣ ଜନ୍ମଲାଭ କରିଥିଲେ । ଏ କଥାରେ ଭାରତୀୟ ସାଧୁ ସନ୍ଥ ଓ ଧର୍ମପ୍ରାଣ ବ୍ୟକ୍ତି ଆଶ୍ଚର୍ଯ୍ୟହେଲେ । ଶ୍ରୀକୃଷ୍ଣଙ୍କୁ କୋଉ ସମୟର ମାପକାଠିରେ ମାପି ଏଭଳି କାଳ ନିର୍ଣ୍ଣୟ କଲେ ? ତଥାପି ଧରି ନିଆଯାଉ ସେମାନଙ୍କର ସମୟ ନିରୂପଣ ଠିକ୍ । ମହାଭାରତ ମହାସମର ଭାରତ ଭୂଇଁରେ ଖ୍ରୀଷ୍ଟ ପୂର୍ବ ପାଞ୍ଚହଜାର ବର୍ଷ ପୂର୍ବେ ହୋଇଥିଲା ବୋଲି ସେମାନଙ୍କର ମତ । ତାହା ବି ନିର୍ଭୁଲ ବୋଲି ଧରି ନିଆଯାଉ । ଏଇଠି ପ୍ରଶ୍ନ ଉଠେ, ପାଞ୍ଚହଜାର ବର୍ଷ ପୂର୍ବରୁ ଜନ୍ମିଥିବା କୃଷ୍ଣଙ୍କ ପ୍ରତ୍ୟେକ ଆଖ୍ୟାୟିକା ଏତେ ନିର୍ଭୁଲ ଭାବରେ ପାଞ୍ଚହଜାର ବର୍ଷ ପରେ ଜନ୍ମଲାଭ କରିଥିବା ଖ୍ରୀଷ୍ଟଙ୍କ ଜୀବନ କାହାଣୀରେ ପ୍ରତିବିମ୍ବିତ ହେଲା କିପରି ?

କୃଷ୍ଣ ଗୋପାଳଙ୍କ ଗହଣରେ ଏବଂ ଖ୍ରୀଷ୍ଟ ମେଷପାଳକ ଗହଣରେ, କୃଷ୍ଣ ବାନାଗ୍ନିରୁ ଗୋପ ବାଳକଙ୍କୁ ରକ୍ଷାକରିବା ଏବଂ ଖ୍ରୀଷ୍ଟ ବନାଗ୍ନିକୁ କବଳ କରିବା, କୃଷ୍ଣ ତୀରବିଦ୍ଧହୋଇ ମୃତ୍ୟୁବରଣ କରିବା ଓ ଖ୍ରୀଷ୍ଟ କ୍ରୁଶବିଦ୍ଧ ହୋଇ ଇହଲୀଳା ସଂବରଣ କରିବା ଏକ କାହାଣୀର ଭିନ୍ନ ରୂପାନ୍ତର ମାତ୍ର । ଯଦି କେହି ହିନ୍ଦୁ ଭାବପ୍ରବଣ ହୋଇ କହିଉଠେ କୃଷ୍ଣଙ୍କ ଜୀବନ କାହାଣୀକୁ ଅନୁକରଣ କରି ଖ୍ରୀଷ୍ଟ କାହାଣୀ ଗଢ଼ାଯାଇଛି –

ତାହା ଅପ୍ରାସଙ୍ଗିକ ମନେ ହେବ ନାହିଁ । ଏଇଠୁ ଆରମ୍ଭ ଡଃ ଗୁରୁପ୍ରସାଦ ମହାନ୍ତିଙ୍କ 'କୃଷ୍ଣ-ଖ୍ରୀଷ୍ଟ' ଭାବସଂଘର୍ଷର ଭିତ୍ତିଭୂମି 'ମୋହନ ବଂଶୀ' । ସାମାନ୍ୟ ବାଉଁଶ ଖଣ୍ଡରେ ତିଆରି ବଂଶୀ ବିଶ୍ୱ ସମ୍ମୋହନ କରିବାରେ, ଏକଥା ଆଜିର ବସ୍ତୁବାଦୀ ମଣିଷଙ୍କ ମନରେ ପ୍ରଶ୍ନବାଚୀ ତୋଳେ । ତେବେ ଏଭଳି ଅହେତୁକ ପ୍ରଶ୍ନର ଉତ୍ତର ସହଜରେ ଦିଆଯାଇପାରେ । ସାମାନ୍ୟ ବଂଶୀ ଖଣ୍ଡକରେ ପଣ୍ଡିତ ହରିପ୍ରସାଦ ଚୌରାଶିଆ ଏବେ ଯଦି ବିଶ୍ୱବିଦିତ ହୋଇ ପାରିଲେ, ତାଙ୍କ ବଂଶୀର ନିନାଦରେ ଯଦି ବିଶ୍ୱବାସୀଙ୍କୁ ସମ୍ମୋହିତ କରିପାରିଲେ, ଭଗବାନ ଶ୍ରୀକୃଷ୍ଣ ତାହା ନ କରିଥିବେ କାହିଁକି ? ଛାଡ଼ନ୍ତୁ, ଇଏ କେବଳ ଯୁକ୍ତିର କଥା ।

ଲେଖକଙ୍କର ଉଚ୍ଚତର ବିଦ୍ୟାଧ୍ୟୟନ ପାଇଁ ଆମେରିକାରେ ଅବସ୍ଥାନ ଓ ଘନିଷ୍ଠ ସମଧର୍ମା ବନ୍ଧୁ ଲଏଡ୍ ନେଲସନ୍‌ଙ୍କ ସହ ଆବେଗପୂର୍ଣ୍ଣ ଆଳାପ ହିଁ 'ମୋହନ ବଂଶୀ' ସୃଷ୍ଟିପାଇଁ ଭାବଭୂମି ସୃଷ୍ଟି କରିଛି । ଗ୍ରନ୍ଥର 'ଭୂମିକା'ରେ ଲେଖକ କହିଛନ୍ତି – ''ସେତେବେଳେ ମୁଁ ଯୁକ୍ତରାଷ୍ଟ୍ର ଆମେରିକାର ଏକ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଛାତ୍ର ଭାବେ ଅଧ୍ୟୟନରତଥାଏ । ସେଠାକାର ମୋର ବହୁ ଅଣହିନ୍ଦୁ ସହପାଠୀ କୃଷ୍ଣଙ୍କ ବିଷୟରେ ମୋତେ ଗୁଡ଼େଇ ତୁଡ଼େଇ ଅନେକ ପ୍ରଶ୍ନ କରନ୍ତି । ସେମାନଙ୍କ ପ୍ରଶ୍ନର ଯଥାର୍ଥ ଉତ୍ତର ଦେବା ମୋ ପକ୍ଷରେ ସମ୍ଭବ ହୁଏନା । ତଥାପି ସେମାନଙ୍କୁ କୃଷ୍ଣଙ୍କର ଐଶୀଶକ୍ତି ବିଷୟରେ ବୁଝାଇବାକୁ ମୁଁ ଚେଷ୍ଟା କରେ । ଦେଶଛାଡ଼ି ବିଦେଶରେ ଥିବା ଜଣେ ହିନ୍ଦୁ ଯୁବକ ତା'ର ଇଷ୍ଟ ଦେବତା ପ୍ରତି ସମାଲୋଚନାତ୍ମକ ଉକ୍ତି ପ୍ରତ୍ୟୁକ୍ତିକୁ ଏଡ଼ାଇବା ଲାଗି କିଭଳି ପରିସ୍ଥିତିର ସମ୍ମୁଖୀନ ହୋଇଥିବେ, ତାହା ଏବେ ହୃଦୟଙ୍ଗମ କରିବା ଅନ୍ୟମାନଙ୍କ ପକ୍ଷରେ ଅସମ୍ଭବ । ଶିକ୍ଷା ସମାପ୍ତ କରି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବାର ଦୀର୍ଘ ତିନି ଦଶନ୍ଧି ଧରି ଏ ଦେଶର ବହୁ ଖ୍ୟାତନାମା ବୈଷ୍ଣବ ମହାତ୍ମାଙ୍କ ଠାରୁ ସେସବୁ ପ୍ରଶ୍ନର ଉତ୍ତର ପାଇବା ଲାଗି, ମୁଁ ଚେଷ୍ଟା କରିଛି । ସେଇ ଚେଷ୍ଟାର ଫଳଶ୍ରୁତି ହେଲା 'ମୋହନ ବଂଶୀ' ।''

ପାଶ୍ଚାତ୍ୟ ଦେଶରେ, ବିଶେଷ କରି ଖ୍ରୀଷ୍ଟଧର୍ମୀ ଲୋକମାନେ ବିଶ୍ୱାସ କରନ୍ତି, ଖ୍ରୀଷ୍ଟଙ୍କପରେ କୃଷ୍ଣ ଉପାଖ୍ୟାନ ଗଢ଼ି ଉଠିଛି । ହିନ୍ଦୁମାନେ କେବଳ କୃଷ୍ଣଙ୍କୁ ପୂଜା କରନ୍ତି ନାହିଁ, ଶହ ଶହ ଦେବଦେବୀ ସେମାନଙ୍କ ଆରାଧନାରେ ପରିଧି ଭିତରକୁ ଆସିଥାନ୍ତି । ଏଭଳି ଅମୂଳକ ଧାରଣାକୁ ଲେଖକ ଗୁରୁପ୍ରସାଦ ବଦଳେଇ ଦେବାକୁ ପ୍ରୟାସ କରିଛନ୍ତି । ଲଏଡ୍ ନେଲସନ୍ ଚରିତ୍ର ମାଧ୍ୟମରେ । ରବିବାର ଦିନ ସେମାନେ ଚର୍ଚ୍ଚକୁ ଯାଆନ୍ତି, ଲଏଡ୍ ବି ଯାଏ । ଲେଖକ ତାଙ୍କର ବନ୍ଧୁ । ରବିବାର ଦିନ ସିଏ କ'ଣ କରିବେ, ଏଇ ଘଟଣାରୁ 'କୃଷ୍ଣ' କାହାଣୀର ଅବତାରଣା ଘଟିଛି । ଲେଖକ ତାଙ୍କ ସାଙ୍ଗରେ ଚର୍ଚ୍ଚକୁ ଯିବାପାଇଁ ଆଗ୍ରହ ପ୍ରକାଶ କରିବା ଫଳରେ ଲଏଡ୍ ମନରେ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ଲେଖକ

ଭାରତୀୟ ଧାର୍ମିକ ଚେତନାର ଉଦାରବାଦ ସଂପର୍କରେ ସୂଚନା ଦେଇ କହିଛନ୍ତି, ହିନ୍ଦୁ ସଂକୀର୍ଣ୍ଣତା ବାଦୀ ନୁହେଁ । ଅନ୍ୟ ଧର୍ମକୁ ଘୃଣା କରିବା ସେ ଜାଣେନା । ପ୍ରଶସ୍ତ ହୃଦୟରେ ସେ ସବୁ ଧର୍ମର ବଡ଼ପଣକୁ ଆପଣେଇ ନେବାକୁ ପଛାଏ ନାହିଁ ।

ଲଏଡ୍ ପ୍ରଶ୍ନ କଲେ, ହିନ୍ଦୁମାନେ କେଉଁ ଠାକୁରକୁ ପୂଜା କରନ୍ତି ? ଲେଖକ ଟିକିଏ ଚିନ୍ତା କରି କହିଲେ, ସେ କୃଷ୍ଣଙ୍କୁ ପୂଜା କରନ୍ତି । ଆଶ୍ଚର୍ଯ୍ୟ ହେଲେ ଲଏଡ୍ । ସେ ତତ୍କ୍ଷଣାତ୍ କହିଲେ,. ଆରେ ! ତୁମ ଧର୍ମରେ ଖ୍ରୀଷ୍ଟଙ୍କୁ କୃଷ୍ଣ ବୋଲି କହନ୍ତି !! ଏଇଠି ଗୋଟିଏ ସ୍ୱାଭାବିକ କଥା ମନକୁ ଅସେ ଯେ, 'କୃଷ୍ଣ' ଶବ୍ଦର ପାଶ୍ଚାତ୍ୟ ଢ଼ାଞ୍ଚାର ଉଚ୍ଚାରଣ ତ 'ଖ୍ରୀଷ୍ଟ', ଯିଏ କୃଷ୍ଣ, ସେଇ ଖ୍ରୀଷ୍ଟ; ହୁଏତ ସେଇ ଆଲ୍ଲା । ଈଶ୍ୱର ଆଲ୍ଲା ତେରେ ନାମ

'ମୋହନ ବଂଶୀ' ଆଖ୍ୟାନ ଭାଗର ଜନ୍ମଜାତକ ଏଇଠୁ ସୃଷ୍ଟି । ଲେଖକ, କୃଷ୍ଣ ଆଖ୍ୟାନ ଯେ ଖ୍ରୀଷ୍ଟଠାରୁ ଭିନ୍ନ, ତାହା ଉପସ୍ଥାପନ କରିବାପାଇଁ କୃଷ୍ଣ କାହାଣୀ ବର୍ଣ୍ଣନା କରିଛନ୍ତି ଲଏଡ୍‌ଙ୍କ ଆଗରେ । ଗ୍ରନ୍ଥ ରୂପ ଦେଲାବେଳେ ସେ ବିଭିନ୍ନ ବୈଷ୍ଣବ ଶାସ୍ତ୍ରର 'ଗଭୀର ଅନୁଶୀଳନ କରି, ତ୍ରିଭୁବନ ମାନସ-ଆକର୍ଷଣ କାରୀ ମୋହନ ବଂଶୀର ସକଳ ବିଭବକୁ ସୁନ୍ଦର ଭାବରେ ଉପସ୍ଥାପନ କରିଛନ୍ତି, ସରଳ, ସରସ ଓ ଭାବମୟ ଭଙ୍ଗୀରେ । ଏଥିରେ ବୈଷ୍ଣବୀୟ ସିଦ୍ଧାନ୍ତ ଏକାନ୍ତ ସୁରକ୍ଷିତ ହେବା ସଙ୍ଗେ ସଙ୍ଗେ ଘଟଣାକ୍ରମ ମଧ ରସାଳ ବର୍ଣ୍ଣନା ଶୈଳୀରେ ରସସିକ୍ତ ।

'ମୋହନ ବଂଶୀ' ଏକ ବୈଷ୍ଣବୀୟ ଚେତନାଧର୍ମୀ ଗଦ୍ୟଗ୍ରନ୍ଥ । ଏକଥାକୁ ଭୁଲାଇ ଦେବାପାଇଁ ଲେଖକ ଏକ ଅଭିନବ କୌଶଳ ଅବଲମ୍ବନ କରିଛନ୍ତି । ପ୍ରଥମରୁ ହିଁ ଏହା ପାଠକୀୟ ସଂବେଦନା ଓ ଆଗ୍ରହ ସୃଷ୍ଟିପାଇଁ 'ଉପନ୍ୟାସ' ଭଳି ମନେହୁଏ । କୃଷ୍ଣ କାହାଣୀ ତ ଅନନ୍ତ ଉପନ୍ୟାସର ଗନ୍ତାଘର । ଲେଖକ ଜଣେ ଜଣାଶୁଣା କଥାଶିଳ୍ପୀ । ସାଧାରଣତଃ ତାଙ୍କର ରଚନାଶୈଳୀ ଉପନ୍ୟାସ-ସୁଲଭ । ଏହାର ଉପସ୍ଥାପନା ଶୈଳୀ ଏତେ ସରସ ଓ ସୁନ୍ଦର ଯେ, ଏ ଗ୍ରନ୍ଥକୁ ଥରେ ଆରମ୍ଭକଲେ ଶେଷ ନ କରି ରହି ହୁଏ ନାହିଁ । ତାହାହିଁ ତ ସଫଳ କଥା ସାହିତ୍ୟର ଧର୍ମ । ଲେଖକ ଏହି ଗ୍ରନ୍ଥ ସଂପର୍କରେ ନିଜର ଆବେଗ ପ୍ରବଣ ଭୂମିକାରେ କହନ୍ତି – ''କୃଷ୍ଣଲୀଳାରେ ମୋହନବଂଶୀର ମହତ୍ତ୍ୱ ବିଷୟରେ ସାଧାରଣ ଲୋକମାନେ ସେତେଟା ଅବହିତ ନୁହଁନ୍ତି । ଯଶୋଦାନନ୍ଦନ ଶ୍ୟାମସୁନ୍ଦର କେଉଁଠାରୁ ବଂଶୀକୁ ପାଇଲେ, କାହିଁକି ବଂଶୀ ବଜାଇଲେ, କେଉଁଠାରେ କାହିଁକି ସେ ବଂଶୀ ପରିତ୍ୟାଗ କଲେ ଇତ୍ୟାଦି ନାନା କଥା ସାଧାରଣ କୃଷ୍ଣପ୍ରେମୀମାନଙ୍କ ପକ୍ଷରେ ଜାଣିବା କଷ୍ଟସାଧ ହୋଇପଡ଼େ । ଏ ସଂପର୍କରେ କେବଳ ସିଦ୍ଧ ବୈଷ୍ଣବ ମହାତ୍ମାମାନେ ଦିଗ୍‌ଦର୍ଶନ ଦେଇପାରନ୍ତି । ମାତ୍ର ଏ ବିଷୟରେ ସେମାନଙ୍କ ସ୍ପଷ୍ଟମତ ପ୍ରକାଶିତ ହେବାପରି ମନେ ହୁଏନା ।''

ଅତଏବ ଏଇ ମନ୍ତବ୍ୟରୁ ଏହା ସ୍ପଷ୍ଟ ହୋଇଯାଏ ଯେ, ଲେଖକ କୃଷ୍ଣ ଆଖ୍ୟାନକୁ ନେଇ ଉପନ୍ୟାସ ସୃଷ୍ଟି କରିବାର ଅଭିପ୍ରାୟ ରଖି ନଥିଲେ । ସେ ମୋହନବଂଶୀ ତତ୍ତ୍ୱ ଓ ତାହାର ମହତ୍ତ୍ୱ ପ୍ରକାଶ ପାଇଁ ପ୍ରୟାସ ଜାରି ରଖିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ବଂଶୀ ମହତ୍ତ୍ୱକୁ ସର୍ବସାଧାରଣ ବିଶେଷ ଭାବେ ଜାଣନ୍ତୁ । ସେଥିପାଇଁ ତାଙ୍କ ପ୍ରାଣରେ କାବ୍ୟିକ ଆବେଗ ଥିଲା । 'ମୋହନବଂଶୀ'ର ଘଟଣା ପ୍ରବାହ ସେଥିପାଇଁ ଶବ୍ଦ ସଂଯୋଜନା ଅନେକ ସ୍ଥଳରେ କାବ୍ୟଧର୍ମୀ । ଯେମିତି କି –

'ସ୍ଫୁରିଲାନି ବାକ୍ୟ ଆଉ ନିରୁତ୍ତର ରହିଲେ ଶ୍ରୀମତୀ ।
ପୁନର୍ବାର କହିଲେ କେଶବ ।
ଯୁଗପରେ ଯୁଗ ଧରି ନିତ୍ୟକୃଷ୍ଣ-ସଙ୍ଗ-ସୁଖ ଲାଭ କରି,
ଇଚ୍ଛା କରିଥିଲ ତୁମେ ଚାଖିବାକୁ ବିରହ ମାଧୁର୍ଯ୍ୟ ।
ହେବାପାଇଁ କୃଷ୍ଣ ପ୍ରେମେ ପାଗଳିନୀ
କୃଷ୍ଣ ପ୍ରେମ ମନ୍ଦାକିନୀ ବୁହାଇ ଦେବାକୁ
ଏହି ମର୍ତ୍ତ୍ୟପୁରେ, ମାନବ ସମାଜେ,
ନିବାରଣ କରିବାକୁ ହିଂସା, ଦ୍ୱେଷ, ଈର୍ଷା
ଆଉ ପରଶ୍ରୀକାରତରତାଦି ଆସୁରିକ ଭାବ ।
ଜାଗରିତ କରିବାକୁ ଶାନ୍ତି-ପ୍ରୀତି, ସ୍ନେହ-ପ୍ରେମ,
ମୈତ୍ରୀ ଆଉ ମମତାର ଦେବସତ୍ତା ମାନବ ହୃଦୟେ ।

ଏଭଳି କବିତା-ସୁଲଭ ରଚନା କୃଷ୍ଣ କାହାଣୀର କାବ୍ୟ-ରୂପ ମାନଙ୍କୁ ସ୍ମରଣ କରାଇ ଦିଏ । ଲେଖକ ସେଇ ଗତାନୁଗତିକ ଧାରାରେ ଯିବାପାଇଁ ପସନ୍ଦ ନ କରି ଗଦ୍ୟମୟତାକୁ ଆଦରି ନେଲେ । ଗଦ୍ୟ କବିମାନଙ୍କର ନିକଷ ବୋଲି ପଣ୍ଡିତମାନେ କହିଛନ୍ତି । ତେଣୁ ଗଦ୍ୟରେ କୃଷ୍ଣଲୀଳା ଉପସ୍ଥାପନ କରିବାର ପ୍ରବଣତା ତାଙ୍କ ପାଖରେ ଦେଖାଦେବା ସ୍ୱାଭାବିକ । ମାତ୍ର ତାଙ୍କ ରଚନା ଶୈଳୀଟି ଉପନ୍ୟାସ-ଧର୍ମୀ । କାହାଣୀ ପରିକଳ୍ପନା, ସଂଯୋଜନା ଓ ପରିଣତି ଅତ୍ୟନ୍ତ ନାଟକୀୟ । ଆଦ୍ୟ ପୃଷ୍ଠଭୂମିରେ ଲେଖକ ଓ ଲଏଡ୍‌ଙ୍କୁ ପାଠକେ ଦେଖିବେ ଏବଂ ଅନ୍ତପର୍ଯ୍ୟାୟର ପରିବର୍ତ୍ତିତ ଉଦ୍ଧବ ଭଳି ଲଏଡ୍ ଠିଆ ହୋଇଥିବା ଅନୁଭବ କରିପାରିବେ । ଶେଷ ପଂକ୍ତିରେ ଲେଖକ କହିଛନ୍ତି, ଅଦୂରରୁ ଭାସିଆସୁଥାଏ ଆମେରିକାନ ଲିଲିର ସୁଗନ୍ଧ । ଲନ୍‌ର ବାଡ଼ ସେପଟେ ଥିବା ପ୍ରେରୀ ଘାସର ଘଞ୍ଚବୁଦା ଦୋହଲାଇ ବହି ଆସୁଥିବା ପବନର ସେଁ-ସେଁ ଶବ୍ଦ ସତେ ଯେପରି ସୃଷ୍ଟି କରୁଥାଏ ବଂଶୀ ସ୍ୱନର ପ୍ରହେଳିକା । ସେହି ଶବ୍ଦକୁ ତନ୍ମୟ ହୋଇ ଶୁଣୁଥାଏ ଲଏଡ୍ ନେଲସନ୍ ।

ଅତଏବ ଏଥିରୁ ସ୍ପଷ୍ଟ ବୁଝାପଡ଼େ ଯେ, ଲେଖକ ସେଇ ପ୍ରତୀୟମାନ ବଂଶୀସ୍ୱନରେ ତନ୍ମୟ କରି ଦେଇଛନ୍ତି ଲଏଡ୍‌ଙ୍କୁ; କିନ୍ତୁ ନିଜେ ବିମୁକ୍ତ ବ୍ୟକ୍ତିଚେତନାଟିଏ । ଆତ୍ମବିଶ୍ୱାସରେ ଦୃଢ଼ ଥିବା ପାଶ୍ଚାତ୍ୟ ଭାବାଦର୍ଶର ଏଇ ଚରିତ୍ରଟି ଜ୍ଞାନ ପାଗଳ ଉଦ୍ଧବ ହୋଇ ରହିଲା ନାହିଁ – ସେ ପାଲଟିଗଲା ପ୍ରେମ-ପାଗଳ ଗୋପୀଜନଟିଏ । ଲେଖକଙ୍କର ଉପନ୍ୟାସିକ ଗୁଣର ଭାବପକ୍ଷଟି ସଫଳ ହୋଇଛି, ମାତ୍ର କ୍ରିୟାପକ୍ଷର ଧର୍ମ ହଜି ଯାଇଛି । ଫଳତଃ ମୋହନ ବଂଶୀର ଆଧ୍ୟାତ୍ମିକ ଭାବାଦର୍ଶ ସମର୍ଥ ଦିଗଦର୍ଶନ କରାଇଲା ବେଳେ କଥା-ମହାକାବ୍ୟର କଳାପକ୍ଷ ଆଶ୍ୱିନର ବର୍ଷଣହୀନ ଧବଳ ବାଦଲର ମେଳାଭଳି ମନେହୁଏ । ସମସ୍ତ ଶାସ୍ତ୍ରବାଣୀକୁ ଆଧାର କରି ସେ ମୋହନବଂଶୀ ସଂପର୍କରେ ନିଜର ଭାବମୟ ଚିନ୍ତାଧାରା ବ୍ୟକ୍ତ କରିଛନ୍ତି । ତାଙ୍କର ଭାଷା ସରଳ, ସରସ, ସୁନ୍ଦର ଓ ରସାଳ । ତେଣୁ ସୁଧୀ ପାଠକମାନଙ୍କର ଏହା ହୃଦୟସ୍ପର୍ଶୀ ହେବ । ମାତ୍ର ପାଠକେ ଗ୍ରନ୍ଥ ପାଠ ଶେଷକଲା ପରେ ଉପନ୍ୟାସୀୟ ବକ୍ତବ୍ୟଧାରାଟିକୁ ଭୁଲିଯିବେ; – କେବଳ ମନେ ରଖିବେ ମହାନ୍ ପ୍ରେମମୟ ଲୀଳା ପୁରୁଷ ଭଗବାନ ଶ୍ରୀକୃଷ୍ଣଙ୍କୁ ଏବଂ ତାଙ୍କର ଦିବ୍ୟ ଲୀଳାକୁ ।

ସ୍ଥଳ ବିଶେଷରେ ସେ ବୈଷ୍ଣବୀୟ ତତ୍ତ୍ୱକୁ ଅବିକଳ ଭାବେ ଗୋଟିକ ପରେ ଗୋଟିକୁ ସଜାଇକରି ଉପସ୍ଥାପନ କରିଛନ୍ତି । ସେତିକିବେଳେ ପାଠକ ମନରେ ପ୍ରତିକ୍ରିୟା ସୃଷ୍ଟି ହେବ ଏହା ଗଦ୍ୟମୟ କାହାଣୀ ଗ୍ରନ୍ଥ ନା ତତ୍ତ୍ୱମୟ ଆଲୋଚନା ଗ୍ରନ୍ଥ । ଏକଥା ନିଶ୍ଚୟ ଯେ, ଲେଖକଙ୍କ ମନରେ ଏଭଳି ବ୍ୟାକୁଳତା ଆସିଚି, ବହୁ ବୈଷ୍ଣବ-ଗ୍ରନ୍ଥ ପାଠ କରିବା ଯୋଗୁଁ । ସେ ସବୁକିଛି କଥାକୁ ଏକତ୍ର ସମାବେଶ କରିବାର ଲୋଭ ସମ୍ବରଣ କରିପାରି ନାହାନ୍ତି । ତେବେ ଓଡ଼ିଆ ଭାଷାରେ ପୁରାଣ ପ୍ରସଙ୍ଗକୁ ଭିତ୍ତିକରି ରଚିତ ହୋଇଥିବା ଗଦ୍ୟଗ୍ରନ୍ଥ ମଧ୍ୟରେ 'ମୋହନ-ବଂଶୀ' ଏକ ଉଲ୍ଲେଖନୀୟ ସ୍ଥାନ ଗ୍ରହଣ କରିବ, ଏଥିରେ ଦ୍ୱିମତ ନାହିଁ । ବସ୍ତୁବାଦୀ ଜଗତରେ ମଣିଷ ଜୀବନ ଯେତେବେଳେ ଗଦ୍ୟମୟ ହୋଇ ଉଠିଚି, ଭଗବାନ କୃଷ୍ଣଙ୍କ ଜୀବନାଦର୍ଶ ଭିତ୍ତିକ ଗଦ୍ୟଗ୍ରନ୍ଥ ନିଶ୍ଚୟ ଆଦୃତ ହେବ- ସେ ବିଶ୍ୱାସ ମୋର ଅଛି ।

*ପୂର୍ବତନ ସଭାପତି, ଉତ୍କଳ ସାହିତ୍ୟ ସମାଜ, କଟକ*



# ମୋହନ ବଂଶୀ - ଏକ ଦୃଷ୍ଟିପାତ

ଡଃ ରେଖା ମହାନ୍ତି

କୃଷ୍ଣଚେତନା ଭାରତରେ ସୀମିତ ହୋଇ ରହିନାହିଁ – ଏହା ପାଶ୍ଚାତ୍ୟରେ ମଧ୍ୟ ସ୍ୱକୀୟ ମର୍ଯ୍ୟାଦାରେ ଅଭିଷିକ୍ତ । ରାଧାକୃଷ୍ଣଙ୍କର ପ୍ରେମ ଲୀଳାକୁ ଲୋକୋତ୍ତର ଇନ୍ଦ୍ରିୟୋତ୍ତର ବା ଆତ୍ମା ପରମାତ୍ମାର ମିଳନ ରୂପେ ବିଚାର କରାଯାଇଛି । ଏହା ଅପ୍ରାକୃତ ପ୍ରେମଲୀଳାର ଅନିର୍ବଚନୀୟ ରସ ମାଧୁର୍ଯ୍ୟ ଓ ଭାବ ସୌନ୍ଦର୍ଯ୍ୟରେ ବିମୂର୍ଚ୍ଛିତ । କିନ୍ତୁ ଏହି ରାଧାକୃଷ୍ଣ ଲୀଳା ମାଧୁର୍ଯ୍ୟର ଯୋଗସୂତ୍ରକାରୀ ହେଉଛି ମୋହନବଂଶୀର ମଧୁର ମୂର୍ଚ୍ଛନା – ଅମୃତ ନିସ୍ୟନ୍ଦିନୀ ଭାବ ମାଧୁର୍ଯ୍ୟ । ଏହି ନିଗୂଢ଼ ଭାବଗମ୍ଭୀର ତାତ୍ତ୍ୱିକ ବିଷୟକୁ ଡଃ. ଗୁରୁପ୍ରସାଦ ମହାନ୍ତି ଦୁଇ ବନ୍ଧୁଙ୍କର କଥୋପକଥନ ଛଳରେ ଯେପରି ସରଳ, ସହଜ, ସାଧାରଣ ବୋଧଗମ୍ୟ କରି ପ୍ରକାଶ କରିଛନ୍ତି, ତା' ଲେଖକଙ୍କ ଶିଳ୍ପ ଚାତୁର୍ଯ୍ୟର ଅନନ୍ୟ ନିଦର୍ଶନ ।

ଜିଜ୍ଞାସା, ଏକ ତାତ୍ତ୍ୱିକ ଜିଜ୍ଞାସା ସକଳ ସୌନ୍ଦର୍ଯ୍ୟର ଅର୍ଥାତ ଜ୍ଞାନର ମୂଳ ଉତ୍ସ । ବିଦେଶରେ ପ୍ରାକୃତିକ ମନୋରମ ପରିବେଶରେ ଦୁଇ ବନ୍ଧୁଙ୍କର ଆନ୍ତରିକ ଆଳାପରେ ଭାରତୀୟ ଆଧ୍ୟାତ୍ମ ଦର୍ଶନର ତତ୍ତ୍ୱଗର୍ଭିତ ବିଷୟର ଗୋଟିଏ ଗୋଟିଏ ପାଖୁଡ଼ା ଖୋଲି ଯେପରି ସର୍ବଜନବୋଧ ଭାବରେ ଓ ରସ ମାଧୁରୀରେ ମଣ୍ଡିତ କରି ପ୍ରକାଶ କରାଯାଇଛି, ତା ଏକ ଅଭିନବ ପରିକଳ୍ପନା । ଲେଖକ ରାଧାକୃଷ୍ଣ ଆଧାରିତ ବିଭିନ୍ନ କାବ୍ୟ, ପୁରାଣ, ବୈଷ୍ଣବ ଶାସ୍ତ୍ର ପ୍ରଭୃତିର ଗଭୀର ଅନୁଶୀଳନ କରି ବିଶ୍ୱଚରାଚରକୁ ବିହ୍ୱଳିତ କରି ତ୍ରିଭୁବନରେ ମାନସ ଆକର୍ଷଣ କରୁଥିବା ମୋହନବଂଶୀର ବିଭିନ୍ନ ସ୍ୱର ମୂର୍ଚ୍ଛନାର ଆକର୍ଷଣ ଶକ୍ତିକୁ କାବ୍ୟିକ ଭାଷାରେ ରସସିକ୍ତ କରି ଉପସ୍ଥାପନ କରିଛନ୍ତି । ମୋହନବଂଶୀର ହୃଦୟସ୍ପର୍ଶୀ ମୂର୍ଚ୍ଛନାରେ କେବଳ ରାଧା ଓ ଗୋପାଙ୍ଗନା ନୁହଁନ୍ତି – ମଣିଷଠାରୁ ହିଂସ୍ର ପଶୁ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରାଣରେ ସୃଷ୍ଟିକଲା ପ୍ରେମର ଆବେଗ ବିହ୍ୱଳିତ ମୂର୍ଚ୍ଛନା । ଆଜିର ଏଇ ହିଂସା, ଦ୍ୱେଷ, ଈର୍ଷାଜର୍ଜରିତ ଜୀବନରେ 'ମୋହନବଂଶୀ'ରେ ବର୍ଣ୍ଣିତ ବିଷୟ ପାଠକର ହୃଦୟକୁ ରସସିକ୍ତ କରେ, ଆନନ୍ଦ ଉଲ୍ଲାସରେ ହୃଦୟ ଭରିଯାଏ – ମନର ତିକ୍ତତା, ବିଷର୍ଣ୍ଣତା ଅପସରିଯାଏ । ପ୍ରେମ ଏକ ଆକର୍ଷଣକାରୀ ଶକ୍ତି । ଏହା ସମଗ୍ର ବିଶ୍ୱର ଜୀବ ଓ ଜଡ଼ଜଗତ ମଧ୍ୟରେ ବ୍ୟାପ୍ତ । ମଣିଷ ଭିତରୁ ଆସୁରିକ ଶକ୍ତିର ବିକାଶ ଓ ଦୈବୀ ଶକ୍ତିର

ବିକାଶରେ କୃଷ୍ଣଙ୍କର ମୋହନ ବଂଶୀର ଭୂମିକା ଥିଲା ଏକମାତ୍ର ମାଧ୍ୟମ । ଯାହା ପଶୁ ପକ୍ଷୀ, ବୃକ୍ଷ ଲତାକୁ ମଧ୍ୟ ଆନନ୍ଦର ବନ୍ୟାରେ ଭସାଇ ନେଉଥିଲା । ଅଭୂତପୂର୍ବ ଆକର୍ଷଣୀ ଶକ୍ତି !

ଯଶୋଦାଙ୍କ ସହିତ ରାଧାଙ୍କ ସାକ୍ଷାତରେ ମାତୃ ଅନ୍ତରର ଅନାବିଳ ବାତ୍ସଲ୍ୟ ମମତାର ଯେଉଁ ନିବିଡ଼ ରସଧାରା ଝରି ଯାଇଛି ତାର ପଟାନ୍ତର ନାହିଁ । ଭାଷା, ଭାବ, ଭଙ୍ଗୀର ଅକୃତ୍ରିମ ପ୍ରକାଶ ଶୈଳୀ ପାଠକକୁ ସମ୍ମୋହିତ କରେ । ପ୍ରତ୍ୟେକ ବିଷୟ ଅବତାରଣାରେ ପ୍ରକୃତିର ବର୍ଣ୍ଣନା ଅତ୍ୟନ୍ତ ଭାବୋଦ୍ଦୀପକ । ନୈସର୍ଗିକ ସୌନ୍ଦର୍ଯ୍ୟରେ ଭରା ମଥୁରା ଓ ବୃନ୍ଦାବନରେ ଛବିଳ ରୂପ ଐଶ୍ୱର୍ଯ୍ୟର ବର୍ଣ୍ଣନାରେ ଯେ ମୋହନବଂଶୀର କଳେବର ସୁଶୋଭିତ ତା ନୁହେଁ – ପାଶ୍ଚାତ୍ୟ ଦେଶର ପ୍ରାକୃତିକ ଛବିଳ ଦୃଶ୍ୟର ବର୍ଣ୍ଣନାରେ ଲେଖକଙ୍କ ପ୍ରକୃତି ପ୍ରେମୀ ଅନ୍ତରର ଉଜ୍ଜ୍ୱଳ ସ୍ୱାକ୍ଷର ନିହିତ । ପ୍ରେମ ଓ ପ୍ରକୃତି ଯେମିତି ଲେଖକଙ୍କ ହୃଦୟବୃତ୍ତିରେ ମିଳିମିଶି ଏକାକାର ହୋଇଯାଇଛି ।

'ମୋହନବଂଶୀ'ରେ ପ୍ରକୃତି ପ୍ରାଣତା ଓ ପ୍ରେମ ପ୍ରବଣତାର ସାତ୍ତ୍ୱିକ ସମନ୍ୱୟ ପାଠକକୁ ସମ୍ମୋହିତ କରେ । କୃଷ୍ଣଙ୍କର ରୂପ ବର୍ଣ୍ଣନା, ପ୍ରକୃତି ବର୍ଣ୍ଣନା ଓ ବଂଶୀର ମଧୁର ମୂର୍ଚ୍ଛନାର ଯାଦୁକରୀ ପ୍ରଭାବର ବର୍ଣ୍ଣନାରେ ଲେଖକଙ୍କ କବିତ୍ୱ ଚାତୁରୀ ଓ ଭାବମାଧୁରୀର ଅପୂର୍ବ ବିନ୍ୟାସ ସର୍ବଥା ଲକ୍ଷ୍ୟଣୀୟ । ଜଟିଳତା ବା ଶାସ୍ତ୍ରୀୟଦୁର୍ବୋଧତା ଆଦୌ ପରିଲକ୍ଷିତ ହୁଏ ନାହିଁ । ବରଂ ଆଜିର ଭୋଗବାଦୀ ମଣିଷ ମନରେ ସ୍ନେହ, ମମତା, ପ୍ରେମ ଓ ଭକ୍ତି ଓ ଈଶ୍ୱରଙ୍କ ପ୍ରତି ଅଖଣ୍ଡ ବିଶ୍ୱାସ ଜାଗରିତ ହୁଏ ସ୍ୱତଃସ୍ଫୂର୍ତ୍ତ ଭାବରେ । ମୋହନବଂଶୀର ଆଧାରରେ ରାଧାକୃଷ୍ଣଙ୍କ ମିଳନ ବିରହ ଓ ବୃନ୍ଦାବନରେ ପ୍ରେମଭକ୍ତି ଭାବ ପ୍ରସାରରେ ଚୈତନ୍ୟଙ୍କ ଭଜନ କୀର୍ତ୍ତନର ମହତ୍ୱ ବିଚାର୍ଯ୍ୟ । ଏହାର ପରିସମାପ୍ତି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ବିଦେଶୀ ବନ୍ଧୁ ରାଧାକୃଷ୍ଣଙ୍କ ପ୍ରେମ ଭାବରେ ତନ୍ମୟୀଭୂତ – ମୋହନବଂଶୀର ମଧୁର ମୂର୍ଚ୍ଛନାରେ ଶ୍ରୁତିଶୁଦ୍ଧ, ଭାବବିମୁଗ୍ଧ – ଲେଖକଙ୍କ ସୃଷ୍ଟି ହୋଇଛି ସଫଳ ସାର୍ଥକ । ନିଜ ଦେଶର ପରଂପରା ଧର୍ମସଂସ୍କୃତି, ସାହିତ୍ୟ ପ୍ରତି ଗଭୀର ଶ୍ରଦ୍ଧା, ସମ୍ମାନ, ସ୍ୱାଭିମାନ ନଥିଲେ 'ମୋହନ ବଂଶୀ'ର ସୃଷ୍ଟି ପରିକଳ୍ପନା ସମ୍ଭବ ହୋଇନଥାନ୍ତା । ସହୃଦୟ ପାଠକର ଅନ୍ତର ମୋହନବଂଶୀର ମଧୁର ଝଙ୍କାରରେ ଅନୁରଣିତ ହେଉ ।



# 'ମୋହନବଂଶୀ' ଓ ଗୁରୁପ୍ରସାଦ

ଇଂ. ପ୍ରଭାକର ସ୍ୱାଇଁ

ଶ୍ରୀକୃଷ୍ଣ ପରମ ଲୀଳାମୟ ପ୍ରେମ ପୁରୁଷ । ସେ ଆଦି-ଅନାଦି, ନିର୍ଗୁଣ-ସଗୁଣ, ସାକାର-ନିରାକାର ପୁଣି ରୂପ ଓ ରୂପାତୀତ । ସେ ମହାମହିମ ଯୋଗେଶ୍ୱର । ସତ୍-ଚିତ୍-ଆନନ୍ଦର ସେ ପରିପୂର୍ଣ୍ଣ ବିଗ୍ରହ । ସମଗ୍ର ଜଗତକୁ ଆକର୍ଷିତ କରିବାରେ ତାଙ୍କର ମୁଖ୍ୟ ଆୟୁଧ ହେଉଛି ବଂଶୀ । କୃଷ୍ଣ ଯେତେବେଳେ ବଂଶୀବାଦନ କରନ୍ତି ସେତେବେଳେ ସମଗ୍ର ବିଶ୍ୱ ତାଙ୍କରି ନିକଟକୁ ଆକର୍ଷିତ ହୋଇଯାଏ । ଯମୁନା ନଦୀରେ ଉଜାଣି ବହେ – ଏହାର ନୀଳ ଜଳରାଶି ଉଚ୍ଛୁଳି ଉଠେ – ପଶୁପକ୍ଷୀଙ୍କଠାରୁ ଆରମ୍ଭ କରି ସମଗ୍ର ଜୀବଜଗତ ଚକିତ ଓ ତଟସ୍ଥ ହୋଇ ଚାହିଁରହେ । ଜଳ-ସ୍ଥଳ-ଆକାଶ ସର୍ବତ୍ର ବଂଶୀର ଝଙ୍କାରରେ ନିନାଦିତ ଉଠେ । ବଂଶୀର ସୁମଧୁର ଧ୍ୱନିରେ ସମଗ୍ର ବୃନ୍ଦାବନ ଶିହରି ଉଠେ । ଅଦ୍ଭୁତ ସେ ବଂଶୀ ! ସ୍ୱର ତା'ର ମଧୁର । ଶକ୍ତି ତା'ର ଅସୀମ ଏବଂ ଆକର୍ଷଣ ତାର ଅପରିସୀମ । ଆମ ସାହିତ୍ୟର ଯଶସ୍ୱୀ ସ୍ରଷ୍ଟା ଭଗବତ୍‌ପ୍ରେମୀ ଡାକ୍ତର ଗୁରୁପ୍ରସାଦ ମହାନ୍ତି ଆଜକୁ ଦୀର୍ଘ ଚାଳିଶି ବର୍ଷ ତଳେ ସୁଦୂର ଆମେରିକାରେ ଉଚ୍ଚଶିକ୍ଷା ଲାଭ ଅବସରରେ ନିଜ ଦେଶ ଓ ଜାତିର ସଂସ୍କୃତିକୁ ଉପସ୍ଥାପନ କରିବାକୁ ଯାଇ ନିଜର ପ୍ରିୟ ବନ୍ଧୁ ଖ୍ରୀଷ୍ଟଧର୍ମାବଲମ୍ବୀ ଆମେରିକୀୟ ଯୁବକ ଲଏଡ୍ ନେଲ୍‌ସନ୍‌ଙ୍କ ସମ୍ମୁଖରେ ଭାରତୀୟ ପୁରାଣ ସାହିତ୍ୟର ମହାନାୟକ ଶ୍ରୀକୃଷ୍ଣ ଓ ତାଙ୍କ ବଂଶୀ ସମ୍ପର୍କରେ ଯେଉଁ ପରିଚୟ ଉପସ୍ଥାପନ କରିଥିଲେ ତାହାର ବାଣୀରୂପ ହେଉଛି ତାଙ୍କ ରଚିତ 'ମୋହନବଂଶୀ' ।

ଏହି ଭଗବତ୍‌ପ୍ରେମୀ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ ସ୍ରଷ୍ଟା ଡଃ. ଗୁରୁପ୍ରସାଦ ମହାନ୍ତିଙ୍କର 'ମୋହନବଂଶୀ' ଏକ ଭିନ୍ନ ରୁଚିର ସୃଷ୍ଟି । ବିଶିଷ୍ଟ ଭାରତୀୟ ଲେଖକ କେ.ଏମ୍. ମୁନ୍‌ସୀଙ୍କ 'ମୋହନବଂଶୀ' ରଚନା ପରେ ବୋଧହୁଏ ଉତ୍କଳୀୟ ଭାଷା, ସାହିତ୍ୟ ଓ ଭଗବତ୍‌ପ୍ରେମୀଙ୍କ ନିମିତ୍ତ ଡଃ. ମହାନ୍ତିଙ୍କର ଆମ ସାହିତ୍ୟରେ ରଚିତ ଏକ ଶ୍ରେଷ୍ଠ ରଚନା । ସଚ୍ଚିଦାନନ୍ଦ ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି ଲୀଳାପୁରୁଷ । ତାଙ୍କର ସବୁଠାରୁ ଶ୍ରେଷ୍ଠ ଓ ପ୍ରିୟ ବସ୍ତୁ ହେଉଛି ବଂଶୀ । ଏହାର ଆକର୍ଷଣ ଏତେ ଅଧିକ ଯେ, ବଂଶୀ ବାଦନରେ ପୃଥିବୀର ସମସ୍ତ ମାନବ ମୋହିତ ହୋଇଯାନ୍ତି, ନିଜକୁ ଓ ପରିବାରକୁ ଭୁଲି କୃଷ୍ଣ ପ୍ରେମରେ ପାଗଳ ହୁଅନ୍ତି । ସେହି ବଂଶୀ 'ମୋହନବଂଶୀ' ଭାବରେ ସର୍ବତ୍ର ପରିଚିତ । ''ଅଲୌକିକ ଏହି ପରମ ପୁରୁଷଙ୍କ ଲୀଳା । ଭାଦ୍ରବ କୃଷ୍ଣ ଅଷ୍ଟମୀ ତିଥିର ଘନ

ଅନ୍ଧକାର ତଥା ବର୍ଷାର ପ୍ରବଳ ତାଣ୍ଡବ ମଧ୍ୟରେ କଂସ ବନ୍ଦୀଶାଳା ଆଲୋକିତ କରି ସେ ଜନ୍ମ ହେବା ମୁହୂର୍ତ୍ତରୁ ଶିଆଳି ଲତାରେ ଶୋଇ ଜାରା ଶବର ଦ୍ୱାରା ଶରବିଦ୍ଧ ହେବା ପର୍ଯ୍ୟନ୍ତ ତାଙ୍କ ଜୀବନର ପ୍ରତିଟି ମୁହୂର୍ତ୍ତ ବିଭିନ୍ନ ଅଲୌକିକତାର ସ୍ୱାକ୍ଷର ବହନ କରେ ।''

ଗ୍ରନ୍ଥ ରଚନା କାଳରେ ସ୍ରଷ୍ଟା ତାଙ୍କର ୩୭ ବର୍ଷର ସୁଦୂର ଅତୀତକୁ ଅବଲୋକନ କରିଛନ୍ତି । ସେତେବେଳକୁ ସେ ଯୁକ୍ତରାଷ୍ଟ୍ର ଆମେରିକାର ଏକ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶ୍ରେଣୀର ଛାତ୍ର । ବହୁ ଅଣହିନ୍ଦୁ ମୁସଲମାନ, ଖ୍ରୀଷ୍ଟିଆନ ପ୍ରଭୃତି ଅନ୍ୟ ଧର୍ମାବଲମ୍ବୀ ଛାତ୍ରମାନେ ତାଙ୍କର ସହପାଠୀ । ତାଙ୍କର ଏହିପରି ଜଣେ ବନ୍ଧୁ ଲଏଡ୍ ନେଲ୍‌ସନ୍ । ସେ ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟର ଜଣେ ସ୍ନାତକୋତ୍ତର ଛାତ୍ର । ସେଠାରେ ଜୀବ ରସାୟନ ବିଭାଗରେ ଉଭୟ ଅଧ୍ୟୟନ କରୁଥିଲେ । ନେଲ୍‌ସନ୍ ଥିଲେ ଖ୍ରୀଷ୍ଟିଆନ । ପ୍ରଭୁ ଯୀଶୁ ତାଙ୍କର ଶ୍ରେଷ୍ଠ ଦେବତା । ଗ୍ରନ୍ଥ ଆରମ୍ଭରେ ସ୍ରଷ୍ଟା ଆମେରିକାରେ ସେତେବେଳେ ରହୁଥିବା ସେହି ଅତୀତକୁ ଫେରିଛନ୍ତି । ବନ୍ଧୁ ନେଲ୍‌ସନ୍ ଜିଜ୍ଞାସୁ ଦୃଷ୍ଟିଭଙ୍ଗୀ ନେଇ ଆମ ଭାରତୀୟ ଧର୍ମ, ଦେବତାଙ୍କ ସମ୍ପର୍କରେ ପ୍ରଶ୍ନ କରିଛନ୍ତି । ସ୍ରଷ୍ଟା ଡଃ. ମହାନ୍ତି କୌଣସି ଧର୍ମ ମଧ୍ୟରେ କିଛି ଭେଦଭାବ ନରଖି ଆମ ଜାତିର ପିତା ମହାତ୍ମାଗାନ୍ଧିଙ୍କ ପ୍ରିୟ ଭଜନ ଈଶ୍ୱର ଆଲ୍ଲା.....ମାଧ୍ୟମରେ କୃଷ୍ଣଙ୍କ ସମ୍ପର୍କରେ ଯାହା ଉଲ୍ଲେଖ କରିଛନ୍ତି, ତାହା ହେଉଛି ତାଙ୍କର ସର୍ବଶ୍ରେଷ୍ଠ ରଚନା 'ମୋହନବଂଶୀ' (୨୦୦୪) ।

ଆମେରିକାରେ ଅବସ୍ଥାନ କାଳରେ କୃଷ୍ଣଙ୍କ ସମ୍ପର୍କରେ ସ୍ରଷ୍ଟା ସବୁ କଥା ଭୁଲି ଭାଲି ଆସୁଥିବା ବେଳେ ଜିଜ୍ଞାସୁ ଦୃଷ୍ଟିଭଙ୍ଗୀ ନେଇ ଲଏଡ୍ ନେଲ୍‌ସନ୍‌ଙ୍କ ଜିଜ୍ଞାସୁ ଦୃଷ୍ଟି ମଧ୍ୟରେ ଅତୀତ ଭାରତୀୟ ପୁରାଣର ପରମ୍ପରା ଓ ସଂସ୍କୃତି ଡଃ. ମହାନ୍ତିଙ୍କର ମନମଧ୍ୟରେ ପୁନର୍ଜାଗ୍ରତ ହୋଇ ଦଣ୍ଡାୟମାନ ହୋଇଥିଲା । ମନେ ପଡ଼ିଥିଲା ତାଙ୍କର ପିଲାଦିନ । ସୁଦୂର ଉତ୍କଳୀୟ ଗ୍ରାମ୍ୟ ପରିବେଶ ମଧ୍ୟରେ ନଡ଼ିଆ, ପଣସ, କଦଳୀ, ବର, ଅଶ୍ୱତ୍ଥ, ଚାକୁଣ୍ଡା, ବାଉଁଶ, ତାଳ, ତମାଳ ଘେରି ସେହି ଅଖ୍ୟାତ ପଲ୍ଲୀ ଗାଆଁର ପଶ୍ଚିମ ମୁଣ୍ଡରେ ଠାକୁର ଘର । ମାଟି କାନ୍ଥ ଉପରେ ଚାଳ ଛପର ହୋଇଥିବା ଧୂଳିଘଟିଆ ତିନିବଖରା ଦାଣ୍ଡି ଘରଟା । ପ୍ରଥମ ବଖରାଟା ବାଘମୁହିଁ । ସେହି ଘର ମଝିରେ ଗୋଲ ହୋଇ କୁନ୍ଦା ହୋଇଥିବା ଲମ୍ବା ପଥରଟା ଉପରେ ହାତଯୋଡ଼ି ବସିଥାନ୍ତି ଗରୁଡ଼ । ଠାକୁରଙ୍କ ବାହନ ସିଏ । ପୂଝାରୀ କୁହନ୍ତି, ସଞ୍ଜ ଆଳତି ପରେ ନୀତି ସରିଗଲେ ତାଙ୍କରି କାନ୍ଧରେ ବସି ଗୋପାଳଜୀଉ ଚାଲି ଯାଆନ୍ତି ବୃନ୍ଦାବନକୁ । ସେହି ଗୋପାଳରୂପୀ କୃଷ୍ଣଙ୍କୁ ପୂଜାର୍ଚ୍ଚନା କରୁଥିବା ପୂଝାରୀ କହେ – ''ଏ ଯେଉଁ ବଇଁଶୀ ଖଣ୍ଡକ ତା'ର କ'ଣ କମ୍ ସମ୍ମୋହିନୀ ଶକ୍ତି ! ସେଇ ଶକ୍ତି ବଳରେ ସମସ୍ତେ ତା ପାଖକୁ ଟାଣି ହୋଇ ଯାଆନ୍ତି । ଯାହା କାନରେ ସେ ବଂଶୀ ସ୍ୱନ ପଡ଼ିବ, ସେ ଆଉ ଅନ୍ୟ ଆଡ଼େ ଢଳି ପାରିବ ନାହିଁ । ଏଇ ଠାକୁରଙ୍କ ପାଖକୁ ସେ ନିଶ୍ଚେ ଟାଣି ହୋଇ ଆସିବ ।''

ଖ୍ରୀଷ୍ଟଧର୍ମାବଲମ୍ବୀ ନେଲ୍‌ସନ୍ ସ୍ରଷ୍ଟା ଡଃ. ମହାନ୍ତିଙ୍କୁ ପ୍ରଶ୍ନ ପରେ ପ୍ରଶ୍ନ ପଚାରିଛନ୍ତି । ଡଃ. ମହାନ୍ତି ତାଙ୍କ ସମ୍ମୁଖରେ କୃଷ୍ଣ ଚରିତ ସଂପର୍କିତ କାହାଣୀ ପେଡ଼ି ଖୋଲି ଦେଇଛନ୍ତି । ସେ ଉଲ୍ଲେଖ କରିଛନ୍ତି ଯେତେବେଳେ ପୃଥିବୀରେ କଂସ, କେଶୀ, ଜରାସନ୍ଧ, ଦନ୍ତବକ୍ର ଶିଶୁପାଳ ଆଦି ଦୁଷ୍ଟ ରାକ୍ଷସ ପ୍ରକୃତିର ଲୋକମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା, ସେତେବେଳେ ପୃଥିବୀମାତା ସେମାନଙ୍କର ଭାର। ସମ୍ଭାଳି ପାରିଲେ ନାହିଁ । ସେ ଗୋମାତା ରୂପରେ ଯାଇ ଦେବତାମାନଙ୍କୁ ଗୁହାରୀ କଲେ । X X X X କ୍ଷୀର ସମୁଦ୍ରଶାୟୀ ବିଷ୍ଣୁ ଦେବତାଙ୍କୁ ଆଶ୍ୱାସନା ଦେଇ କହିଲେ, ''ତୁମେ ଆଉ ଦୁଃଖ କରନା । ମୁଁ କୃଷ୍ଣ ରୂପରେ ପୃଥିବୀରେ ଅବତୀର୍ଣ୍ଣ ହୋଇ ଦୁଷ୍ଟମାନଙ୍କୁ ସଂହାର କରିବି ।'' ସେଥିପାଇଁ କୃଷ୍ଣ ବଂଶୀ ଧାରଣ କରିଥିଲେ । ବଂଶୀର ଧ୍ୱନିରେ ଜଗତକୁ ବଶୀଭୂତ କରିଥିଲେ । ସମଗ୍ର ଜଗତର ପ୍ରାଣୀମାନଙ୍କ ହୃଦୟରେ ସ୍ନେହ, ପ୍ରେମ ଓ ପ୍ରଶାନ୍ତି ଭାବ ସୃଷ୍ଟି କରିଥିଲା ଏହି ବଂଶୀ ।

କୃଷ୍ଣଙ୍କ ସମ୍ପର୍କରେ ଏତେସବୁ କଥା ଜାଣିବା ପରେ ପୁଣି ଜିଜ୍ଞାସୁ ଦୃଷ୍ଟି ନେଇ ଲଏଡ୍ କୃଷ୍ଣ ପ୍ରେମର ସ୍ୱରୂପ ଓ ତାଙ୍କ ଶକ୍ତିର ମୂଳ ଉତ୍ସ ଶ୍ରୀରାଧାଙ୍କ ବିଷୟରେ ପ୍ରଶ୍ନ କରିଛନ୍ତି – କିଏ ସେ ରାଧା ? କୃଷ୍ଣଙ୍କ ସହିତ ତାଙ୍କର ସଂପର୍କ କ'ଣ ? ଡଃ.ମହାନ୍ତି ବନ୍ଧୁ ଲଏଡ୍‌ଙ୍କ ପ୍ରଶ୍ନର ଉତ୍ତରରେ କହନ୍ତି – ''କୃଷ୍ଣଙ୍କର ସମବୟସ୍କା ଝିଅଟିଏ ରାଧା, ଅପରୂପା ସୁନ୍ଦରୀ ସେ । ଆଉଟା ସୁନାପରି ରଙ୍ଗ । ହସିଦେଲେ ସେ ହସରୁ ମୁକ୍ତା ଝରି ପଡ଼ିବା ପରି ମନେହୁଏ । କୋକିଳ ପରି କଣ୍ଠ । ଅତି କୋମଳ ମଧୁମୟ କଥା, କଥା ଛଳରେ ଯେମିତି କଣ୍ଠରୁ ତା'ର ଅମୃତ ଝରିଆସେ । କୃଷ୍ଣଙ୍କ ପ୍ରତି ପ୍ରେମ ଓ ଭକ୍ତିରେ ଉବୁଟୁବୁ ସେ । ଶୟନେ, ସ୍ୱପନେ, ଜାଗରଣେ ସଦାସର୍ବଦା କୃଷ୍ଣଚିନ୍ତା । ସେ ଥିଲେ କୃଷ୍ଣ ଭକ୍ତିର ମୂର୍ତ୍ତିମନ୍ତ ପ୍ରତୀକ । ଗୋପପୁରର ସମସ୍ତ କୃଷ୍ଣପ୍ରେମୀ ଲଳନାମାନଙ୍କ ମଧ୍ୟରେ ରାଧା ଥିଲେ ସର୍ବଶ୍ରେଷ୍ଠ । ସ୍ମରଣ, କୀର୍ତ୍ତନ, ଶ୍ରବଣ, ଅର୍ଚ୍ଚନ, ବନ୍ଦନ, ସଖ୍ୟ, ଦାସ୍ୟ, ପଦସେବନ ଓ ଆତ୍ମନିବେଦନ ଆଦି ନବଧା ଭକ୍ତି ତାଙ୍କରିଠାରେ ପ୍ରକାଶମାନ ହେଉଥିଲା । ତେଣୁ କୃଷ୍ଣ ତାଙ୍କୁ ପ୍ରାଣଭରି ଭଲ ପାଉଥିଲେ ।

ମାତ୍ର ଏତିକିରେ ଲଏଡ୍‌ଙ୍କର ପ୍ରଶ୍ନ ବନ୍ଦ ହେଲା ନାହିଁ । ଭାରତୀୟ ସାହିତ୍ୟ, ସଂସ୍କୃତି, ପୁରାଣ ପୁଣି ରାଧାକୃଷ୍ଣ ପ୍ରଭୃତି ଚରିତ୍ର ସମ୍ପର୍କରେ ଅଧିକ ଜାଣିବା ପାଇଁ ତାଙ୍କର ଆହୁରି ଅଧିକ ଜିଜ୍ଞାସୁ ମନୋଭାବ ସୃଷ୍ଟି ହେଲା । ଡଃ. ମହାନ୍ତିଙ୍କୁ ସେ ପୁଣି ପଚାରିଲେ – ''ତୁମ କଥାରେ ମୋର ସନ୍ଦେହ ମୋଚନ ହେଲାନାହିଁ । ବରଂ ଆହୁରି ଅନେକ ପ୍ରଶ୍ନ ମନରେ ଆସୁଛି । ରାଧା ଯଦି ସ୍ୱୟଂ ଭଗବାନଙ୍କର ଅଂଶ ବିଶେଷ, ତାହାହେଲେ ସେ କୃଷ୍ଣଙ୍କଠାରୁ ଅଲଗା ହୋଇ ରହିଲେ କାହିଁକି ? ରାଧାଙ୍କ ଉପସ୍ଥିତିରେ ଶହ ଶହ ଗୋପାଙ୍ଗନାଙ୍କ ସହିତ କୃଷ୍ଣଙ୍କର ପ୍ରେମ ସମ୍ପର୍କ ରହିଲା କାହିଁକି ? ଯଦିବା ଗୋପାଙ୍ଗନାମାନଙ୍କୁ କୃଷ୍ଣ ଏତେ ଭଲ ପାଉଥିଲେ, ତାହାହେଲେ ସେ ବିବାହ କଲେ କାହିଁକି ? ପୁଣି ପ୍ରେମଧର୍ମ ପ୍ରସାର ଦିଗରେ ବଂଶୀର ପ୍ରାଧାନ୍ୟ କାହିଁକି ରହିଲା ?''

ବନ୍ଧୁ ଲଏଡ୍ ପୁଣି ପଚାରନ୍ତି –''ତୁମେ ଯେଉଁ ବାଉଁଶ ବଂଶୀ କଥା କହୁଥିଲ, ଏଇଟା ସେଇ ବାଦ୍ୟଯନ୍ତ୍ର ନା ଆଉ କଅଣ ?'' ଉତ୍ତରରେ ଡଃ. ମହାନ୍ତି କୃଷ୍ଣଙ୍କର ସେହି ମୋହନବଂଶୀର ମାହାତ୍ମ୍ୟ ବର୍ଣ୍ଣନା କରନ୍ତି । ସେହି ବଂଶୀର ନାମ ମୋହନବଂଶୀ, ଯାହାକି ସମଗ୍ର ବିଶ୍ୱକୁ ସମ୍ମୋହିତ କରିପାରେ । ଏହି ମୋହନବଂଶୀକୁ କେହି ସାଧାରଣ ମଣିଷ ତିଆରି କରିନାହିଁ । ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମା ଏହାକୁ ଭଗବାନ କୃଷ୍ଣଙ୍କୁ ପ୍ରଦାନ କରିଥିଲେ । ପୁଣି ବଂଶୀଟି ଶିବକଳାରୁ ସମ୍ଭୂତ । ଶିବ ହେଉଛନ୍ତି ମହାକାଳ । ସମଗ୍ର ସୃଷ୍ଟିକୁ ଧ୍ୱଂସ କରିବାର ଶକ୍ତି କେବଳ ତାଙ୍କର ଅଛି । ରାମ ଅବତାରରେ ତାଙ୍କ ସହିତ ମିଳନ ଆକାଙ୍କ୍ଷା ଯୋଗୁଁ ମହାକାଳଙ୍କ ଶକ୍ତି ସମ୍ଭୁତ ବଂଶୀ କୃଷ୍ଣଙ୍କର ନିବିଡ଼ ଆଶ୍ଳେଷ ଓ ମଧୁର ଚୁମ୍ବନ ପାଇବାର ସୌଭାଗ୍ୟ ଲାଭ କରିଥିଲେ । ବୃନ୍ଦାବନ ଲୀଳାରେ ଚିନ୍ମୟ ଚିରସୁନ୍ଦର ବାଳକୃଷ୍ଣଙ୍କ ହାତରେ କେବଳ ବଂଶୀ ହିଁ ଶୋଭା ପାଉଥିଲା ।

ଲଏଡ୍ ଜଣେ ଆମେରିକୀୟ ଖ୍ରୀଷ୍ଟିଆନ ଯୁବକ ହୋଇଥିବାରୁ ଓ କୃଷ୍ଣଙ୍କ ସମ୍ପର୍କରେ ତାଙ୍କର ସୀମିତ ଜ୍ଞାନ ଥିବାରୁ ସେ କୃଷ୍ଣଙ୍କର ପୂର୍ଣ୍ଣତମ ଲୀଳା ବିଷୟରେ ଗ୍ରନ୍ଥ ସ୍ରଷ୍ଟା ଶ୍ରୀଯୁକ୍ତ ମହାନ୍ତିଙ୍କୁ ନାନା ପ୍ରଶ୍ନ କରିଛନ୍ତି । ଉତ୍ତରରେ ସ୍ରଷ୍ଟା କହିଛନ୍ତି –''କୃଷ୍ଣ ରୂପେ ସ୍ୱୟଂ ଭଗବାନ ମାନବ ଦେହ ଧରି ପୃଥିବୀରେ ଅବତାର ଗ୍ରହଣ କରିବା ପରେ ଗୋପପୁରୀରେ ବାଲ୍ୟ ଓ କୈଶୋର ଲୀଳା କଲେ । ମଥୁରାରେ ଆଦ୍ୟ ଯୌବନର ଲୀଳା ପ୍ରଦର୍ଶନ କରିବା ପରେ ଦ୍ୱାରକାରେ ଗାର୍ହସ୍ଥ୍ୟ ଲୀଳା କଲେ । ଯେଉଁ ଉଦ୍ଦେଶ୍ୟ ସାଧନ କରିବାକୁ ଭଗବାନ ଶ୍ରୀକୃଷ୍ଣଙ୍କ ଅବତାର ହେଲା, ତାର ମୁଖ୍ୟାଂଶ ଗୋପପୁରୀରେ ହିଁ ସମାହିତ ହୋଇଥିଲା । ତେଣୁ ଗୋପଲୀଳାକୁ 'ପୂର୍ଣ୍ଣତମ ଲୀଳା' କୁହାଯାଏ । ମଥୁରା ଲୀଳା- ପୂର୍ଣ୍ଣତର ଲୀଳା ଓ ଦ୍ୱାରକାଲୀଳା – ପୂର୍ଣ୍ଣଲୀଳା ଭାବରେ ସ୍ୱୀକୃତ ହୋଇଛି ।

ଏହାପରେ ସ୍ରଷ୍ଟା ଗ୍ରନ୍ଥର ବିଭିନ୍ନ ଋତୁ ବର୍ଣ୍ଣନା ମଧ୍ୟରେ ଯମୁନାକୂଳ, କଦମ୍ବମୂଳ, ପୂର୍ଣ୍ଣଚନ୍ଦ୍ର ସହିତ ଶାରଦୀୟ ରଜନୀର ପ୍ରଶାନ୍ତ ପରିବେଶକୁ ଅତ୍ୟନ୍ତ ଚମତ୍କାର ଭାବରେ ବ୍ୟକ୍ତ କରିଛନ୍ତି । ଗୋପନଗରୀରେ ଇନ୍ଦ୍ରଜାଲର ମାୟା ସହିତ ସମଗ୍ର ଗୋପପୁରକୁ ଅଥୟ କରୁଥିବା ବଂଶୀ ଡଃ. ମହାନ୍ତିଙ୍କ ଲେଖନୀରେ ପୁନର୍ଜୀବନ ଲାଭ କରି ପାଠକ ସମ୍ମୁଖରେ ଉଭା ହୋଇଛି । ଆଲୋଚ୍ୟ ଗ୍ରନ୍ଥରେ ରାଧାକୃଷ୍ଣ ଗୋପାଙ୍ଗନାଙ୍କ ସହିତ ଲଳିତା, ବିଶାଖା ପ୍ରଭୃତି ଅଷ୍ଟସଖୀଙ୍କ ପ୍ରସଙ୍ଗ ପରବର୍ତ୍ତୀ ଅଧ୍ୟାୟରେ ସ୍ରଷ୍ଟା ଆଲୋଚନା କରିଛନ୍ତି ।

ଗୋପପୁରରେ ଏକ ଶୋକାକୁଳ ପରିବେଶ ସୃଷ୍ଟି ହୋଇଛି । ଯେତେବେଳେ ମାମୁଁ କଂସର ନିମନ୍ତ୍ରଣ ରକ୍ଷା କରି ମଥୁରାନଗରୀରେ ହେଉଥିବା ଧନୁଯାତରେ ଯୋଗ ଦେବାକୁ ଅକ୍ରୁର ରଥରେ କୃଷ୍ଣ ଓ ବଳରାମ ବସିବାକୁ ଯାଇଛନ୍ତି । ଏହି ଅବସରରେ ଆଲୋଚ୍ୟ ଗ୍ରନ୍ଥରେ ଡଃ. ମହାନ୍ତିଙ୍କର ବର୍ଣ୍ଣନା ଖୁବ୍ ଚମତ୍କାର ଓ ମର୍ମସ୍ପର୍ଶୀ ମନେହୋଇଛି । ''ନନ୍ଦଗୃହ

ସମ୍ମୁଖରେ ରଖାଯାଇଥିବା ଅକ୍ରୁରଙ୍କ ରଥରେ ବସିବାକୁ ଯାଉଥିଲେ କୃଷ୍ଣ ବଳରାମ ଦୁଇଭାଇ । ଗୋପଦାଣ୍ଡରେ ହଜାର ହଜାର ଲୋକଙ୍କର ସମାବେଶ । ଯୁବକ ଯୁବତୀ କିଶୋର କିଶୋରୀ, ଶିଶୁ , ପ୍ରୌଢ଼ପ୍ରୌଢ଼ା, ବୃଦ୍ଧବୃଦ୍ଧା ସଭିଏଁ ନନ୍ଦରାଜାଙ୍କ ଦୁଇପୁଅଙ୍କୁ ବିଦାୟ ଦେବାକୁ ରୁଣ୍ଡ । ସବୁରି ଆଖିରେ ଧାର ଧାର ଅଶ୍ରୁ । ସେ ଅଶ୍ରୁର ପ୍ଳାବନରେ ଗୋପଦାଣ୍ଡ ଭିଜିଯାଉଥାଏ ।

x x x ଶୋକୋଚ୍ଛ୍ୱାସ ଭରା ବିକଳ କଣ୍ଠରେ ସଭିଏଁ ପ୍ରାର୍ଥନା କରୁଛନ୍ତି, ଯାଆନାରେ କାହ୍ନୁ, ଯାଆନା ମଥୁରାକୁ । ଜାଣୁ ଜାଣୁ ଆମେ ତୋତେ କ୍ରୁର କଂସାସୁର ହାତରେ ସମର୍ପି ଦେଇ ପାରିବୁନି ।''

ଏହାପରେ ଗ୍ରନ୍ଥରେ ଗୋପପୁରରେ କୃଷ୍ଣଙ୍କ ଅବର୍ତ୍ତମାନରେ ରାଧିକାଙ୍କ ସମେତ ସମଗ୍ର ଗୋପପୁର ତ୍ରସ୍ତ ହୋଇଯିବା ଘଟଣା ସହିତ ଅତ୍ୟାଚାରୀ କଂସର ମୃତ୍ୟୁ, ବନ୍ଦୀଶାଳାରେ ବସୁଦେବ ଓ ଦେବକୀଙ୍କର ମୁକ୍ତି ପ୍ରଭୃତି ବିଭିନ୍ନ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି । ମୋଟ ଉପରେ ଭଗବାନ ଶ୍ରୀକୃଷ୍ଣଙ୍କର ଧରାବତରଣଠାରୁ ବୈକୁଣ୍ଠ ପଦବୀ ଆରୋହଣ ପର୍ଯ୍ୟନ୍ତ ସମସ୍ତ ଲୀଳାକୁ ଗ୍ରନ୍ଥମଧ୍ୟରେ ଗ୍ରନ୍ଥ ସ୍ରଷ୍ଟା ସର୍ବମୋଟ ଅଷ୍ଟତ୍ରିଂଶ ଅଧ୍ୟାୟରେ ବର୍ଣ୍ଣନା କରିଛନ୍ତି । ଗୋପଲୀଳାଠାରୁ ଆରମ୍ଭ କରି ବୃନ୍ଦାବନ ଲୀଳା ପର୍ଯ୍ୟନ୍ତ ରାଧା ଓ ଗୋପାଙ୍ଗନାମାନଙ୍କର କୃଷ୍ଣଙ୍କ ସହିତ ସମ୍ପର୍କ ଏବଂ ଏହି ସମ୍ପର୍କ ମଧ୍ୟରେ ମୋହନ ବଂଶୀର ମାଧୁର୍ଯ୍ୟ ଏବଂ ଆକର୍ଷଣରେ ଗ୍ରନ୍ଥଟିର ପ୍ରତ୍ୟେକ ପୃଷ୍ଠା ରସସିକ୍ତ ଓ ପ୍ରାଣବନ୍ତ ହୋଇଛି । ଆମେରିକୀୟ ବନ୍ଧୁ ଲଏଡ୍‌ଙ୍କୁ କୃଷ୍ଣଙ୍କ ସମ୍ପର୍କରେ ଧାରଣା ଦେବାକୁ ଯାଇ ସ୍ରଷ୍ଟା ଦୀର୍ଘ ୩୭ ବର୍ଷର ସୁଦୂର ଅତୀତକୁ ଫେରି ଚାହିଁବାର ଯେଉଁ ସାଧୁ ଉଦ୍ୟମ କରିଛନ୍ତି, ତାହାର ଫଳଶ୍ରୁତି ହେଉଛି ଆଲୋଚ୍ୟ 'ମୋହନବଂଶୀ' ଗ୍ରନ୍ଥ ।

ଆମ ସାହିତ୍ୟରେ ମୌଳିକ ଭାବରେ ଏପରି ଏକ ଗ୍ରନ୍ଥର ଅଭାବ ପରିଲକ୍ଷିତ ହୋଇଥିଲା ବେଳେ ପ୍ରଥମ କରି ଡଃ. ମହାନ୍ତି ଏହି ଅଭାବ ପୂରଣ କରିଛନ୍ତି ତାଙ୍କ ରଚିତ 'ମୋହନବଂଶୀ' (୨୦୦୪) ଗ୍ରନ୍ଥ ମଧ୍ୟରେ । ଡିମେଇ ୧/୮ ସାଇଜର ୧୬୧ ପୃଷ୍ଠାର ଏହି ସୃଷ୍ଟିକୁ କଟକ ଲେଖକ ସହଯୋଗ ସମିତି ଲିଃ. ଅତ୍ୟନ୍ତ ନିର୍ଭୁଲ ଭାବରେ ପ୍ରକାଶ କରିଛନ୍ତି । ଆମ ସମାଜରେ ସଂପ୍ରତି ସାଂସ୍କୃତିକ ଅବକ୍ଷୟ କାଳରେ ଡ଼ଃ. ମହାନ୍ତିଙ୍କର ଆଲୋଚ୍ୟ 'ମୋହନବଂଶୀ' ଗ୍ରନ୍ଥଟି ଉତ୍କଳୀୟ ଜନତାଙ୍କ ନିମିତ୍ତ ଏହାର ଜାଗରଣ କ୍ଷେତ୍ରରେ ଦିଗବାରେଣୀର ଭୂମିକା ଯେ ଗ୍ରହଣ କରିବ – ଏଥିରେ ସନ୍ଦେହ ନାହିଁ ।

*ସଂପାଦକ, ସାରଳା ସାହିତ୍ୟ ସଂସଦ,*
*ମହାନଦୀ ବିହାର, କଟକ – ୪*



# ଗୁରୁପ୍ରସାଦ – ଗଳ୍ପ : ଦୀପ୍ତି ଓ ଦ୍ୟୁତି

ପ୍ରଫେସର ଡଃ ବୈଷ୍ଣବ ଚରଣ ସାମଲ

'ସତ୍ୟତା ବିନା କୌଣସି ଗଳ୍ପ ମନଛୁଆଁ ହୋଇପାରେନା । ଦୈନନ୍ଦିନ ଜୀବନରେ ଯାହାସବୁ ଘଟିଯାଉଛି ତନ୍ମଧ୍ୟରୁ କେତୋଟି ମାତ୍ର ଘଟଣା ଗଳ୍ପ ଆକାରରେ ପ୍ରକାଶିତ ହୋଇଥାଏ । ତେବେ ଗଳ୍ପଟିର ଘଟଣାବିନ୍ୟାସକୁ ଚିତ୍ର ବିଚିତ୍ର କରିବା ଲେଖକର ରୁଚି ଓ ଶୈଳୀ ଉପରେ ନିର୍ଭର କରେ । (୧) ଗଳ୍ପ ନାୟକଙ୍କୁ ସଂଗ୍ରାମ ବାବୁଙ୍କ ପ୍ରଶ୍ନ-ଗଳ୍ପରେ କ'ଣ କିଛି ସତ୍ୟର ଭୂମିକା ଥାଏ, ଉତ୍ତରରେ 'ଶିକାର' ଗଳ୍ପ ଆରମ୍ଭରେ ସେ ଯାହା କହିଛନ୍ତି ତାହାହିଁ ସ୍ୱୟଂ ଗାଳ୍ପିକଙ୍କ ଗଳ୍ପ ରଚନା ସଂପର୍କିତ ଅଭିମତ । ଗଳ୍ପ ନିଛକ କଳ୍ପନାର ଫୁଲବନ ନୁହେଁ, କଳ୍ପନା ଓ ବାସ୍ତବ ଅନୁଭୂତିର ମିଶ୍ରରାଗ । ଜୀବନ ଏକ ଦୀର୍ଘ ବନ୍ଧୁର ପଥ । ସେହି ପଥରେ ନିତ୍ୟ ନିୟତ ଘଟିଯାଉଛି କେତେ ଘଟଣା । ସବୁ ଘଟଣା ହୃଦୟ ଓ ମନରେ ରେଖାପାତ କରେନାହିଁ । ଯେଉଁ ବିଶେଷ ବିଶେଷ ଘଟଣା ହୃଦୟକୁ ବିଦ୍ଧକରେ ସେହି ଘଟଣା ଗଳ୍ପରେ ରୂପନିଏ । ସେଥିରେ ସତ୍ୟତା ଥାଏ ଓ ସେହି ସତ୍ୟ ଅନେକଙ୍କ ଜୀବନରେ ହୁଏତ ଅନୁଭୂତ ହୋଇଥାଇପାରେ । କଥାକାର ଯେତେବେଳେ ସେହି ଅନୁଭୂତ ସତ୍ୟକୁ ଗଳ୍ପରେ ରୂପ ଦିଏ ସେତେବେଳେ ତାର ରୁଚି ମୁଖ୍ୟ ଭାବରେ କାର୍ଯ୍ୟ କରେ । ସେହି ରୁଚିକୁ ଅନୁସରଣ କରି ଶୈଳୀଟିଏ ପ୍ରକାଶ ପାଇଯାଏ । ଶୈଳୀର ଚମତ୍କାରିତା ପାଠକଙ୍କୁ ଅନୁପ୍ରେରିତ କରେ ଗଳ୍ପଟିକୁ ପାଠ କରିବା ପାଇଁ । ପାଠକ ଯେତିକି ଯେତିକି ଗଳ୍ପର ଅନ୍ତଃସତ୍ତା ସହିତ ନିଜକୁ ମିଶାଇ ଦିଏ ସେତିକି ସେତିକି ଗଳ୍ପର ଦିଗନ୍ତ ଉଦ୍‌ଭାସିତ ହୋଇଯାଏ । ଏହି ଉଦ୍‌ଭାସ ଗୁଣହିଁ ହୋଇଯାଏ ଗଳ୍ପର ବୈଶିଷ୍ଟ୍ୟ । ଯେଉଁଠି ଗାଳ୍ପିକ ବିଶ୍ୱର ବିରାଟ କାନ୍‌ଭାସ୍‌ର କୌଣସି ଏକ ବିନ୍ଦୁରେ ଛିଡ଼ା ହୋଇ ଆପଣାର ବ୍ୟକ୍ତି-ବିଶ୍ୱ ଭିତରେ ବିଶ୍ୱ-ବ୍ୟକ୍ତିକୁ ଦେଖେ ଓ ତା'ର ସୃଜନ ସତ୍ତା ସମ୍ବେଦନଶୀଳ ହୋଇଯାଏ, ସେଇଠି ତା' ଭିତରେ ଯେଉଁ ଉତ୍କଣ୍ଠା ଓ ଜିଜ୍ଞାସା ପ୍ରକାଶ ପାଏ ତାହାହିଁ ଗଳ୍ପ-ରୂପ ନେଇଥାଏ । କଥାକାରଙ୍କ ମନର ମଧୁ ମିଶି ଗଳ୍ପକୁ ସୁନ୍ଦର, ମଧୁର ଓ ପ୍ରଭାବଶାଳୀ କରିଦିଏ । ଯେତିକି ଯେତିକି ଏ ଏକ ମଣିଷମାନଙ୍କ ସଂପର୍କରେ ଆସେ

---

୧. ବିଧ୍ୱସ୍ତ କଳିକା - ଶିକାର, ବିଦ୍ୟାପୁରୀ, ବାଲୁବଜାର, କଟକ (୧୯୯୬) ପୃ. ୨୧

ଯେତିକି ସେତିକି ସେ ଉନ୍ମୁକ୍ତ କରିଦିଏ ତାର ହୃଦୟ-ବାତାୟନ । ଫଳରେ କ୍ଷୁଦ୍ରତା ଓ ସଂକୀର୍ଣ୍ଣତାରୁ ସେ ମୁକ୍ତ ହୋଇ ମଣିଷ ପ୍ରତି ତାର ସହାନୁଭୂତିକୁ ସଂପ୍ରସାରିତ କରିଦିଏ । ଏହି ସହାନୁଭୂତି ପୁଣି ଲମ୍ବିଯାଏ ପଶୁପକ୍ଷୀ ଆଦି ମାନବେତର ଜଗତ ଓ ପ୍ରକୃତି ପ୍ରତି । ଛଳ-ବୌଦ୍ଧିକତା (Pseudo-Intellectualism) ନୁହେଁ; ଗୋଟାଏ ଶ୍ରଦ୍ଧାଶୀଳ ହୃଦୟବତ୍ତା ପ୍ରକାଶ ପାଏ । ବିଶ୍ୱ-କାନ୍‌ଭାସରୁ ସ୍ରଷ୍ଟା-ମାନସ ପୁଣି ବାରମ୍ବାର ଆକର୍ଷିତ ହୋଇଆସେ ଆପଣାର ସ୍ୱଦେଶୀ ସତ୍ତାକୁ, ଜାତୀୟ ସଂସ୍କୃତିକୁ । ଏହା ସତ୍ତ୍ୱେ ସେ ମଣିଷର ହିଁ ବେଦଗାନ କରେ । ସେହି ମଣିଷଟି ଯେଉଁ ଦେଶର ବା ଜାତିର ହୋଇଥାଉ ସେଥିରେ ସେ ଭେଦଭାବ ବିଚାର କରେନାହିଁ । ସେହି ମଣିଷର ଦୁଃଖ ଯନ୍ତ୍ରଣା ଅସହାୟତା ଓ ତାର ମନର ବେଦନା ସହିତ ସେ ଏକାତ୍ମ ହୋଇଯାଏ । ସେହି ଏକାତ୍ମକତାରୁ ସେ ଆବିଷ୍କାର କରି ଆଣେ ସାର୍ବଦେଶିକ ମଣିଷକୁ । କଥାକାର ଗୁରପ୍ରସାଦ ସେହି ସାର୍ବଦେଶିକ ମଣିଷର ରୂପକାର ।

ପଶୁପାଳନ ବିଭାଗର ନିର୍ଦ୍ଦେଶକ ଭାବରେ ପଶୁପକ୍ଷୀ ଆଦି ମାନବେତର ଚରିତ୍ରମାନଙ୍କ ପ୍ରତି ତାଙ୍କର ଯେଉଁ ସହନୁଭୂତି ଅନ୍ତର ଭିତରେ ଜମାଟ ବାନ୍ଧିଥିଲା ତାହାକୁ ସେ ରୂପ ଦେଇଛନ୍ତି ନାନା ଗଳ୍ପରେ । ଆମେରିକାରେ ଅଧ୍ୟୟନ ଓ ଗବେଷଣା କାଳରେ ସେ ବହୁ ବିଦେଶୀ ବନ୍ଧୁଙ୍କ ସଂସ୍ପର୍ଶରେ ଆସିଛନ୍ତି ଓ ସେମାନଙ୍କ ଦରଦୀ ମନକୁ ଉପଲବ୍‌ଧି କରିଛନ୍ତି । ଭାରତର ବିଭିନ୍ନ ପ୍ରଦେଶକୁ ଯାଇ ନାନା ସେମିନାରରେ ଅଂଶଗ୍ରହଣ କରିଛନ୍ତି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତି ଓ ଜୀବନଧାରା ମଧ୍ୟରେ ସମନ୍ୱୟ ପାଇଁ ଆକାଂକ୍ଷା ପୋଷଣ କରିଛନ୍ତି । ବିଦେଶ ଭୂଇଁରେ ଯେଉଁଠି ଥିଲେ ମଧ୍ୟ ବାରମ୍ବାର ମନେ ପକାଇଛନ୍ତି ଆପଣାର ଭୂମିଖଣ୍ଡକୁ । ତାହାରି ଫଳରେ ସେ ପାଶ୍ଚାତ୍ୟ ସଂସ୍କୃତିରେ ଭାସିଯାଇ ଆପଣାର ସାଂସ୍କୃତିକ ସତ୍ତାକୁ ହରାଇ ଦେଇନାହାନ୍ତି । ବରଂ ତାଙ୍କ ଭିତରେ ସ୍ୱାଦେଶିକ ସଂସ୍କୃତି ହୋଇଉଠିଛି ଅଧିକ ପ୍ରାଣବନ୍ତ । ଅବସର ଜୀବନରେ ଭାସିଯାଇ ସେ ନିଜକୁ ସାମିଲ କରିଦେଇଛନ୍ତି ଉତ୍କଳ ସମ୍ମିଳନୀର ଜାତୀୟ ସ୍ରୋତରେ । ଏହି ସକଳ ଅନୁଭୂତିକୁ ସେ ପ୍ରକାଶ କରିଛନ୍ତି ବିବିଧ ରଚନାରେ । ସେହି ଅନୁଭୂତିର ଜୀବନ୍ତ ରୂପ 'ସଂସାର' ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶ ପାଉଥିବା ଓ ପରେ ପୁସ୍ତକ ଆକାରରେ ପ୍ରକାଶ ପାଇଥିବା 'ପାତାଳ ପୁରୀର ହାଲଚାଲ' ଭ୍ରମଣ କାହାଣୀ । ବୈଷୟିକ ସାହିତ୍ୟର ସେ ମଧ୍ୟ ସ୍ରଷ୍ଟା । ସେ ପୁଣି ରଚନା କରିଛନ୍ତି ପ୍ରବନ୍ଧ ପୁସ୍ତକ 'ବନ୍ଦେ ଉତ୍କଳ ଜନନୀ' । ଏସବୁ ସତ୍ତ୍ୱେ ସେ ଜଣେ କଥାକାର ଭାବରେ ସୁପରିଚିତ । 'ସାଲବେଗର ଅଶ୍ରୁ' (୧୯୮୮), 'କହେ ସାଲବେଗ ହୀନ' (୧୯୮୯), 'ନୀଳଚକ୍ରର ଆହ୍ୱାନ' (୧୯୯୦), 'ବିଧ୍ୱସ୍ତ କଳିକା' (୧୯୯୬) ଆଦି ଗଳ୍ପ ପୁସ୍ତକ ଓ 'ମୋହନ ବଂଶୀ' (୨୦୦୪) ପରି ଉପନ୍ୟାସ ଭିତରୁ ଗରୁପ୍ରସାଦଙ୍କ ବ୍ୟକ୍ତିସତ୍ତାର ପରିଚୟ ମିଳିଥାଏ ।

ଗୁରୁପ୍ରସାଦ ନୀରବ ଶିଳ୍ପୀ । ନୀରବତା ମଧ୍ୟ ଦେଇ ବିଶ୍ୱବେଦନାର ସେ ରୂପକାର । ତାଙ୍କ କଥାସାହିତ୍ୟ ଆତ୍ମୋପଲବ୍ଧିର ମର୍ମଲିପି । ଜଡ଼ ଓ ଜୀବ, ମଣିଷ ଓ ପଶୁପକ୍ଷୀ, ମୂର୍ତ୍ତ ଓ ଅମୂର୍ତ୍ତ ସବୁ ଯେପରି ତାଙ୍କ କଥା-ବୃତ୍ତରେ ଏକାକାର । ପ୍ରତ୍ୟେକଟି ଗଳ୍ପ ସ୍ୱାଭାବିକ ପ୍ରାଣ-ପ୍ରାଚୁର୍ଯ୍ୟରେ ଋଦ୍ଧିମନ୍ତ । ଶୈଳ୍ପିକ ଚମତ୍କାରିତା ନୁହେଁ; ଭାବ-ମାଧୁର୍ଯ୍ୟ ତାଙ୍କ ଗଳ୍ପର ମୁଖ୍ୟ । ଜୀବନର ଚଲାପଥରେ ଯେଉଁସବୁ ଅନୁଭୂତି ଲାଭ କରିଛନ୍ତି ତାହାର କଳାତ୍ମକ ରୂପ ତାଙ୍କ ଗଳ୍ପଜଗତ । ପ୍ରତ୍ୟେକ ଗଳ୍ପ ମାନବିକ ଦ୍ୟୁତିରେ ଦୀପ୍ତିମନ୍ତ । ଗଳ୍ପ ସଂପର୍କରେ ତାଙ୍କର ବକ୍ତବ୍ୟ – ‘‘ଦୁଃଖଦ କଥାଟାଏ ମନ ଭିତରେ ରଖି ଛଟପଟ ହେବା ଅପେକ୍ଷା ନିଜ ଲୋକ ଆଗରେ କହିଦେଲେ ମନଟା ହାଲୁକା ହୋଇଯାଏ । ଦେହ ନ ସହିଲା ପରି ଘଟଣାଟାଏ ଦେଖି ନ ଦେଖିଲା ପରି ଚୁପ୍ ହୋଇ ରହିଯିବାକୁ ମନ ହୁଏନା । ଦୈନନ୍ଦିନ ଜୀବନରେ ମଣିଷ ଯାହା ଦେଖୁଛି, ଶୁଣୁଚି, ଖବର କାଗଜରୁ ପଢୁଚି ତା ଉପରେ ନିଜର ସ୍ୱାଧୀନ ମତ ପ୍ରକାଶ କରିବାକୁ ଇଚ୍ଛା ହୁଏ । ଯୁଗ ବଦଳୁଛି, ସମୟ ସୁଅରେ ଭାସି ଭାସି ମଣିଷର ରଙ୍ଗ ଢ଼ଙ୍ଗ, ଆଚାର ବ୍ୟବହାର, ରୀତିନୀତି ବା ରୁଚି ବଦଳି ଯାଉଛି । ତଥାପି ସମାଜର ବହୁ ରକ୍ଷଣଶୀଳ ବ୍ୟକ୍ତି ସମୟର ରଥଚକକୁ ଜାବୁଡ଼ି ଧରି ତାର ଗତିରୋଧ କରିବାର ବୃଥା ପ୍ରୟାସ କରନ୍ତି । ମାତ୍ର ସାଧାରଣ ମଣିଷ ଏଇ ରକ୍ଷଣଶୀଳତାର ବଶ୍ୟତା ସ୍ୱୀକାର କରେନା । ସେ ତାର ପ୍ରତିକ୍ରିୟା ପ୍ରକାଶ କରେ ।’’ (୨) ଏହି ପ୍ରତିକ୍ରିୟା ଲେଖକଙ୍କ ଅନ୍ତରର । ସମାଜର ନିମ୍ନସ୍ତରର ଅସହାୟ ମଣିଷ ହୁଏତ ତା’ ବୁକୁର ହାହାକାରକୁ ପ୍ରକାଶ କରିବାକୁ ଭାଷା ପାଏନା ମାତ୍ର ତା’ ଅନ୍ତରର ବିଦ୍ରୋହର ନିଆଁକୁ ଆଖିର ଲୁହରେ ପ୍ରକାଶ କରେ । ଏହି ନିମ୍ନବର୍ଗର ମଣିଷମାନଙ୍କ ଲୁହର ଜୀବନ୍ତ ରୂପ ହୋଇଯାଇଛି ‘ସାଲବେଗର ଅଶ୍ରୁ’ ଗଳ୍ପ ପୁସ୍ତକ । ତାରି ଭିତରେ କେତେ ଦୀପୁ, କନକ, ମାଧମାଆ, ଜନ୍ ମୋରିସ, କାବୁଲି ଓ ସାଲବେଗମାନଙ୍କର ଝରିଛି ଲୁହ । ସେ ପୁଣି ‘ନୀଳଚକ୍ରର ଆହ୍ୱାନ’ ଗଳ୍ପ ପୁସ୍ତକରେ କହନ୍ତି ‘‘ବଢ଼ିଲା ନଈର ଅସରନ୍ତି ପାଣି ସୁଅପରି ମଣିଷ ଜୀବନର ଅଗଣିତ ଶୋକ ଦୁଃଖଭରା କେତେ ଯେ ଘଟଣା ଅତୀତର ଅନ୍ଧାରୁଆ ଦିଗନ୍ତ ଆରପଟେ ଲୀନ୍ ହୋଇଯାଏ, ତାର ହିସାବ ରଖିବା ଅସମ୍ଭବ । ହେଲେ ତା’ଭିତରୁ ଯେତିକିଟି ନଜରକୁ ଆସେ, ସେ ବିଷୟରେ ଚିନ୍ତାକରି ବସିଲେ ଜୀବନ ପ୍ରତି ଆପେ ଆପେ ମୋହ ତୁଟିଯାଏ । ସମାଜ ପ୍ରତି ବିଦ୍ରୋହୀ ହୋଇଉଠେ ମନ, ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ବିବେକ ଅଡ଼ିବସେ । ଆପଣା ଜଂଜାଳରେ ମଜ୍ଜିରହି ପରମୁହୂର୍ତ୍ତରେ ସବୁକିଛି ବାହାରର ଘଟଣା ଭୁଲିଯାଏ ମଣିଷ । ତେବେ ନିରୋଳାରେ ଅତୀତର ସ୍ମୃତିରୁ ପୁଳାଏ ରୋମନ୍ଥନ କରି ବସିଲେ ମନ ଉପରେ ପ୍ରଭାବ ସୃଷ୍ଟି କରିଥିବା କିଛି ଘଟଣାରୁ କେତେଟା ଉଷାଲୋକରେ ପାହାନ୍ତି ତାରାଟା ଜାଲଜଲୁଆ

୨. ସାଲବେଗର ଅଶ୍ରୁ (୧୯୮୮) - ଲେଖକଙ୍କ ବକ୍ତବ୍ୟ ।

ଦିଶିଲାଭଳି ପୁଣିଥରେ ମନକୁ ଆନ୍ଦୋଳିତ କରିଦିଏ । ସେହି ଭଳି କେତେଟା ଘଟଣା ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିବା ପ୍ରଚେଷ୍ଟାରେହିଁ ଏ ଗଳ୍ପ ସଂକଳନର ସୃଷ୍ଟି । (୩) ଏହି ବକ୍ତବ୍ୟରୁ ସ୍ପଷ୍ଟ ସୂଚିତ ହୁଏ ଯେ ଲେଖକ ବିବେକର ବିଚାର ଉପରେ ଗୁରୁତ୍ୱ ଦେଇଛନ୍ତି । ଗଳ୍ପ ଲେଖିବାପାଇଁ ଗଳ୍ପ ଲେଖି ନାହାନ୍ତି । ସ୍ମୃତିମନ୍ଥିତ କେତେକ ଘଟଣାକୁ ଆଧାର କରି ଗଳ୍ପ ଲେଖିଛନ୍ତି ଯାହା ଭିତରେ ପ୍ରତିଫଳିତ ହୋଇଛି ଅନ୍ୟାୟ ଅବିଚାର ପ୍ରତି ତାଙ୍କ ବିଦ୍ରୋହୀ ଆତ୍ମାର ବିବେକ ବାଣୀ । କେତେ ନୀଳଚକ୍ର ଦର୍ଶନାର୍ଥୀ ଚନ୍ଦ୍ରଶେଖର ମିଶ୍ର, ଜଗନ୍ନାଥଙ୍କ ଦର୍ଶନ ପାଇଁ ବ୍ୟାକୁଳିତ ଡକ୍‌ଟର ଜାକ୍‌ସନ୍, ମୋରିସ, ଡେଭିଡ୍ ଉଇଲସନ (କୃଷ୍ଣଦାସ), କେତେ ଅପର୍ତ୍ତି ପରି ସ୍ନେହୀ ମଣିଷ, ଦେବକାନ୍ତଙ୍କ ପରି କାର୍ଯ୍ୟବ୍ୟସ୍ତ ବ୍ୟକ୍ତି ଜୀବନ ସଂଗ୍ରାମରେ କିପରି ଅସହାୟ ହୋଇପଡ଼ନ୍ତି ତାହାର ଚିତ୍ର ଫୁଟି ଉଠିଛି ଗଳ୍ପମାନଙ୍କରେ ଓ ତାହାରି ଭିତରେ ପ୍ରକାଶ ପାଇଛି ବିବେକ-ବାର୍ତ୍ତା ।

ଗଳ୍ପଗୁଡ଼ିକ ଅନୁଭୂତି ସ୍ନିଗ୍ଧ । 'ମାନସିକ ସ୍ତରରେ କଳ୍ପନାର ଅନୁଭବରୁ ଲେଖକ କଥାବସ୍ତୁର ରୂପଦିଏ, ମାତ୍ର ପାଠକ ସେ ବହିଟି ପଢ଼ିବାବେଳେ ଆପଣାର ଅନୁଭୂତିକୁ ସମ୍ବଳ କରି ତାକୁ ଭଲଲାଗୁଥିବା ଯେକୌଣସି ଚରିତ୍ରର ଭୂମିକାରେ ଆପଣାଛାଏଁ ଉଭା ହୋଇଯାଏ ଓ ଲେଖକର ଚିନ୍ତାଧାରାରୁ ବିଚ୍ୟୁତ ହେଲେ ମନ ତାର ଖାପଛଡ଼ା ହୋଇଯାଏ । ସେତେବେଳେ ସେ ଲେଖକ ସହିତ ମୁକାବିଲା କରିବା ପାଇଁ ଖୋଜେ ।' (୪) ଗୁରୁପ୍ରସାଦଙ୍କ ଗଳ୍ପ-ଜଗତ ଅନୁଭୂତ ସତ୍ୟର ଜଗତ । ତେଣୁ ସେହି ଜଗତରେ ପାଠକ ଆପଣାକୁ ଭେଟେ ନାନା ଚରିତ୍ର ଭିତରେ । କେତେବେଳେ ତା' ଭିତରେ ସୃଷ୍ଟିହୁଏ ସମାଜବ୍ୟବସ୍ଥା ବିରୋଧରେ ବିଦ୍ରୋହୀ ଭାବ, କେତେବେଳେ ନିଜକୁ ଚରିତ୍ରମାନଙ୍କ ସହିତ ଏକାତ୍ମ କରିଦେଇ ଅଜାଣତରେ ଝରାଏ ଆଖିରୁ ଲୁହ । ସମ୍ବେଦନା ଓ ବିଦ୍ରୋହ ଯେପରି ହାତ ଧରାଧରି ହୋଇ ଗତି କରିଛି ତାଙ୍କର ଗଳ୍ପ-ପୃଥିବୀରେ ।

- ୨ -

ଗୁରୁପ୍ରସାଦଙ୍କ ଗଳ୍ପର ଏକ ବିଶିଷ୍ଟ ଦିଗ ଧର୍ମରେ ଦେଖା ଦେଇଥିବା ସଂକୀର୍ଣ୍ଣତା, ଧର୍ମ ନାମରେ ବର୍ଣ୍ଣ ବିଦ୍ୱେଷ ଓ ଏପରି ମାନସିକତାର ପରିବର୍ତ୍ତନ ଏବଂ ନିରାକରଣ । ଏତାଦୃଶ ଭାବସମ୍ବଳିତ ଗଳ୍ପଗୁଡ଼ିକରେ ବିବେକ ନେଇଛି ଗୁରୁତ୍ୱପୂର୍ଣ୍ଣ ଭୂମିକା । ଲେଖକଙ୍କ ବିବେକ ପାଠକଙ୍କ ବିବେକକୁ ଉତ୍ତୋଳନ କରିବାରେ ହୋଇଛି ସହାୟକ । ସ୍ରଷ୍ଟା-ମାନସ ମଣିଷର ସଂଧାନୀ । ସେହି ମଣିଷ ଯେଉଁ ଧର୍ମର, ଯେଉଁ ଜାତିର ବା ଯେଉଁ ଭାଷାର ହୋଇଥାଉନା କାହିଁକି ତା' ଭିତରେ ବିଦ୍ୟମାନ ଏକ ମାନବୀୟ ଭାବସତ୍ତା । ତା' ଭିତରେ

୩. ନୀଳଚକ୍ରର ଆହ୍ୱାନ (୧୯୯୦) - ମୁଖବନ୍ଧ ।

୪. ବିଧ୍ୱସ୍ତ କଳିକା (୧୯୯୬) - ଚୟନର କୃଷ୍ଣଚୂଡ଼ା, ପୃ. ୪୧ ।

ମଧ୍ୟ ପ୍ରକାଶ ପାଏ ତୀବ୍ର ଆକାଂକ୍ଷା ଭଗବତ୍ କରୁଣା ପାଇଁ । ବସ୍ତୁବାଦର ବ୍ୟାମୋହ ଭିତରୁ ସେ ଚାହେଁ ମୁକ୍ତି । ତେଣୁ ସେ ବ୍ୟାକୁଳିତ ଚିତ୍ତରେ ଧାଇଁଯାଏ କେଉଁ ମନ୍ଦିରକୁ ବା କେଉଁ ସାଧୁ ସନ୍ଥଙ୍କ ପାଖକୁ । ଅଥଚ କୁସଂସ୍କାର ଓ ଧର୍ମଗତ ସଂକୀର୍ଣ୍ଣ ମନୋବୃତ୍ତି ପ୍ରତିବନ୍ଧକ ହୋଇ ଛିଡ଼ାହୋଇଯାଏ । ସେପରି ଶୁଦ୍ଧଚିତ୍ତ ମଣିଷକୁ ସପ୍ରେମ ଆଲିଙ୍ଗନ ପାଇଁ ବାହୁ ବିସ୍ତାରିତ ହୁଏନାହିଁ । ବରଂ ଅନ୍ୟ ଧର୍ମର ବା ସଂପ୍ରଦାୟର ହୋଇଥିବାରୁ ତାକୁ ନିର୍ମମ ପ୍ରହାର କରାଯାଏ । ଦେବତାଙ୍କ ଦର୍ଶନ ପାଇଁ ତାକୁ ଅନୁମତି ଦିଆଯାଏ ନାହିଁ । ଅଥଚ ସେହି ଆଘାତପ୍ରାପ୍ତ ମଣିଷର ହୃଦୟରେ କୌଣସି ଦୁଃଖ ଦେଖାଯାଏ ନାହିଁ, ବରଂ ତା' ଭିତରେ ଉକୁଟି ଉଠେ ଏକ ଦିବ୍ୟ ଭାବ । ଓଡ଼ିଶାରେ ଜଗନ୍ନାଥଙ୍କୁ କୁହାଯାଏ ମାନବ-ମୈତ୍ରୀର ପ୍ରତୀକ । ସେ ମୈତ୍ରୀ ଦେବ, ପତିତପାବନ, ଜଗତର ନାଥ । ତାଙ୍କ ପାଖରେ ଜାତି, ଧର୍ମ ବର୍ଣ୍ଣର ଭେଦ ନାହିଁ । ମାତ୍ର ଭ୍ରାନ୍ତ ସଂକୀର୍ଣ୍ଣ ଆଚାର ଭିତରେ ତାଙ୍କୁ ଛନ୍ଦି ଦିଆଯାଇଛି । ଏହି ସଂକୀର୍ଣ୍ଣତାର ଶିକାର ହୋଇଥିଲେ ହରିଦାସ, ଦାସିଆ ବାଉରୀ, ସାଲବେଗ ଓ ଆହୁରି କେତେ ଭକ୍ତ । ଏମାନେ ହୁଏତ ଜଗନ୍ନାଥଙ୍କ କରୁଣା ଲାଭ କରି ସଂକୀର୍ଣ୍ଣତାର ଊର୍ଦ୍ଧ୍ୱକୁ ଚାଲିଗଲେ ମାତ୍ର ଜଗନ୍ନାଥଙ୍କୁ ଘେରିରହିଥିବା ଆଚାରଗତ ପରମ୍ପରାର କୌଣସି ପରିବର୍ତ୍ତନ ହେଲା ନାହିଁ । ମଣିଷ ଗଢ଼ା ଆଚାର ବିଚାର ହିଁ ମଣିଷକୁ ମଣିଷଠାରୁ ଓ ସର୍ବୋପରି ଈଶ୍ୱରଙ୍କଠାରୁ ଅଲଗା କରି ରଖୁଛି । ଏହି ପ୍ରତିକ୍ରିୟାରୁ କଥାକାର ରଚନା କରିଛନ୍ତି ସଂଳାପ, ସାଲବେଗର ଅଶ୍ରୁ, ଅସ୍ପୃଶ୍ୟ ଭକ୍ତି, କହେ ସାଲବେଗ ହୀନ, ନୀଳଚକ୍ରର ଆହ୍ୱାନ ପରି କେତୋଟି ଗଳ୍ପ । ଏ ଧରଣର ଗଳ୍ପରେ ପଣ୍ଡା ପଢ଼ିଆରୀ ଓ ଧର୍ମନେତାଙ୍କ ପ୍ରତି ଅଛି ବିଦ୍ରୂପ ଓ ବିଦ୍ରୋହ, ମାତ୍ର ଜଗନ୍ନାଥଙ୍କ ପ୍ରତି ଅଛି ଶ୍ରଦ୍ଧା ଓ ଭକ୍ତି ।

'ସଂଳାପ' ଗଳ୍ପ ଶ୍ୱେତାଙ୍ଗ ସନ୍ନ୍ୟାସୀଙ୍କ ଶ୍ରୀକୃଷ୍ଣ ଭକ୍ତି, ହରେକୃଷ୍ଣ ହରେରାମ ମହାମନ୍ତ୍ର ଭଜନ ଓ ଉଦାର ମାନବିକତାବୋଧର ମନ୍ମୟ ରୂପ-ଚିତ୍ର । ଆନ୍ତର୍ଜାତିକ କୃଷ୍ଣ ଚେତନା ସମାଜ ଦ୍ୱାରା ଆକୃଷ୍ଟ ହୋଇ ପାଶ୍ଚାତ୍ୟ ଜଗତର କେତେ ବିଦ୍ୱାନ, କେତେ ଯୁବକ ଯୁବତୀ ପ୍ରାଚୁର୍ଯ୍ୟ ଓ ବିଳାସକୁ ତ୍ୟାଗକରି ଭକ୍ତି ଭାବରେ ବିହ୍ୱଳିତ ହୋଇଛନ୍ତି । ଭାରତବର୍ଷକୁ ଆସିଛନ୍ତି, ଆସିଛନ୍ତି ମଧ୍ୟ ଓଡ଼ିଶାକୁ, ଜଗନ୍ନାଥ କ୍ଷେତ୍ରକୁ । ହୃଦୟରେ ପ୍ରବଳ ଆକାଂକ୍ଷା ଜଗତର ନାଥ ଜଗନ୍ନାଥଙ୍କୁ ଟିକେ ଦର୍ଶନ କରି ଜୀବନକୁ ଧନ୍ୟ ମନେ କରିବେ । ଅଥଚ ସେମାନେ ହିନ୍ଦୁଧର୍ମ ଗ୍ରହଣ କରି, ବୈଷ୍ଣବଙ୍କ ପରି ଚନ୍ଦନ ତିଳକ ନାଇ ମଧ୍ୟ ଶ୍ରୀମନ୍ଦିର ଭିତରକୁ ପ୍ରବେଶ କରିପାରୁନାହାନ୍ତି । ସାଶ୍ରୁନୟନରେ ଶ୍ରୀମନ୍ଦିର ସମ୍ମୁଖରେ ଛିଡ଼ା ହୋଇଥିବା ଶ୍ୱେତାଙ୍ଗ ସନ୍ନ୍ୟାସୀ ପ୍ରତି ଗଳ୍ପକାର ସମ୍ବେଦନା ପ୍ରକାଶ କରନ୍ତେ ସେ କହିଛନ୍ତି 'ବାବା' ! ଠାକୁରଙ୍କର ଦୋଷ ନାହିଁ । ଏସବୁ ଭେଦଭାବ ମଣିଷ କରିଛି । କଳା, ଗୋରା, ହଳଦି, ବା ବାଦାମି ରଙ୍ଗ ଭିତରେ ବାଛ ବିଚାର କରେ ଏଇ ମଣିଷ ଜାତି । ଈଶ୍ୱରଙ୍କ

ନିକଟରେ ସମସ୍ତେ ସମାନ । ତାଙ୍କର କିଛି ବାଛବିଚାର ବା ଭେଦଭାବ ନ ଥାଏ । (୫) ଏହି ଭକ୍ତ ଭିତରେ ଶ୍ୱେତାଙ୍ଗ ସନ୍ୟାସୀଙ୍କ ମହନୀୟ ବ୍ୟକ୍ତିତ୍ୱ ପ୍ରତିଫଳିତ । ମନ୍ଦିର ଭିତରକୁ ନଯାଇ ମଧ୍ୟ ତାଙ୍କର ଭକ୍ତି ଭାବନାରେ ବାଧା ପଡ଼ିନାହିଁ । ରଥଯାତ୍ରା ସମୟରେ ସେ ଜଗନ୍ନାଥଙ୍କୁ ଦର୍ଶନ କରିଛନ୍ତି ନନ୍ଦିଘୋଷ ରଥ ଉପରେ । ସେ ତନ୍ମୟ ହୋଇଛନ୍ତି, ଜଗନ୍ନାଥଙ୍କୁ ଦେଖି ଜୀବନକୁ ଧନ୍ୟ ମନେ କରିଛନ୍ତି । ସତେଯେପରି ଦାସିଆ ବାଉରୀ ଓ ସାଲବେଗ ଭିତରେ ସେ ଜଣେ ହୋଇଯାଇଛନ୍ତି । ଗଳ୍ପନାୟକ ଅନୁଭବ କରିଛନ୍ତି ଯେଉଁ ଶ୍ୱେତାଙ୍ଗ ବ୍ୟକ୍ତିଟି ପ୍ରାଚୁର୍ଯ୍ୟ ଓ ବିଳାସଭିତରୁ ତ୍ୟାଗ ଓ ବୈରାଗ୍ୟକୁ ଆସି କୃଷ୍ଣ-ଧର୍ମ ଗ୍ରହଣ କରିଥିଲା, ତାହାଙ୍କ ଅନ୍ତରର ଗଭୀର ଜଗନ୍ନାଥ-ପ୍ରୀତିକୁ । ତାଙ୍କର ହୁଏତ କିଛି ଅଭିଯୋଗ ବା ଅନୁଯୋଗ ନ ଥିଲା କାହା ପ୍ରତି ମାତ୍ର ଗଳ୍ପନାୟକ ମାନସ ସ୍ତରରେ ହୋଇଛନ୍ତି ବିଦ୍ରୋହୀ । ହିନ୍ଦୁଧର୍ମ ଭିତରେ ପ୍ରବେଶ କରିଥିବା ସଂକୀର୍ଣ୍ଣତାକୁ ସେ ଘୃଣା କରିଛନ୍ତି । ଗଳ୍ପର ମହାସତ୍ତାଟି ଫୁଟି ଉଠିଛି ରଥ ଉପରେ ଜଗନ୍ନାଥଙ୍କୁ ଦେଖି ଶ୍ୱେତାଙ୍ଗ ସନ୍ୟାସୀର ନୟନରୁ ଝରି ପଡୁଥିବା ଅଶ୍ରୁବିନ୍ଦୁଦେଇ, ବଡ଼ ଦାଣ୍ଡରେ ଖରାରେ ଛିଡ଼ାହୋଇ ମହାମନ୍ତ୍ର ଲିଖିତ କାଗଜକୁ ଅନ୍ୟ ହାତକୁ ବଢ଼ାଇ ଦେଉଥିବା ଦୃଶ୍ୟ ମଧ୍ୟଦେଇ । ଗଳ୍ପନାୟକ ହିନ୍ଦୁ । ଅଥଚ ସେ ପାଶ୍ଚାତ୍ୟ ସାହେବୀ ପୋଷାକ, ଭାଷା, ଢ଼ଙ୍ଗରଙ୍ଗ ପ୍ରତି ଆକୃଷ୍ଟ ମାତ୍ର ପାଶ୍ଚାତ୍ୟ ସାହେବ ନିଜଜାତୀୟ ପୋଷାକ ଓହ୍ଲାଇ ଦେଇ ଗେରୁଆ ବସ୍ତ୍ର ପିନ୍ଧି ସନ୍ୟାସୀ ହୋଇ ମହାମନ୍ତ୍ର ଭଜନ କରୁଛି । ଏହା ତାଙ୍କ ମନ ଭିତରେ ସୃଷ୍ଟି କରିଛି ଗଭୀର ପ୍ରତିକ୍ରିୟା ।

'ଅସ୍ପୃଶ୍ୟ ଭକ୍ତି' ଏହିପରି ଅନ୍ୟ ଏକ ଗଳ୍ପ । ଚିକାଗୋ ବିଶ୍ୱବିଦ୍ୟାଳୟର ସୋସିଓଲୋଜି ପ୍ରଫେସର ଡକ୍ଟର ଜନ୍ ହ୍ୟୁବର୍ଟ ମୋରିସ୍ ପୃଥିବୀର ନାନା ଦେଶ ବୁଲି ସମାଜ ବିଜ୍ଞାନ ଉପରେ ଗବେଷଣା କରି ସୁଖ୍ୟାତି ଅର୍ଜନ କରିଥିଲେ ହେଁ କ୍ରମେ ବୃତ୍ତିଗତ ଖ୍ୟାତି ଓ ଅର୍ଥଗତ ମୋହରୁ ମୁକ୍ତ ହୋଇ ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୁଦ୍ଧ ହୋଇଛନ୍ତି । ନିଉବୃନ୍ଦାବନରେ କୃଷ୍ଣପ୍ରେମ ଓ କୃଷ୍ଣ-ଭକ୍ତି ପ୍ରତି ଆକୃଷ୍ଟ ହୋଇ ସେ ଭାରତବର୍ଷକୁ ଆସି ମଥୁରା, ବୃନ୍ଦାବନ ଓ ଦ୍ୱାରକା ବୁଲି ଦେଖିଛନ୍ତି । ତତ୍‌ପରେ ସେ ଓଡ଼ିଶାକୁ ଆସି କେୟାର ସଂସ୍ଥାର ଅଫିସର ପୀତାମ୍ବର ମହାପାତ୍ରଙ୍କ ସହିତ ଯାଇଛନ୍ତି ପୁରୀକୁ ଜଗନ୍ନାଥଙ୍କ ଦର୍ଶନ ପାଇଁ । ତାଙ୍କର ଧାରଣା ଥିଲା ଯେ ଦେବଲୀଳା ଭୂମି ଭାରତ ମାଟିରେ ଦେବତାଙ୍କୁ ଦର୍ଶନ କଲେ ମାନବ ଜୀବନ ସଫଳ ହେବା ସଂଗେ ସଂଗେ ମୃତ୍ୟୁପରେ ସ୍ୱର୍ଗବାସ ହୁଏ । ମାତ୍ର ତାଙ୍କୁ ମନ୍ଦିର ଭିତରକୁ ପ୍ରବେଶ କରିବା ପାଇଁ ନିଷେଧ କରାଗଲା । କାରଣ ସେ ଶ୍ୱେତାଙ୍ଗ ସାହେବ । ତାଙ୍କ ମନ ଭିତରେ ଦେଖାଦେଲା ତୀବ୍ର ପ୍ରତିକ୍ରିୟା । ଜୀବନରେ ସେ କାହାରି

---

୫. ସାଲବେଗର ଅଶ୍ରୁ, ସାଥୀ ମହଲ, ବିନୋଦ ବିହାରୀ, କଟକ - ୧୯୮୮, ପୃ. ୪୭ ।

ପ୍ରତି ଅନ୍ୟାୟ ଆଚରଣ କରି ନାହାନ୍ତି । କୋଟି ବ୍ରହ୍ମାଣ୍ଡର ଅଧୀଶ୍ୱର, ଜଗତର ନାଥ ଜଗନ୍ନାଥଙ୍କୁ ସେ ଦର୍ଶନ କରିବାରୁ ବଂଚିତ ହେବେ କାହିଁକି ? ଶ୍ୱେତାଙ୍ଗ ହେଲେ ବୋଲି କ'ଣ ସେ ଜଗନ୍ନାଥଙ୍କ ଦୃଷ୍ଟିରେ ପାପୀ ! ସମୁଦ୍ର ବେଳାଭୂମି ସଂଲଗ୍ନ ଗୋଟିଏ ହୋଟେଲରେ ରହି ସେ ଏହିପରି ଚିନ୍ତା କରୁଥିଲା ବେଳେ ରାତ୍ରିର ଘନ ଅନ୍ଧକାର ଭିତରେ ହଠାତ୍ ଜଣେ ପଣ୍ଡାଙ୍କର ଆର୍ବିଭାବ ଘଟିଛି ତାଙ୍କ କକ୍ଷରେ ଓ ସେ ତାଙ୍କୁ ସାଙ୍ଗରେ ନେଇଯାଇଛନ୍ତି ଜଗନ୍ନାଥଙ୍କୁ ଦେଖାଇଦେବା ପାଇଁ । ଡକ୍ଟର ମୋରିସ୍ ପଣ୍ଡାଙ୍କ ସହିତ ଯାଇ ନୀଳ ଆଲୋକରେ ଉଦ୍‌ଭାସିତ ପ୍ରବେଶ ଦ୍ୱାରର ଦକ୍ଷିଣ ପାର୍ଶ୍ୱରେ ରତ୍ନସିଂହାସନ ଉପରେ ବିରାଜିତ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦର୍ଶନ କଲେ । ଏହି ଅନନ୍ୟ ଦୃଶ୍ୟରେ ତାଙ୍କର ହୃଦୟରେ ସୃଷ୍ଟିହେଲା ଦିବ୍ୟ ଭକ୍ତିର ଫଲଗୁ । ପଣ୍ଡା ଜଣକ ଅନ୍ତର୍ହିତ ହୋଇଗଲେ । ଡକ୍ଟର ମୋରିସ୍‌ଙ୍କ ହୃଦୟ କିନ୍ତୁ ହୋଇଗଲା ଜଗନ୍ନାଥମୟ । ପରଦିନ ମୋରିସ୍‌ଙ୍କଠାରୁ ସମସ୍ତ କଥା ଶୁଣି ପୀତାମ୍ବର ବାବୁ ବିସ୍ମିତ ହୋଇଛନ୍ତି । ସେ ତାଙ୍କୁ ସାଙ୍ଗରେ ନେଇ ଶ୍ରୀମନ୍ଦିରକୁ ଯାଇଛନ୍ତି ମାତ୍ର ଦ୍ୱାରରକ୍ଷୀ ଦେଇଛି ବାଧା । ଏକପକ୍ଷରେ ଅଲୌକିକତା ଓ ଅନ୍ୟପକ୍ଷରେ ବାସ୍ତବତା – ଏଇ ଦୁଇର ଚିତ୍ତ-ସଂଘର୍ଷ ଭିତରେ ଗଳ୍ପର ଘଟିଛି ପରିସମାପ୍ତି । ଲୋକାଚାର, ସଂକୀର୍ଣ୍ଣ ଧର୍ମଧାରଣା, ଅନ୍ଧ କୁସଂସ୍କାର ଭକ୍ତ ଓ ଭଗବାନଙ୍କୁ ଅଲଗା କରିପାରେ ନାହିଁ । ଭଗବାନ ଭକ୍ତ ନିକଟକୁ ଧାଇଁ ଆସନ୍ତି ଓ ଭକ୍ତର ଭାବାନୁସାରେ ଦର୍ଶନ ଦିଅନ୍ତି । ଏହାହିଁ ସର୍ବକାଳରେ ସତ୍ୟ । ଦାସିଆ ବାଉରୀ ଅସ୍ପୃଶ୍ୟ ମାତ୍ର ତାଙ୍କୁ ଜଗନ୍ନାଥ ଦର୍ଶନ ଦେଇଛନ୍ତି, ତା' ହାତର ନଡ଼ିଆ ଖାଇଛନ୍ତି । ସେହିପରି ଡ଼କ୍ଟର ମୋରିସଙ୍କ ପାଖକୁ ଜଗନ୍ନାଥ ଛଦ୍ମରୂପରେ ଆସିଛନ୍ତି । ନିଜେ ତାଙ୍କୁ ସାଙ୍ଗରେ ନେଇ ନିଜର ମୂର୍ତ୍ତିକୁ ରତ୍ନସିଂହାସନରେ ଦେଖାଇଛନ୍ତି ।

'ସାଲବେଗର ଅଶ୍ରୁ' ଅନ୍ୟ ଏକ ହୃଦୟସ୍ପର୍ଶୀ ଗଳ୍ପ । ଏଥିରେ ମଧ୍ୟ ପ୍ରତିବନ୍ଧକ ହୋଇ ଛିଡ଼ା ହୋଇଛି ଲୋକାଚାର ଓ ସଂକୀର୍ଣ୍ଣ ଧର୍ମଦୃଷ୍ଟି ଜଗନ୍ନାଥ ଓ ଶ୍ୱେତାଙ୍ଗ ଭକ୍ତଙ୍କ ମଧ୍ୟରେ । ଉଇସ୍‌କନସିନ୍ ବିଶ୍ୱବିଦ୍ୟାଳୟର ପଶୁପୁଷ୍ଟିତତ୍ତ୍ୱବିଦ୍ ଡକ୍ଟର ଜାକ୍‌ସନ ଭାରତ ବର୍ଷକୁ ଆସି ଆଉ ସ୍ୱଦେଶକୁ ଫେରିଲେ ନାହିଁ । ସେ ଭାରତବର୍ଷର ଧର୍ମ ଓ ସଂସ୍କୃତିରୁ ଅନେକ କିଛି ଶିକ୍ଷା କରିବାକୁ ଇଚ୍ଛା ପୋଷଣ କଲେ । ପାର୍ଥିବ ଜ୍ଞାନ ନୁହେଁ, ଆଧ୍ୟାତ୍ମିକ ଜ୍ଞାନ ଆହରଣ ହେଲା ତାଙ୍କ ଜୀବନର ଲକ୍ଷ୍ୟ । ସେ ଆମିଷ ତ୍ୟାଗ କରି ହେଲେ ନିରାମିଷାଶୀ । ହିନ୍ଦୁଧର୍ମ ସେ ଗ୍ରହଣ କଲେ । ଜଗତର ନାଥ ଜଗନ୍ନାଥଙ୍କୁ ଥରେ ଦର୍ଶନ କରି ଜୀବନକୁ ଧନ୍ୟ କରିବାକୁ ଚାହିଁଲେ । ତାଙ୍କର ପରିଚୟ ହେଲା ଗଳ୍ପନାୟକଙ୍କ ସହିତ । ସେ ଆସିଲେ ପୁରୀକୁ ଜଗନ୍ନାଥଙ୍କ ଦର୍ଶନ ପାଇଁ । ମନ୍ଦିର ଭିତରକୁ ସେ ପ୍ରବେଶ କରିପାରିଲେ ନାହିଁ । ଦ୍ୱାରରକ୍ଷୀ ତାଙ୍କ ବାହୁ ଧରି ତାଙ୍କୁ ବାହାରକୁ ନେଇଗଲା । ତାଙ୍କର ଆକୁଳ ନିବେଦନକୁ ରକ୍ଷୀ କର୍ଣ୍ଣପାତ କଲାନାହିଁ । ମନ୍ଦିର - ପ୍ରଶାସନ ମଧ୍ୟ ତାଙ୍କୁ ଅନୁମତି

ଦେଲା ନାହିଁ ଭିତରକୁ ଯିବାପାଇଁ । ଡକ୍ଟର ଜାକସନ ଉଚ୍ଚଶିକ୍ଷିତ ଓ ଜଣେ ବୈଜ୍ଞାନିକ ଭାବରେ ସୁଖ୍ୟାତ । ଅଥଚ ତାଙ୍କ ନୟନରୁ ଝରିଗଲା ଧାର ଧାର ଲୁହ । ନୀଳଚକ୍ରକୁ ଚାହିଁ ସେ ପ୍ରଣାମ ଜଣାଇଲେ ଅଶ୍ରୁଳ ମୁଖରେ । ଗଳ୍ପ-ନାୟକଙ୍କୁ ଅନୁରୋଧ କଲେ ମହାପ୍ରସାଦ ଟିକିଏ ପାଇବା ପାଇଁ । ଏହି ଦୃଶ୍ୟରେ ଗଳ୍ପନାୟକଙ୍କ ଭିତରେ ସୃଷ୍ଟି ହେଲା ଭାବାନ୍ତର । ତାଙ୍କର ମାନସପଟରେ ନାଚିଉଠିଲା ସାଲବେଗଙ୍କ ଛବି । ଯବନ ହୋଇଥିବାରୁ ସେ ମଧ ମନ୍ଦିର ଭିତରକୁ ଯାଇପାରି ନଥିଲେ । ସେତେବେଳେ ତାଙ୍କ ନୟନରୁ ଝରିଥିଲା ଅଶ୍ରୁ । କଥାକାର ଡ଼କ୍ଟର ଜାକ୍‌ସନଙ୍କ ଭିତରେ ଅନୁଭବ କଲେ ଭକ୍ତ ଶିରୋମଣି ସାଲବେଗଙ୍କୁ । ଜାକ୍‌ସନ୍ ନୁହନ୍ତି, ସତେଯେମିତି ସାଲବେଗହିଁ କାନ୍ଦୁଛି ଯୁଗ ଯୁଗ ଧରି ।

'କହେ ସାଲବେଗ ହୀନ' ଆଉ ଏକ ଜଗନ୍ନାଥ-କେନ୍ଦ୍ରିକ ଗଳ୍ପ । ଏଥିରେ ମଧ ଅନ୍ୟ ଏକ ଶ୍ୱେତାଙ୍ଗ ଭକ୍ତଙ୍କ ପ୍ରସଙ୍ଗ ବର୍ଣ୍ଣିତ । ରଥଯାତ୍ରା ସମୟରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତିନୋଟି ରଥରେ ବସି ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରୁଥିବା ସମୟରେ ଶ୍ୱେତାଙ୍ଗ କୃଷ୍ଣ ଭକ୍ତମାନେ କୀର୍ତ୍ତନ କରୁଥାନ୍ତି ତନ୍ମୟ ଭାବରେ । ଆମେରିକାର ଚିକାଗୋ ସହରର ସ୍ୱାଧୀନଚେତା ଡେଭିଡ୍ ଉଇଲସନ୍ ବସ୍ତୁବାଦୀ ଜୀବନ ପ୍ରତି ବୀତସ୍ପୃହ ହୋଇ କୃଷ୍ଣଚେତନାରେ ବିଭୋର ହେଲେ । ତାଙ୍କର ନୂତନ ନାମ ହେଲା କୃଷ୍ଣ ଦାସ । ଗୁରୁ ପ୍ରଭୁପାଦ ଭକ୍ତିବେଦାନ୍ତ ସ୍ୱାମୀଙ୍କଠାରୁ ଆଶୀର୍ବାଦ ଲାଭ କରି ଆସିଥିଲେ ପୁରୀକୁ ରଥଯାତ୍ରା ସମୟରେ ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ । ଜଗନ୍ନାଥ ରଥରେ ବିଜେ କରିଥାନ୍ତି । ହଠାତ୍ ପ୍ରବଳ ବର୍ଷାହେତୁ ଲୋକେ ଛିନ୍‌ଛତ୍ରହୋଇ ଚାଲିଗଲେ । ବଡ଼ଦାଣ୍ଡ ନିଶୂନ ହୋଇଗଲା । ଡ଼େଭିଡ୍ ଉଇଲସନ୍ (କୃଷ୍ଣ ଦାସ) ବର୍ଷା ଭିତରେ ଏକାକୀ ଛିଡ଼ାହୋଇ ପ୍ରଭୁ ଜଗନ୍ନାଥଙ୍କୁ ଦେଖୁଥାନ୍ତି । ସେ ଭାବାବେଗରେ ବିହ୍ୱଳ ହୋଇ ରଥ ଉପରକୁ ଚଢ଼ିଗଲେ ଓ ଜଗନ୍ନାଥଙ୍କ ଶ୍ରୀଚରଣ ତଳେ ଲୋଟିଗଲେ କାନ୍ଦି କାନ୍ଦି । ଦଇତାପତିମାନେ ଧାଇଁ ଆସି ତାଙ୍କୁ ଜଗନ୍ନଥଙ୍କ ପାଦତଳୁ ଘୋଷାଡ଼ି ନେଇ କାଠ ଫାଳିଆରେ ନିର୍ମମ ଭାବରେ ପ୍ରହାର କଲେ । ରଥ ଉପରୁ ତାଙ୍କୁ ତଳକୁ ପକାଇଦେଲେ । ସେ ଚେତାଶୂନ୍ୟ ହୋଇଗଲେ । ଇସକନ୍ ଭକ୍ତମାନେ ତାଙ୍କୁ ଡାକ୍ତର ଖାନାକୁ ନେଇ ଚିକିତ୍ସା କରାଇଲେ । ଚେତନା ପାଇ ସେ କହିଲେ - 'ପ୍ରଭୁ ରଥରୁ ଓହ୍ଲାଇ ଗଲେ କି ? କାହିଁ, ସିଂହାସନ କେଉଁଠି ?' (୬) ସେ ପ୍ରକୃତିସ୍ଥ ହେଲା ପରେ ଦେହରେ ପ୍ରହାର ଜନିତ ଯନ୍ତ୍ରଣା ଅନୁଭବ କଲେ । ଏହା ସତ୍ତ୍ୱେ ସେ ଜଗନ୍ନାଥଙ୍କୁ ସ୍ପର୍ଶ କରିପାରିଥିବାରୁ ଗଭୀର ଆନନ୍ଦ ଉପଲବଧି କଲେ । ଯନ୍ତ୍ରଣା ଆଉ ତାଙ୍କୁ ଜଣା ଗଲା ନାହିଁ । ଏକ ଅନନ୍ୟ ଆତ୍ମିକ ଉଲ୍ଲାସରେ ତାଙ୍କର ଅନ୍ତର ପୂର୍ଣ୍ଣ ହୋଇଉଠିଲା । ଏତାଦୃଶ ଗଳ୍ପମାନଙ୍କରେ କଥାକାର

୬. କହେ ସାଲବେଗ ହୀନ, କଟକ ପବ୍ଲିସିଙ୍ଗ ହାଉସ୍, ବାଲୁବଜାର, କଟକ (୧୯୮୯) ପୃ. ୫୫ ।

ବିଦେଶର ବିଦ୍ୱାନ ବ୍ୟକ୍ତିଙ୍କର ବସ୍ତୁବାଦ ପ୍ରତି ଅନାଗ୍ରହ ଓ ବିମଳ ଆଧ୍ୟାତ୍ମିକ ଅନ୍ୱେଷା ସଂପର୍କରେ ଉଲ୍ଲେଖ କରିବା ସଂଗେ ସଂଗେ ଜଗନ୍ନାଥଙ୍କୁ କେନ୍ଦ୍ରକରି ଯେଉଁ ଅମାନବିକ ବ୍ୟୂହ ରଚନା କରାଯାଇଛି, ହିନ୍ଦୁମାନଙ୍କ ଅପେକ୍ଷା ଶ୍ୱେତାଙ୍ଗ ଭକ୍ତଙ୍କର ଜଗନ୍ନାଥଭକ୍ତି ନିବିଡ଼ ହୋଇଥିଲେ ମଧ୍ୟ ସେମାନଙ୍କୁ ଯେପରି ମନ୍ଦିରକୁ ଯିବାକୁ ବାଧା ଦିଆଯାଉଛି, ତାହାକୁ ଦର୍ଶାଇ ଦେଇ ସଚେତନତା ସୃଷ୍ଟିପାଇଁ ଆହ୍ୱାନ ଜଣାଇ ଅଛନ୍ତି । ତେଣୁ ଏପରି ଗଳ୍ପ କେବଳ ଜଗନ୍ନାଥ ଭକ୍ତିର ନିଦର୍ଶନ ନୁହେଁ, ସମାଜସଂସ୍କାର ପାଇଁ ମଧ୍ୟ ଅଭିପ୍ରେତ ।

ଗଳ୍ପଗୁଡ଼ିକର କେନ୍ଦ୍ରରେ ଜଗନ୍ନାଥ ବିଦ୍ୟମାନ । ସେହି କେନ୍ଦ୍ରରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ ପାଇଁ କଥାକାର ସମ୍ବେଦଶୀଳ ମନୋଭାବ ପ୍ରକାଶ କରିଅଛନ୍ତି । ମଣିଷ ନେଇଛି ଏହି କେନ୍ଦ୍ରରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ମଣିଷଗଢ଼ା ଧର୍ମ ଓ ନିୟମ ଏଠି ଗୌଣ । ଜାତି ଓ ବର୍ଣ୍ଣ ଏଠି ମଧ୍ୟ ତୁଚ୍ଛ । ଜଗନ୍ନାଥ ବ୍ୟକ୍ତିର ବା ଜାତିର ସମ୍ପତ୍ତି ନୁହନ୍ତି; ସେ ସମଗ୍ର ବ୍ରହ୍ମାଣ୍ଡର ଓ ମଣିଷ ଜାତିର । ତେଣୁ ମଣିଷ ଗଢ଼ା ବନ୍ଧନ, କଟକଣା ଓ ଆଚାରକୁ ଅତିକ୍ରମ କରି ଜଗନ୍ନାଥ ବାରମ୍ବାର ଚାଲିଆସିଛନ୍ତି ଭକ୍ତ ନିକଟକୁ । ଭକ୍ତ ଆଉ ଭଗବାନଙ୍କ ଭିତରେ ମଧ୍ୟ ସ୍ଥିର ଆବଶ୍ୟକତା ନାହିଁ । କଥାକାର ପରମ ସତ୍ୟକୁ ନିଜ ଭିତରେ ଉପଲବ୍ଧି କରିବାକୁ ସମର୍ଥ ହୋଇଛନ୍ତି ଓ ଗୋଟାଏ ମଣିଷ ଜାତିର ଦୀପ୍ତି ପ୍ରକଟ କରିଛନ୍ତି । ଅବଶ୍ୟ ଏସବୁ ଗଳ୍ପରେ ଲେଖକଙ୍କର ଉତ୍କଳୀୟ ଜାତୀୟତାବୋଧ ପ୍ରକୀର୍ତ୍ତିତ, ମାତ୍ର ସେହି ଜାତୀୟତା ସଂକୀର୍ଣ୍ଣ ନୁହେଁ । ତାହା ସକଳ ମଣିଷ ଜାତିକୁ ନେଇ ଦୀପ୍ତିମନ୍ତ ।

'ନୀଳଚକ୍ରର ଆହ୍ୱାନ' ଅନ୍ୟ ଏକ ଭକ୍ତିରସାଶ୍ରିତ ଗଳ୍ପ । ଏହି ଗଳ୍ପରେ ବୃଦ୍ଧ ଚନ୍ଦ୍ରଶେଖର ମିଶ୍ରଙ୍କର ଅନନ୍ୟ ଜଗନ୍ନାଥ ଭକ୍ତି ବର୍ଣ୍ଣିତ । କେନ୍ଦୁଝରର ଅଧିବାସୀ ସେ । ଘରେ ରାଧାବିନୋଦଙ୍କର ବିଗ୍ରହ । ଆବାଲ୍ୟ ଭକ୍ତିପ୍ରାଣ । ଏକମାତ୍ର ପୁତ୍ର ଅଶୋକ କୋରାପୁଟର ଡେପୁଟି କଲେକ୍ଟର । ପତ୍ନୀ ଲଳିତା ଦେବୀଙ୍କର ହେଲା ମୃତ୍ୟୁ । ସୁଖଦୁଃଖର ସାଥୀ ପତ୍ନୀଙ୍କ ବିୟୋଗ ତାଙ୍କ ଭିତରେ ସୃଷ୍ଟିକଲା ଗଭୀର ଝଡ଼ । ସେ ଏଥର ସିଦ୍ଧାନ୍ତ କଲେ ପୁରୀକୁ ଯାଇ ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରିବେ । ସେ ଗାଡ଼ିରେ ଯିବେ ନାହିଁ । ଦଣ୍ଡପ୍ରଣାମ କରି କରି ଯିବେ । ପୁତ୍ର ଅଶୋକ ଯେତେ ମନା କଲେ ମଧ୍ୟ ସେ ମାନି ନାହାନ୍ତି । ତେଣୁ ସାଙ୍ଗରେ ଗଲା ସମ୍ପର୍କୀୟ ସଦାନନ୍ଦ । ବିରୂପା ନଦୀ ପୋଲ ଉପରେ ହେଲା ଟ୍ରକ୍ ଦୁର୍ଘଟଣା । ମୁମୂର୍ଷୁ ଅବସ୍ଥାରେ ତାଙ୍କୁ ନିଆଗଲା ଡାକ୍ତରଖାନା । ସଦାନନ୍ଦର ମନ ଭିତରେ ଦେଖା ଦେଇଛି ପ୍ରତିକ୍ରିୟା । ସେ କହିଛି – ''ହେ ଭଗବାନ ! ହେ ରାଧାବିନୋଦ, ହେ ଜଗନ୍ନାଥ, ଇଏ କ'ଣ କଲ ପ୍ରଭୁ ! ସାରା ଜୀବନ ଯିଏ ତୁମରି ସେବାରେ ଘରଦ୍ୱାର, ପୁଅ, ଝିଅ, ସ୍ତ୍ରୀ ଆଦି ସମସ୍ତଙ୍କୁ ଭୁଲି, ଶେଷରେ ତୁମରି ଦର୍ଶନ ପାଇଁ ଏତେ କଷ୍ଟସାଧ୍ୟ ସାଧନା କରି କରି ତୁମରି କ୍ଷେତ୍ରକୁ ଧାଇଁଛି ତା' ଲାଗି ପୁଣି ଏଭଳି

ଦଣ୍ଡ ? ତୁମେ ଠାକୁର ନୁହଁ ପ୍ରଭୁ, ତୁମେ ନିର୍ଦ୍ଦୟ, ତୁମେ ହୃଦୟହୀନ, ତୁମେ କାଠ ପଥର, ନିର୍ଜୀବ ଦାରୁମୂର୍ତ୍ତି । ତୁମକୁ ଆଶ୍ରା କରିବାର ପରିଣାମ କ'ଣ ଏଇଆ ?'' (୭) ମୁମୂର୍ଷୁ ଚନ୍ଦ୍ରଶେଖରଙ୍କ କର୍ଣ୍ଣକୁ ଏ ଶବ୍ଦସବୁ ସ୍ପର୍ଶ କରୁନଥାଏ । ସେ କେବଳ ଉଚ୍ଚାରଣ କରୁଥାନ୍ତି, 'ରାଧାବିନୋଦ' । କହୁଥାନ୍ତି କ୍ଷୀଣ କଣ୍ଠରେ – ''ଫୁଲମାଳ ଠାକୁରଙ୍କୁ ଦିଅ, ହେ ଜଗନ୍ନାଥ, ମୁକ୍ତି ଦିଅ ପ୍ରଭୋ ।'' (୮) ଚନ୍ଦ୍ରଶେଖରଙ୍କର ହୋଇଛି ଅସହାୟ ମୃତ୍ୟୁ ମାତ୍ର ମାନସ ସ୍ତରରେ ତାଙ୍କର ସୃଷ୍ଟି ହୋଇଛି ଜଗନ୍ନାଥଙ୍କ ପ୍ରତି ସମର୍ପିତ ଭାବ । କଥାକାର ଏହି ଗଳ୍ପରେ ଜଗନ୍ନାଥ -ଭକ୍ତିର ମାହାତ୍ମ୍ୟକୁ ଦର୍ଶାଇଅଛନ୍ତି । କେବଳ ଏହି ଗଳ୍ପ ନୁହେଁ; ଅନ୍ୟାନ୍ୟ କେତେକ ଗଳ୍ପରେ ମଧ୍ୟ ଜଗନ୍ନାଥ ଭକ୍ତିର ପରାକାଷ୍ଠା ସୂଚାଇଛନ୍ତି । ସର୍ବତ୍ର କିନ୍ତୁ ଅଛି ସାମାଜିକ ଚେତନା ଓ ମାନବିକ ସମ୍ବେଦନା । ସର୍ବତ୍ର ମଣିଷ ପ୍ରତି ପ୍ରକାଶ ପାଇଛି ତାଙ୍କ ଅନ୍ତରର ମୁଗ୍ଧ ଅଭିନନ୍ଦନ । 'ଅସ୍ପୃଶ୍ୟ ଭକ୍ତି' ଗଳ୍ପ ମଧ୍ୟ ସେହି ମୂଲ୍ୟବୋଧର ନିଦର୍ଶନ ।

- ୩ -

ମଣିଷ ଶ୍ରେଷ୍ଠ ଜୀବ । ତାର ବୁଦ୍ଧି ଅଛି, ବିବେକ ଅଛି । ଅଥଚ ସେ ବିବେକହୀନ ହୋଇଯାଉଛି । ତା' ଭିତରେ ପ୍ରକାଶ ପାଉଛି ଅନନ୍ତ କ୍ଷୁଧା । ତାର ଲାଳସା ହେଉଛି ସୁତୀବ୍ର । ନିରୀହ ପଶୁମାନଙ୍କୁ ହତ୍ୟାକରି ସେହି ମାଂସରେ ତାର ଲାଳସା ମେଣ୍ଟାଏ । ପଶୁପକ୍ଷୀଙ୍କ ଭିତରେ ଯେ ମାନବିକ ଭାବ ସ୍ପନ୍ଦିତ ତାହାକୁ ସେ ଚିନ୍ତା କରେ ନାହିଁ । ବରଂ ସେ ହିଂସ୍ର ହୁଏ, ପ୍ରମତ୍ତ ହୁଏ । କଥାକାର ନିଜେ ପଶୁପାଳନ ବିଭାଗର ନିର୍ଦ୍ଦେଶକ ଥିଲେ । ବିଦେଶ ଯାଇ ପଶୁମାନଙ୍କ ଚିକିତ୍ସା ଓ ପାଳନ ବିଷୟରେ ଅଧ୍ୟୟନ ଓ ଗବେଷଣା କରିଥିଲେ । ପଶୁପକ୍ଷୀଙ୍କୁ ଖୁବ୍ ନିକଟରେ ଦେଖିଥିଲେ । ସେମାନଙ୍କୁ ଶ୍ରଦ୍ଧା ଦେଇଥିଲେ । ସେମାନଙ୍କ ମନସ୍ତତ୍ତ୍ୱକୁ ଉପଲବ୍ଧି କରିଥିଲେ । ସେମାନଙ୍କ ନୀରବ ଦୁଃଖକୁ ମନେ ମନେ ଅନୁଭବ କରିଥିଲେ । ସେହି ଅନୁଭବକୁ ନେଇ ସେ ରଚନା କରିଛନ୍ତି 'ମୃତ୍ୟୁପଥର ଯାତ୍ରୀ', 'ଟେଷ୍ଟ ରିଲିଫ୍', 'ବଳି', 'ବିତୃଷ୍ଣା', 'ସମବେଦନା', 'ଅନ୍ୟ ଏକ ଯଶୋଦା', 'ଅନ୍ୱେଷା', 'ବିଦ୍ରୋହ', 'ପୁଣ୍ୟାତ୍ମାର ଅନୁଚିନ୍ତା' ଆଦି କେତେକ ଗଳ୍ପ ।

ମଣିଷ ତାର ଜିହ୍ୱା ଲାଳସାକୁ ଚରିତାର୍ଥ କରିବା ପାଇଁ ମାଂସ ଖାଏ । ନିରୀହ ପଶୁପକ୍ଷୀଙ୍କୁ ହତ୍ୟା କରେ । ଅଥଚ ସେ ବୁଝେ ନାହିଁ ନିରୀହ ପଶୁଙ୍କର ମାନସିକ ଅବସ୍ଥା ଓ ଅନ୍ତରର ବେଦନା । କଥାକାର ପଶୁପାଳନ ବିଶାରଦ ହୋଇଥିବାରୁ ସ୍ୱତଃ ତାଙ୍କ ଅନ୍ତରରୁ ଝରିଆସିଛି ପଶୁପକ୍ଷୀଙ୍କ ପ୍ରତି ସମବେଦନା । ସେ ଜାଣନ୍ତି ଆମ ଦେଶରେ

୭. ନୀଳଚକ୍ରର ଆହ୍ୱାନ (୧୯୯୦) ପୃ. ୧୭ ।
୮. ଅତ୍ରୈବ, ପୃ. ୧୮ ।

କଂସେଇଖାନାଗୁଡ଼ିକରେ ପଶୁମାନଙ୍କୁ ନିର୍ମମ ଭାବରେ ହତ୍ୟା କରାଯାଉଥିବା ଘଟଣା । ରାସ୍ତାକଡ଼ରେ ମଧ କଂସେଇ ପଶୁବଧ କରେ ଅମାନୁଷିକ ଭାବରେ । ଏହା କେବଳ ବୀଭତ୍ସ ବାତାବରଣ ସୃଷ୍ଟି କରେ ନାହିଁ, ମଣିଷ ହୃଦୟରୁ ହରଣ କରିନିଏ ସକଳ କୋମଳ ପ୍ରବୃତ୍ତିକୁ । ଅଥଚ ଚିକାଗୋ ସହରରେ ପଶୁହତ୍ୟା କେନ୍ଦ୍ରରେ ପଶୁମାନଙ୍କୁ ଏପରି ଅମାନୁଷିକ ଭାବରେ ହତ୍ୟା କରାଯାଏ ନାହିଁ । ବୈଜ୍ଞାନିକ ପ୍ରଣାଳୀରେ ପଶୁବଧ କରାଯାଏ । ଆମେ କିନ୍ତୁ ଧର୍ମ ନାମରେ ଠାକୁରାଣୀଙ୍କ ଆଗରେ ଲକ୍ଷ ଲକ୍ଷ ଛେଳି, ମେଣ୍ଢା, ମହିଷ ଓ କୁକୁଡ଼ାଙ୍କୁ ବଳି ଦେଉଁ । ଅର୍ଗଳି ଭିତରେ ପଶୁର ବେକକୁ ପୂରାଇ ଯେପରି ଘାତକ ହାଣେ ତାହା ଅତ୍ୟନ୍ତ ବୀଭତ୍ସ ଓ ହୃଦୟବିଦାରକ । ପଶୁଟିର ବିକଳ ଧ୍ୱନି କେବଳ ମନ୍ଦିର ଭିତରେ ପ୍ରତିଧ୍ୱନି ସୃଷ୍ଟିକରେ । ଅନ୍ୟ କାହାରି ହୃଦୟକୁ ସ୍ପର୍ଶ କରେ ନାହିଁ । ଏକଥାକୁ ଲେଖକ କେତେକ ଗଳ୍ପରେ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ପଶୁହତ୍ୟା ଜନିତ ନିର୍ମମତାକୁ ସମାଲୋଚନା କରିଅଛନ୍ତି । କେତେକ ଗଳ୍ପରେ ମାନବେତର ଚରିତ୍ର ପ୍ରତି ଅଛି ଗଭୀର ସମ୍ବେଦନା ।

'ଟେଷ୍ଟ ରିଲିଫ୍' ପଶୁଙ୍କ ପ୍ରତି ମାନବିକ ସଂବେଦନାର ଏକ ଜୀବନ୍ତ ଚିତ୍ର । ସେଦିନ ଗଳ୍ପ ନାୟକ ସ୍ତ୍ରୀ ଓ ଦୁଇଟି ଶିଶୁ ପିଲାଙ୍କୁ ସାଙ୍ଗରେ ନେଇ ଚଣ୍ଡୀଖୋଲ ବୁଲିଯାଇଥିଲେ । ସେଠାରେ ପହଞ୍ଚି ଦେଖିଲେ ମାଙ୍କଡ଼ମାନଙ୍କର ମେଳା । ପିଲା ଦୁଇଟି ଖୁସି ହୋଇଗଲେ ମାଙ୍କଡ଼ମାନଙ୍କୁ ଦେଖି । ସେମାନେ ମୁଢ଼ି କିଣି ମାଙ୍କଡ଼କୁ ଖାଇବାକୁ ଦେଲେ । ଅଧିକାଂଶ ମାଙ୍କଡ଼ ଶୀର୍ଣ୍ଣକାୟ । ବଣ ଜଙ୍ଗଲ ଥିଲା ସେମାନଙ୍କର ଆବାସ ଭୂମି । ଏବେ ଜଙ୍ଗଲ ସବୁ କଟାହୋଇ ପଦା ହେଲାଣି । ବଡ଼ ବଡ଼ ଗଛ ଆଉ ନାହିଁ । ବିଚରା ମାଙ୍କଡ଼ମାନେ ଖାଇବାକୁ ନ ପାଇ ଜୀର୍ଣ୍ଣଶୀର୍ଣ୍ଣ ହୋଇଗଲେଣି । ମୁଢ଼ି ବିଞ୍ଚିଲାବେଳେ ବଳୁଆ ମାଙ୍କଡ଼ମାନେ ସବୁ ଖାଇଦେଉ ଥାନ୍ତି । ପିଲା ମାଙ୍କଡ଼ମାନେ ବଲ ବଲ କରି ଚାହିଁ ରହିଥାନ୍ତି । ମାଙ୍କଡ଼ମାନଙ୍କୁ ମୁଢ଼ିବିକ୍ରେତା ଦୋକାନୀ ଭିକାରୀ ଓ ମାଗିଖିଆ ରୂପେ ଚିତ୍ରଣ କରିଛି । ସେମାନଙ୍କୁ ଯେତେ ଦେଲେ ମଧ ସେମାନଙ୍କ ପେଟ ପୂରେ ନାହିଁ । ପିଲା ଦୁଇଟି ବାପାଙ୍କୁ ବାଧ କରୁଥାନ୍ତି ଆଉ ମୁଢ଼ି କିଣି ଛୋଟ ଛୋଟ ମାଙ୍କଡ଼ମାନଙ୍କୁ ଦେବାପାଇଁ । ସେମାନେ ପିଲା ହୋଇଥିବାରୁ ପିଲାମାଙ୍କଡ଼ଙ୍କ ପ୍ରତି ସହାନୁଭୂତି ପ୍ରକାଶ କରୁଥାନ୍ତି । ଗଳ୍ପ ନାୟକ ବାଧ ହୋଇ ମୁଢ଼ି କିଣି ମାଙ୍କଡ଼ମାନଙ୍କୁ ଦେଲେ । ତୁଗୁ ଓ ମାମୁନି ପିଲାମାଙ୍କଡ଼ଙ୍କ ମୁଢ଼ିଖିଆ ଦେଖି ଖୁସି ହେଲେ । ଗଳ୍ପ ନାୟକଙ୍କ ପରି ଛୋଟ ଛୋଟ ମାଙ୍କଡ଼ମାନଙ୍କ ପ୍ରତି ବାତ୍ସଲ୍ୟ ମମତା ପ୍ରକାଶ କଲେ । ଏହି ଗଳ୍ପରେ ମାନବେତର ଚରିତ୍ର ମାଙ୍କଡ଼ଙ୍କ ପ୍ରତି ପ୍ରକାଶ ପାଇଛି ସମ୍ବେଦନା ଓ ସହାନୁଭୂତି । 'ବଳି' ଗଳ୍ପରେ ଲେଖକ ଠାକୁରାଣୀଙ୍କ ପାଖରେ ପ୍ରଦାନ କରାଯାଉଥିବା ବଳି ପ୍ରଥାକୁ ସମାଲୋଚନା କରିଅଛନ୍ତି । ଆପଣାର ସ୍ୱାର୍ଥ ପାଇଁ ମଣିଷ ଠାକୁରାଣୀଙ୍କ ପାଖରେ ଛେଳି ମେଣ୍ଢା ଇତ୍ୟାଦି ବଳିଦିଏ । କେହି

କେବେ ବୁଝେ ନାହିଁ ଠାକୁରାଣୀ ଏପରି ବଳି ଚାହାନ୍ତି ବା ନାହିଁ । ସେ ମାଆ ହୋଇ ସନ୍ତାନର ରକ୍ତପାନ କରିବେ କିପରି ? ଲେଖକ ଏହି ତତ୍ତ୍ୱର ଅବତାରଣା ପାଇଁ ହଟ ବେହେରାର ଝିଅ କନକ ପ୍ରସଙ୍ଗର ଅବତାରଣା କରିଛନ୍ତି । କନକ କେତେ ଆଦରରେ ଛେଳି ଛୁଆଟିଏ ପାଳି ବଢ଼ାଇଥିଲା । ଅଥଚ ତାର ବାପା ସେହି ଛେଳିକୁ ବଳି ଦେବାପାଇଁ କୁତାମଚଣ୍ଡିଙ୍କ ପାଖକୁ ଲୁଚାଇ ନେଇଗଲା । ଛେଳିକୁ ହାଣିବାକୁ ଉଦ୍ୟମ କଲାବେଳେ ସେ ଡେଇଁପଡ଼ି ପଳାଇଗଲା । ତାକୁ ଗୋଡ଼େଇ ଗୋଡ଼େଇ ନିର୍ମମ ଭାବରେ ହାଣିଦିଆଗଲା । ଏ ଦୃଶ୍ୟ ଦେଖି କନକର ଚେତା ବୁଡ଼ିଗଲା । ଡାକ୍ତରଖାନାରେ ତାର ଚେତା ଫେରିଲା । ହଟ ବେହେରାର ହେଲା ପରିବର୍ତ୍ତନ । ଠାକୁରାଣୀଙ୍କ ପାଖରେ ଆଉ କେବେ ସେ ପଶୁ ବଳି ଦେବ ନାହିଁବୋଲି ଶପଥ କଲା । ପରେଶ ବାବୁ ହଟକୁ ବୁଝାଇଦେଲେ - 'ଠାକୁରାଣୀଙ୍କୁ ଭକ୍ତିରେ ପୂଜା କର । ମାତ୍ର ଜନ୍ତୁମାରି ତାର ରକ୍ତ ଦେଲେ ଯେ ଠାକୁରାଣୀ ସନ୍ତୁଷ୍ଟ ହେବେ ଏଭଳି ଚିନ୍ତା କରିବା ଠିକ୍ ନୁହେଁ । ଯିଏ ଜଗତକୁ ସୃଷ୍ଟି କରିଛି ସେ ତାରି ସୃଷ୍ଟିର କୋଟି କୋଟି ଜୀବଜନ୍ତୁମାନଙ୍କ ଭିତରୁ ଗୋଟାଏ ଛେଳି ବା ମେଣ୍ଢାର ରକ୍ତ ପିଇ ଯେ ଖୁସିହେବ ତାହା ଅଜ୍ଞାନ ଓ ମୂର୍ଖମାନେ ହିଁ ଚିନ୍ତା କରିବେ । ସୃଷ୍ଟିକର୍ତ୍ତା ଈଶ୍ୱର ବା ଈଶ୍ୱରୀଙ୍କୁ ସାଧାରଣ ମଣିଷ ରୂପେ ଭାବିବା ନିର୍ବୋଧତା । ଆମିଷ ଭୋଜୀ ଲୋକଙ୍କ ପାଇଁ ପ୍ରତିଦିନ ଲକ୍ଷ ଲକ୍ଷ ଛେଳି ମେଣ୍ଢା ଗାଈ ବଳଦ ହଣା ହେଉଛନ୍ତି । ଏହା ନିର୍ମମତା, ଅମାନୁଷିକତା । ଗଳ୍ପ ନାୟକଙ୍କର ବକ୍ତବ୍ୟ 'ଠାକୁରାଣୀଙ୍କ ବିଜେସ୍ଥଳୀ ଉପରେ କଂସେଇଖାନା ସୃଷ୍ଟି କଲେ କ'ଣ ସେଥିରେ ତାଙ୍କର ପୂଜା ଅର୍ଚ୍ଚନା ହେବ ! ଠାକୁରାଣୀଙ୍କୁ ଭକ୍ତି କର, ତାଙ୍କ ନିକଟରେ ଶରଣାଗତ ହୁଅ, ସେ ତୁମ ପ୍ରତି ସଦୟ ହେବେ ଓ ମଙ୍ଗଳ କରିବେ । (୯) ଦେବୀ ମନ୍ଦିରରେ ପଶୁବଳି ପ୍ରଥା ବିରୋଧରେ ଏହି ଗଳ୍ପ ଏକ ଆବେଗିକ ଆହ୍ୱାନ । 'ବିଦ୍ରୋହ' ଗଳ୍ପ ମଧ୍ୟ ସେହି ବଳିପ୍ରଥା ପ୍ରତି ଏକ ମୌନ ପ୍ରତିବାଦ । ଗଳ୍ପ ନାୟକ ଯାଇଥିଲେ ଆସାମ ପତ୍ନୀଙ୍କ ସହିତ । ସେମାନେ ଡକ୍‌ଟର ଭୂୟାଁଙ୍କ ଅତିଥି ହୋଇ କାମାକ୍ଷା ପୀଠକୁ ଯାଇଥିଲେ । ସେଠାରେ ସେମାନେ ଦେଖିଲେ ଛେଳି ମେଣ୍ଢା ଗଞ୍ଜା କୁକୁଡ଼ା ପାରା ମଇଁଷି ଆଦି ମହଜୁଦ । ମାନସିକ୍ କରିଥିବା ଲୋକେ ଏସବୁ କିଣିନେଇ ଦେବୀଙ୍କ ପାଖରେ ବଳି ଦିଅନ୍ତି । ଅର୍ଗଳୀ ପାଖରେ ରକ୍ତର ସ୍ରୋତ ଦେଖି ଗଳ୍ପନାୟକଙ୍କ ପତ୍ନୀ ଶିହରିତ ହୋଇ ଉଠିଛନ୍ତି । ଈର୍ଷା ଦ୍ୱେଷ ହିଂସା କ୍ଳିଷ୍ଟ ମଣିଷର ସଂକୀର୍ଣ୍ଣ ସ୍ୱାର୍ଥଲାଗି ବଳି ପାଇଁ ବନ୍ଧା ହୋଇ ରହିଥିବା ପଶୁମାନଙ୍କ ନୟନରେ ଦେଖିଛନ୍ତି କାରୁଣ୍ୟ । ତାଙ୍କ ଭିତରେ ସୃଷ୍ଟି ହୋଇଛି ତୀବ୍ର ପ୍ରତିକ୍ରିୟା । ସେ ପ୍ରଶ୍ନ କରିଛନ୍ତି 'ରକ୍ତର ନୈବେଦ୍ୟ ବାଢ଼ି ଯଦି ମନୁଷ୍ୟ ମାଆର ଅର୍ଚ୍ଚନା କରିବାକୁ ଚାହେଁ ତେବେ ସେ ନିଜ ଦେହରୁ ରକ୍ତ କେତେବୁନ୍ଦା ନିଗାଡ଼ି ଦେବାକୁ ଭୟ କରେ କାହିଁକି ? (୯) ସ୍ୱର୍ଣ୍ଣଲତାଙ୍କ ଆଖିରେ

୯. ନୀଳଚକ୍ରର ଆହ୍ୱାନ - ବିଦ୍ରୋହ, ପୃ. ୫୩ ।

ସ୍ୱାର୍ଥପର ମଣିଷ ଜାତି ବିରୋଧରେ ଫୁଟିଉଠିଲା ଅଭିଯୋଗ । ସେ ଦେବୀ ଦର୍ଶନ ନ କରି ଫେରିଆସିଛନ୍ତି । ଏହା କଥାକାରଙ୍କ ପ୍ରତ୍ୟକ୍ଷ ଅନୁଭୂତିର ଏକ ସଫଳ ପରିପ୍ରକାଶ ।

'ବିତୃଷ୍ଣା' ଗଳ୍ପ ପଶୁଙ୍କ ପ୍ରତି ଶିଶୁ ହୃଦୟର ଏକ ସହାନୁଭୂତି ପୂର୍ଣ୍ଣ ଅଭିବ୍ୟକ୍ତି । ସେଦିନ ଜେଜେଙ୍କ ସହିତ ନାତି, କାବୁଲି ଯାଇଥିଲା ମାଂସ ଦୋକାନକୁ ମାଂସ ପାଇଁ । ସେଠାରେ ସେ ଦେଖିଲା ଗୋଟାଏ ଛେଳିକୁ ମାଡ଼ିବସି କଂସେଇ ତାର ବେକକୁ କାଟିଦେଲା । ସେତେବେଳେ ମରଣମୁଖୀ ଛେଳିର ବିକଳ ବିଳାପ କାବୁଲିର ହୃଦୟକୁ ବିଦୀର୍ଣ୍ଣ କରିଦେଲା । ସେ କାନ୍ଦି କାନ୍ଦି ଭୟରେ ଦଉଡ଼ି ପଳାଇ ଆସିଲା ଘରକୁ । ଜେଜେ ମାଂସ ନେଇ ଘରକୁ ଆସିଲେ । ବୋଉ ସେହି ମାଂସକୁ ଥାଳିରେ ଅଜାଡ଼ି ଦେଲା ମାତ୍ରେ କାବୁଲି ଚିର୍ ଚିର୍ ହୋଇ ପାଟି କରି କହିଲା "ବୋଉ, ତୁ ଜେଜେଙ୍କ ବ୍ୟାଗ ଧରିଛୁ, ଫୋପାଡ଼ି ଦେ । ସେଥିରେ ମାଉଁସ ଅଛି । ସେଇ ଛେଳିର ମାଉଁସ । କାଳିଆ ଲୋକଟା ତାକୁ ମାଡ଼ି ବସିଲା । ତାର ହାତ ଗୋଡ଼ ବାନ୍ଧି ଦେଲା । ଛେଳି କାନ୍ଦୁଥାଏ । ସେ କାଳିଆ ଲୋକ ତାର ବେକ କାଟୁଥାଏ । ଖାଲି ରକତ ବୋହୁଥାଏ । ଛେଳି କଲବଲ ହୋଇ ଡାକୁଥାଏ । ଜେଜେ ସେ କାଳିଆ ଲୋକକୁ ଗାଳିଦେଲେ ନାହିଁ । ତାକୁ ମାରିଲେ ନାହିଁ । ସେଇ ଛେଳି ମାଉଁସ ଆଣିଛନ୍ତି । ଫୋପାଡ଼ି ଦେ ।" (୧୦) କାବୁଲି ଛୋଟ ପିଲା ମାତ୍ର ତାର ସମ୍ବେଦନା ପଶୁପ୍ରତି । ଯେପରି ଭାବରେ ଛେଳିଟିକୁ କଂସେଇ ହତ୍ୟା କଲା ତାହା କାବୁଲିକୁ କ୍ଷୁବ୍ଧ କଲା । ସେ ପ୍ରତିବାଦ କଲା ତା' ବୋଉ ପାର୍ଶ୍ୱରେ ସେହି ମାଂସ ନ ଖାଇବା ପାଇଁ । ତା' କଥାରେ ବୋଉର ହୋଇଛି ପରିବର୍ତ୍ତନ । ସେ ମାଂସ ନ ଖାଇବାକୁ ଶପଥ କରିଛି । ଜେଜେ ମଧ ମାଂସ ବ୍ୟାଗକୁ ଫିଙ୍ଗି ଦେଇଛନ୍ତି । ପଶୁତ୍ୱ ଉପରେ ଦେବତ୍ୱର ହେଲା ବିଜୟ । ଲେଖକଙ୍କ ସମ୍ବେଦନଶୀଳ ହୃଦୟର ଏହା ଏକ ମନ୍ମୟ ଆତ୍ମଲିପି । 'ସଂବେଦନା' ଠିକ୍ ଅନୁରୂପ ଅନ୍ୟ ଏକ ଗଳ୍ପ । ଓକିଲ ରାଜେନ୍ଦ୍ର ବାବୁ ନୂଆ ଘରକୁ ଆସିଲେ ସବୁ ଜିନିଷ ପତ୍ର ନେଇ । ସ୍ତ୍ରୀଙ୍କ ସହିତ ମାତୁଲି, ପିଙ୍କୁ ଓ ବାପୁ ପିଲା ତିନୋଟି ଆସିଲେ । ବାପୁ ଦାଣ୍ଡ ପିଣ୍ଡାରେ ବସିଥିଲାବେଳେ ଦେଖିଲା ଜଣେ ଲୋକ ଟୋକେଇରେ ଗୋଟିଏ ଛେଳିକୁ ଭର୍ତ୍ତି କରି ସାଇକେଲରେ ବାନ୍ଧି ନେଇଯାଉଥାଏ । ଛେଳିଟି ବିକଳରେ ବୋବାଉ ଥାଏ । ବାପୁ ଦଉଡ଼ି ଦଉଡ଼ି ମାତୁଲି ପାଖକୁ ଆସି କହିଲା "ଦେଈଲୋ, ଛେଳିକୁ ବାଇଆ ନେଇଗଲା, ଛେଳି କାନ୍ଦୁଛି ।" (୧୧) ତାର ଏଇ ଭୟାର୍ତ୍ତ ଅବସ୍ଥାକୁ କେହି ବୁଝିଲେ ନାହିଁ । ବରଂ ତାକୁ ଆକଟ କଲେ ଦାଣ୍ଡପିଣ୍ଡାକୁ ନ ଯିବା ପାଇଁ । ସେଦିନ ସେ ମାଂସ ତରକାରୀ ସ୍ପର୍ଶ କଲା ନାହିଁ । ରାତି ପାହି ପାହି ଆସୁଥାଏ । ପିଙ୍କୁ ଶୁଣିଲା ଛେଳିର ବିକଳ ବୋବାଳି । ଉଭୟେ ପିଙ୍କୁ ଓ ବାପୁ ଝରକା ଖୋଲି ଦେଖିଲେ କଂସେଇ

୧୦. ସାଲବେଗର ଅଶ୍ରୁ - ବିତୃଷ୍ଣା, ପୃ. ୮୫-୮୬ ।
୧୧. କହେ ସାଲବେଗ ହୀନ, ସମବେଦନା, ପୃ. ୪

ସାଇକେଲରେ ଛେଳିକୁ ବାନ୍ଧି ନେଉଥିବା ଦୃଶ୍ୟ । ପିଙ୍କୁ ମଧ୍ୟ କଂସେଇକୁ ବାଇଆ ବୋଲି ଭାବି ଭୟ କରିଯାଇଛି । ବାପାଙ୍କ ସହିତ ସେ ସ୍କୁଲକୁ ଗଲା ବେଳେ ମାଂସ ଦୋକାନ ପାଖରେ ଛେଳିକୁ ତଳେ ପକାଇ କଂସେଇ କାଟୁଥିବା ଦୃଶ୍ୟ ଦେଖି ଭୟରେ ଘରକୁ ଦଉଡ଼ି ଚାଲିଆସିଲା । ସେ ମଧ୍ୟ ମାଂସ ତରକାରୀ ଖାଇଲା ନାହିଁ । ପିଲାଙ୍କ ହୃଦୟରେ ପଶୁଙ୍କ ପ୍ରତି ଥିବା ମମତାକୁ ଗଳ୍ପନାୟକ ଉପଲବ୍ଧି କରିଛନ୍ତି । ଏ ଗଳ୍ପ ମଧ୍ୟ ହିଂସା ଉପରେ ପ୍ରେମର ବିଜୟକୁ ସୂଚାଇଦିଏ ।

'ଅନ୍ୟ ଏକ ଯଶୋଦା' ଗଳ୍ପ ଦୁଇଟି ଶ୍ୱେତାଙ୍ଗ ଯୁବତୀଙ୍କର ଘୁଷୁରୀ ଶାବକ ପ୍ରତି ଶ୍ରଦ୍ଧାର ମନୋଜ୍ଞ ପ୍ରକାଶ । 'ବିଯୁକ୍ତାକ୍ଷର' ଗଳ୍ପ ମଧ୍ୟ ଗଳ୍ପନାୟକ ଓ ଗଳ୍ପନାୟିକାଙ୍କ ଚିନ୍ତାଧାରା ମାଧ୍ୟମରେ ନିର୍ମମ ଭାବରେ ପଶୁବଧ କରାଯିବା ପ୍ରତି ଏକ ମୌନ ପ୍ରତିବାଦ । ସ୍ୱର୍ଣ୍ଣଲତା ମାଂସ ଦୋକାନ ପାଖରେ ଛିଡ଼ା ହୋଇ ଛେଳିମାନଙ୍କର ସାଶ୍ରୁଳ ଚାହାଣୀ, ଦୟନୀୟ ରୂପ, ବଂଚିବା ପାଇଁ ଆକୁଳ ପ୍ରାର୍ଥନା ଦେଖି ପରିବର୍ତ୍ତିତ ହୋଇଯାଇଛନ୍ତି । 'ପୁଣ୍ୟାତ୍ମାର ଅନୁଚିନ୍ତା' ଗଳ୍ପରେ ଲେଖକ ଦେଖାଇ ଦେଇଛନ୍ତି ପାଶ୍ଚାତ୍ୟ ଦେଶରେ ପଶୁପାଳନର ମହନୀୟତା ବିଷୟରେ । ଗୋରୁମାନଙ୍କର ଯତ୍ନ ସେ ଦେଶରେ ଯେପରି ନିଆଯାଏ ତାହା ଏଥିରେ ସୂଚାଇ ଦିଆଯାଇଛି । ସ୍ନେହ ଆଦରରେ ହିଂସ୍ର ପଶୁ ମଧ୍ୟ ବୋଲମାନେ । ପ୍ରହାର ଓ ତାଡ଼ନା ଦ୍ୱାରା ତାର ହିଂସ୍ରତା ଆହୁରି ବଢ଼େ । ଡେଭିଡ଼ର ପଶୁଙ୍କ ପ୍ରତି ମମତା ମାଧ୍ୟମରେ ଲେଖକ ଏ କଥା ଉଲ୍ଲେଖ କରି ଆମ ଦେଶରେ ସେହିପରି ଗୋପାଳନ ବିଷୟରେ ସଂକେତ ଦେଇଅଛନ୍ତି । 'ଅନ୍ୱେଷା' ଗଳ୍ପରେ ଗଳ୍ପ ନାୟକଙ୍କର ଘରଚଟିଆ ପ୍ରତି ପ୍ରକାଶ ପାଇଛି ମମତା । ଘରଚଟିଆ ପକ୍ଷୀ ଦଂପତିଙ୍କର ଶିଶୁ ଦୁଇଟିକୁ ଫିଙ୍ଗି ଦିଆଯାଇଥିବାରୁ ସେମାନେ କିପରି ଘର ଭିତରକୁ ଆସି ଦର୍ପଣରେ ସେମାନଙ୍କର ପ୍ରତିଫଳିତ ରୂପକୁ ଦେଖି ଆପଣାର ସନ୍ତାନ ଭାବି ଚଂଚୁରେ ଆଘାତ କରିଛନ୍ତି ତାହା ଗଳ୍ପ-ନାୟକଙ୍କୁ ଚକିତ କରିଦେଇଛି ।

କଥାକାର ଯେଉଁସବୁ ଗଳ୍ପରେ ମାନବେତର ଚରିତ୍ରକୁ ଉପଜୀବ୍ୟ କରିଛନ୍ତି ସେସବୁ ଗଳ୍ପ ହୋଇଛି ରସୋତ୍ତୀର୍ଣ୍ଣ । ଏତାଦୃଶ ଗଳ୍ପମାନଙ୍କରେ ପଶୁପକ୍ଷୀଙ୍କ ପ୍ରତି ତାଙ୍କର ପ୍ରକାଶ ପାଇଛି ଗଭୀର ସମ୍ବେଦନା । ଏସବୁ ଗଳ୍ପରେ ସେ ଗୁରୁତ୍ୱ ଦେଇଛନ୍ତି ମଣିଷର ପରିବର୍ତ୍ତନ ଉପରେ । ହିଂସା ଉପରେ ପ୍ରେମ, ପଶୁତ୍ୱ ଉପରେ ମାନବତ୍ୱର ଉତ୍ତରଣ ଏସବୁ ଗଳ୍ପର ଅନ୍ତର୍ବାଣୀ ।

-୪-

ସାମଗ୍ରିକ ଭାବରେ ବିଚାର କଲେ ଡକ୍ଟର ମହାନ୍ତିଙ୍କ ଗଳ୍ପଜଗତ ମାନବ-ବେଦନାର ମୁଗ୍ଧ ଗାୟତ୍ରୀ । ଯେଉଁସବୁ ଗଳ୍ପରେ ପାଶ୍ଚାତ୍ୟ ବସ୍ତୁବାଦୀ ସମାଜର ମଣିଷମାନଙ୍କର

ଧର୍ମାନ୍ତର ଗ୍ରହଣ, କୃଷ୍ଣ-ଚେତନା ପ୍ରତି ଆକର୍ଷଣ, ଭାରତବର୍ଷକୁ ଶାନ୍ତି ପାଇବା ପାଇଁ ଆଗମନ, ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଆଗ୍ରହ ପ୍ରକାଶ ପାଇଅଛି ସେସବୁ ସେହି ମାନବିକ ଭାବଭାବନାର ମର୍ମଲିପି । ଯେଉଁ ଗଳ୍ପଗୁଡ଼ିକରେ ପଶୁ ପକ୍ଷୀଙ୍କ ଚିତ୍ରଣ ଅଛି ସେସବୁ ମଧ୍ୟ ମାନବିକ ସଂବେଦନାରେ ଋଦ୍ଧିମନ୍ତ । ଏହା ବ୍ୟତୀତ ସେ ଅନେକ ଗଳ୍ପ ରଚନା କରିଛନ୍ତି ଯାହା ଆମର ସାମାଜିକ ଜୀବନର ନାନା ଦିଗକୁ ବ୍ୟଂଜିତ କରିଥାଏ । ତାହାରି ମଧ୍ୟରେ ସେ ମାନବିକତା ପ୍ରତି ସଂକେତ ଦେଇଥିବା ଲକ୍ଷ୍ୟ କରାଯାଏ । ଏହିପରି ଗୋଟିଏ ଗଳ୍ପ 'କଳିଙ୍ଗ ଶିଳ୍ପୀ' ଯେଉଁଥିରେ ଦାରିଦ୍ର୍ୟ ଭିତରେ ଶିଳ୍ପୀର ସ୍ୱାଭିମାନ ବ୍ୟଂଜିତ । ଶିଳ୍ପୀଟି ପଥର ଚକି ତିଆରି କରି ମୁଣ୍ଡରେ ମୁଣ୍ଡେଇ ଘର ଘର ବୁଲି ବିକ୍ରୟ କରି ଜୀବିକା ନିର୍ବାହ କରେ । ଏକଦା ସେ ପହଞ୍ଚିଛି ଗଳ୍ପନାୟକଙ୍କ ଘରେ । ଖରାଦିନ ମଧ୍ୟାହ୍ନ ସମୟ । ପଥର ଚକିକୁ ମୁଣ୍ଡରୁ ଓହ୍ଲାଇ ପିଣ୍ଡାରେ ବସି ଢାଳେ ପାଣି ଢକ ଢକ କରି ପିଇଦେଲା । ଗଳ୍ପ ନାୟକଙ୍କ ପତ୍ନୀ ସାବିତ୍ରୀ ଦେବୀ ଶିଳ୍ପୀର ଜୀର୍ଣ୍ଣ ଶରୀରକୁ ଦେଖି ସମ୍ବେଦନଶୀଳ ହୋଇଉଠିଲେ । ସେ ତା ପାଖରେ ବସି ଦୁଃଖସୁଖ ହେଲେ । ତାର ପରିବାର ଓ ଦୁଃସ୍ଥ ଅବସ୍ଥା ବିଷୟରେ ଅବଗତ ହେଲେ । ତାକୁ ଖାଇବାକୁ ଦେଲେ ଓ ଦାମ୍ ଦେଇ ପଥର ଚକି ହଳକ ରଖିଲେ । ଏଥିରେ ଶିଳ୍ପୀର ଦାରିଦ୍ର୍ୟ ପ୍ରତି ସହାନୁଭୂତି ପ୍ରକାଶ ପାଇଅଛି । ଅନ୍ୟପକ୍ଷରେ କଳିଙ୍ଗର ଶିଳ୍ପୀ, ଯିଏ ପଥର ଦେହରେ ଭାଷା ଫୁଟାଏ, ଯିଏ କେତେ କେତେ କୀର୍ତ୍ତିର ନିର୍ମାତା, ତାର ଦୁଃସ୍ଥ ଅବସ୍ଥା ପ୍ରତି ଲେଖକ ପାଠକୀୟ ଶ୍ରଦ୍ଧା ସୃଷ୍ଟିପାଇଁ ଇଙ୍ଗିତ ଦେଇଥିବା ମନେ ହୁଏ । 'ଶୁଭ ସଙ୍କେତ' ଗଳ୍ପ ମଧ୍ୟ ମାନବିକ ସଂବେଦନାର ଏକକ ରମ୍ୟ ସୃଷ୍ଟି । ଏହି ଗଳ୍ପରେ ଶବ ଶୋଭାଯାତ୍ରାକୁ ଦେଖି ଭାଇ ଶୁଭ ସଂକେତ କହୁଥିଲାବେଳେ ଭଉଣୀ ସେହି ମୃତ ବ୍ୟକ୍ତିର ପିଲା ତିନୋଟିର କରୁଣ କ୍ରନ୍ଦନକୁ ଦେଖି ଦୁଃଖରେ ଭାଙ୍ଗିପଡ଼ିଛି । ତା' ଭିତରେ ପିତୃହୀନ ପିଲା ତିନୋଟିର କରୁଣ ଅବସ୍ଥା ସୃଷ୍ଟି କରିଛି ଗଭୀର ସଂବେଦନା ଓ ବାତ୍ସଲ୍ୟବୋଧ ।

'ଅତୃପ୍ତ ସୁରାର ତୃଷ୍ଣା' ଗଳ୍ପରେ କଥାକାର ସରକାରୀ ଚାକିରିଆଙ୍କ ପ୍ରକୃତି ପ୍ରତି ତୀର୍ଯ୍ୟକ ଦୃଷ୍ଟିପାତ କରିଛନ୍ତି । ଏଥିରେ ସେ କହନ୍ତି — 'ଆଜିକାଲି ଯୁଗରେ ସରକାରୀ ଚାକିରିଆମାନଙ୍କର କାର୍ଯ୍ୟଦକ୍ଷତା ମାନେ କିଛି ନାହିଁ । ସ୍ଥାନୀୟ ନେତାମାନଙ୍କ ଉପରେ କାହାର କେତେ ହାତ ଅଛି ସେଇଟା ହେଲା ସବୁଠୁ ବଡ଼ କଥା ।' (୧୨) ସରକାରୀ ଚାକିରିରେ ଦକ୍ଷତା କହିଲେ ଉପରିସ୍ଥ ହାକିମ ଓ ମନ୍ତ୍ରୀ ତଥା ନେତାଙ୍କୁ ତୋଷାମୋଦ କରିବା, ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅସଦ୍ ଉପାୟ ଅବଲମ୍ବନ କରିବା । କାର୍ଯ୍ୟରେ ଦକ୍ଷତା ଓ ସଚ୍ଚୋଟତା ଦେଖାଇଲେ ଦୂରସ୍ଥାନକୁ ବଦଳି ହୁଏ । ନାନା ଭାବରେ ହଇରାଣ

---

୧୨. କହେ ସାଲବେଗ ହୀନ, ଅତୃପ୍ତ ସୁରାର ତୃଷ୍ଣା - ପୃ. ୨୩ ।

ହେବାକୁ ହୁଏ । ଗଳ୍ପନାୟକ ବଦଳି ହୋଇ ଝାରସୁଗୁଡ଼ାଯାଇ ଗୋଟିଏ ଘରଭଡ଼ା ନେଇ ରହିଛନ୍ତି । ସ୍ତ୍ରୀ, ପିଲା ଓ ବୁଢ଼ା ବାପା ମଧ ସାଙ୍ଗରେ ଆସିଲେ । ଘର ମାଲିକ ମଦ୍ୟପ । ସେ ମଦ୍ୟପାନ କରି ଅଶ୍ଳୀଳ ଭାଷାରେ ଗାଳିଗୁଲଜ କରେ । ବୁଢ଼ା ବାପା ମଫସଲର ଲୋକ । ସହରର ଏଭଳି ପରିବେଶ ପ୍ରତି ତାଙ୍କର ଘୃଣା ହୋଇଛି । ସେ କହନ୍ତି –'ଏଇଟା ହିଁ ସହରୀ ଜୀବନର ସଂସ୍କାରହୀନ, ପରଂପରାହୀନ, ଜୀବନ ଧାରାର ଏକ ଚିତ୍ର । ଗାଁରେ ଆମର ପାଇଖାନା ନ ଥାଇପାରେ, ପାଣି ପାଇପ କିମ୍ବା ରାସ୍ତାରେ ଆଲୁଅ ନଥାଇ ପାରେ, ମାତ୍ର ଆମର ପାରିବାରିକ ଜୀବନରେ ମଦ ଭଳି ଘୃଣ୍ୟ ପଦାର୍ଥର ସ୍ଥାନ ନାହିଁ । ମଦୁଆମାନଙ୍କ ଭଳି ହୀନପ୍ରକୃତିର ଲୋକମାନଙ୍କୁ ଗାଆଁର ଲୋକେ ଘୃଣା ଚକ୍ଷୁରେ ଦେଖନ୍ତି । ଗାଁ ଭିତରେ ସମସ୍ତେ ତୁମର ନିଜ ଲୋକ ।' (୧୩) ବୁଢ଼ା ତା'ପର ଦିନ ଗାଁକୁ ଚାଲିଗଲେ । ସେଦିନ ରାତିରେ ଘରମାଲିକ ପୁଣି ମଦପିଇ ମାତାଲ ଅବସ୍ଥାରେ ଆସି କବାଟ ବାଡ଼େଇ ଅଶ୍ଳୀଳ ଭାଷାରେ ଗାଳିଗୁଲଜ କଲା । ତା' ପୁଅ ଦୁଇଜଣ ଆସି ତାକୁ ଟାଣିଟାଣି ନେଇଗଲେ । ଚାରି ଛଅମାସ ପରେ ସରକାରୀ କ୍ୱାଟର ମିଳିବାରୁ ଗଳ୍ପନାୟକ ସପରିବାର ସେଠାକୁ ଚାଲିଗଲେ । ବୁଢ଼ା ବାପା ମଧ ଗାଁରୁ ଆସିଲେ । ଏଣେ ଘରମାଲିକର ବଡ଼ ପୁଅ ମୋଟର ସାଇକେଲ ଦୁର୍ଘଟଣାରେ ମୃତ୍ୟୁବରଣ କଲା । ତାଙ୍କ ଘରେ କାନ୍ଦବୋବାଳି ପଡ଼ିଲା । ଗଳ୍ପନାୟକଙ୍କ ପତ୍ନୀ ତାଙ୍କ ଘରକୁ ଯାଇ ସମବେଦନା ଜଣାଇଲେ । ଏ ଗଳ୍ପରେ ମାନବିକ ସମ୍ବେଦନ ସହିତ ମଦ୍ୟପାନ ପ୍ରତି ଘୃଣା ପ୍ରକାଶ ପାଇଅଛି । ଆମ ସାମାଜିକ ଜୀବନକୁ ମଦ୍ୟ କିପରି ନଷ୍ଟ କରିଦେଉଛି ତାହାର ଚିତ୍ର ଏହି ଗଳ୍ପରେ ଜୀବନ୍ତ ହୋଇଉଠିଛି ।

'ମଦ୍‌ଭକ୍ତା ଯତ୍ର ଗାୟନ୍ତି' ଗଳ୍ପ ମାନବିକ ସମ୍ବେଦନାର ଅନ୍ୟ ଏକ ଚିତ୍ର । ପ୍ରତିଦିନ ପୋଷ୍ଟ ଅଫିସକୁ ଆସି ହାତ ବଢ଼େଇ ଚାରଣା ପଇସା ନେଇ ସେଥିରେ ଯାହାଟିକେ ଖାଇ ଜୀବନ ବଂଚୁଥିବା ଜୀର୍ଣ୍ଣଶୀର୍ଣ୍ଣ ମଣିଷଟି ଭିତରେ ଯେ ଈଶ୍ୱରତ୍ୱ ବିଦ୍ୟମାନ ତାହାକୁ ପୋଷ୍ଟମାଷ୍ଟର ଉପଲବ୍ଧି କରିଛନ୍ତି । ମାନବ ସେବାହିଁ ମାଧବ ସେବା - ଏହି ଗଳ୍ପର ଅନ୍ତର୍ବାଣୀ । 'ପିତରି ପ୍ରୀତିମାପନ୍ନେ' ଗଳ୍ପ ମଧ ମାନବ-ବନ୍ଦନାର ଭାବକୁ ବ୍ୟକ୍ତ କରେ । ନଦିଆ କଲିକତାରେ ଚାକିରି କରେ । ଘରକୁ ପଇସା ପତ୍ର ପଠାଏ ନାହିଁ । ନଦିଆ ମାଆ କଷ୍ଟରେ ଜୀବନ ବିତାଏ । ତାର ଧରମଭାଇ ବିଶ୍ୱମ୍ଭର ଦାସ ନଦିଆକୁ ବାହା କରାଇ ଦେଲେ ସୁଲୋଚନା ସହିତ । ନଦିଆ କିନ୍ତୁ କଲିକତା ଯାଇ ଘରକୁ ଆସିଲା ନାହିଁ । ବିଶ୍ୱମ୍ଭର ସୁଲୋଚନାକୁ ଚାକିରି ଖଣ୍ଡେ କରେଇ ଦେଲେ । ସୁଲୋଚନା ଏଥର ସ୍ୱତନ୍ତ୍ରା । ବାପାକୁ ସେ ନିଜ ପାଖରେ ନରଖି ପୁରୀ ବଡ଼ ଦାଣ୍ଡକୁ ପଠାଇ ଦେଲା । ଏହି ଗଳ୍ପରେ ସ୍ୱତନ୍ତ୍ରା ନାରୀ ଓ କକ୍ଷଚ୍ୟୁତ ଯୁବକର ଚିତ୍ର ବାସ୍ତବଧର୍ମୀ । ଏପରି ଘଟଣା ଯେ ଆମ ସମାଜରେ

୧୩. ଅତ୍ରୈବ - ପୃ. ୨୬

ବିରଳ ନୁହେଁ, ତାହା ଏଥିରେ ବ୍ୟଂଜିତ । ଆଧୁନିକ ସହରୀ ସଭ୍ୟତାରେ ଉଚ୍ଚ ଶିକ୍ଷିତ ଯୁବକମାନଙ୍କର ନୈତିକ ସ୍ଖଳନ ଓ ସ୍ୱେଚ୍ଛାଚାରିତା 'ର୍ୟାଗିଙ୍ଗ' ଗଳ୍ପରେ ବର୍ଣ୍ଣିତ । ଆଇ. ଆଇ. ଟି.ରେ ଅଧ୍ୟୟନ କରୁଥିବା ଯୁବକ ଦୀପୁ ପ୍ରତି ଉପର ଶ୍ରେଣୀର ଛାତ୍ରମାନଙ୍କର ବୀଭତ୍ସ ର୍ୟାଗିଙ୍ଗ, ଘରକୁ ତାର ପ୍ରତ୍ୟାବର୍ତ୍ତନ, ବାପାଙ୍କର ପୁନର୍ବାର ତାକୁ ନେଇ କଲେଜରେ ଛାଡ଼ିବା, ର୍ୟାଗିଙ୍ଗ ଜନିତ ଅପମାନରେ ତାର ଆତ୍ମହତ୍ୟା ଏହି ଗଳ୍ପକୁ ହୃଦୟସ୍ପର୍ଶୀ କରିଛି । ଲେଖକ ଏଥିରେ ଶିକ୍ଷା ନାମରେ ଛାତ୍ରମାନଙ୍କର ବୀଭତ୍ସତା ଓ ବର୍ବରତାକୁ ବିଦ୍ରୂପ କରି ଜନସଚେତନତା ପାଇଁ ଇଙ୍ଗିତ୍ ଦେଇଅଛନ୍ତି ।

'ରକ୍ତମନ୍ଦାର' ଆଦିବାସୀ ସଂସ୍କୃତି ଓ ବିଶ୍ୱାସର ଏକ ଜୀବନ୍ତ ଚିତ୍ର । ଏଥିରେ ନିର୍ମଳ ବନ୍ଧୁତା ଓ ମାନବିକତାର ଉଦ୍ଦାତ୍ତବାଣୀ ଯେପରି ମର୍ମରିତ ସେହିପରି ଧର୍ମ ନାମରେ ବୀଭତ୍ସ ନାରକୀୟତା ମଧ୍ୟ ଚିତ୍ରାୟିତ । କେନ୍ଦୁଝର ଜିଲ୍ଲାର ସାନଡ଼ିଆଁ ଗାଁର ଆଦିବାସୀ ସଂପ୍ରଦାୟର ବିଶର ମାହାତୋ ଓ ତାର ମୈତ୍ର ଦିରଜୁ ପ୍ରଧାନ ଏକତ୍ର ଚାଷ କରନ୍ତି । ଉଭୟ ରାତ୍ରିରେ କ୍ଷେତ ଜଗନ୍ତି । ସେମାନଙ୍କ ସମାଜରେ ଫସଲ ଭଲ ହେବାପାଇଁ ମେରିଆ ବଳି ଦିଆଯାଏ । ଡିଙ୍ଗାଜାନି ସେମାନଙ୍କୁ ମେରିଆ ଦେବା ପାଇଁ କହେ । ଇତ୍ୟବସରରେ ଦିନେ ରାତିରେ ବିଶର ମାହାତୋକୁ ହାତୀ ମାରିଦେଲା । ସେହିଦିନୁ ଦିର୍‌ଜୁ ମୈତ୍ରର ସ୍ତ୍ରୀ ଓ ତାର ପିଲାମାନଙ୍କର ଦାୟିତ୍ୱ ବହନ କଲା । ବିଶରର ପୁଅ ମାଧ ଦିର୍‌ଜୁ ଘରେ କାମ କରେ, ଗାଈ ରଖେ । ସେ ବର୍ଷ ମରୁଡ଼ି ପଡ଼ିଲା, ଧରତୀ ମାତାକୁ ମେରିଆ ଦେଲେ ସବୁ ଠିକ୍ ହୋଇଯିବ ବୋଲି ଡିଙ୍ଗାଜାନି ଓ ସାହୁକାର ପରାମର୍ଶ କରି ଦିର୍‌ଜୁକୁ ଡକାଇ କହିଲେ । ଡାଳଖାଇ ଠାକୁରାଣୀଙ୍କ ପାଖରେ ବିଶର ମାହାତୋର ସ୍ତ୍ରୀକୁ ମେରିଆ ଦେବା ପାଇଁ ସେମାନେ କହନ୍ତେ ଦିରଜୁ ରାଜି ହେଲା ନାହିଁ । ସାହୁକାର ଓ ଦେହୁରୀ ତାକୁ ଭୟ ଦେଖାଇବାରୁ ସେ କୌଣସି ମତେ ରାଜି ହୋଇ ମୈତ୍ର ଘରେ ଓଳିଆଏ ଧାନ ଦେଇ ମୈତ୍ରର ସ୍ତ୍ରୀକୁ ମଦଖୁଆଇ ଭୁଲାଇ ଠାକୁରାଣୀଙ୍କ ପାଖକୁ ନେଇଗଲେ । ତାକୁ ଲଣ୍ଡା କରାଗଲା । ବେକରେ ମନ୍ଦାର ଫୁଲମାଳ ଓ ମଥାରେ ସିନ୍ଦୂର ପିନ୍ଧାଇ ଦିଆଗଲା । ଯେତେବେଳେ ତାର ମଦ ନିଶା ଛାଡ଼ି ଗଲା ସେ ବାହୁନି ଉଠି ଡାକପକାଇଲା ମୈତ୍ରକୁ, ମୀତ୍ର ଡିଙ୍ଗାଜାନି ତା ବେକକୁ ଲକ୍ଷ୍ୟ କରି ଚୋଟ ପକାଇଲା । ତାର ରକ୍ତ ଆଣି ଠାକୁରାଣୀଙ୍କୁ ଦେଲା । ଏ ଘଟଣାରେ ଦିରଜୁର ଦେଖା ଦେଲା ମାନସିକ ଅବସାଦ । ମାତ୍ର ସେ କିଂକର୍ତ୍ତବ୍ୟବିମୂଢ଼ ସାହୁକାର ଓ ଜାନି ନିକଟରେ । ନିଜକୁ ସେ ଧିକ୍‌କାର କଲା । ଆଦିବାସୀ ସମାଜରେ ପ୍ରଚଳିତ ଏହି ମେରିଆ ପ୍ରଥାକୁ ଲେଖକ ଦର୍ଶାଇ ଦେଇ ସାମାଜିକ ସଚେତନତା ପାଇଁ ଆହ୍ୱାନ ଦେଇଅଛନ୍ତି । 'ଶିକାର' ଗଳ୍ପରେ ସଭ୍ୟ ମଣିଷର ଶିକାରପ୍ରବଣତା ଓ ଆଦିବାସୀ ଯୁବକର ସଚ୍ଚୋଟତା ରୂପାୟିତ ।

'ଆହତ ମୃଗ' ଗଳ୍ପରେ ବ୍ୟଥାହତ ପ୍ରେମର ଚାରୁଚିତ୍ରଣ ମଧ୍ୟଦେଇ ମାନବିକ ଭାବାନ୍ତର ଉତ୍କୀର୍ଣ୍ଣ । 'ଜୀବନ ଯେଉଁଠି ଜଳେ' ଗଳ୍ପରେ ଲେଖକ ଦର୍ଶାଇ ଦେଇଛନ୍ତି ବଡ଼ ଲୋକର ଝିଅକୁ ବିବାହ କରି ପ୍ରତି ମୁହୂର୍ତ୍ତରେ ଜୀବନ ଯନ୍ତ୍ରଣାରେ ଛଟପଟ ହେଉଥିବା ଓ ସ୍ତ୍ରୀର ଯାବତୀୟ ଅତ୍ୟାଚାର ସହୁଥିବା ବିଶ୍ୱଜିତ୍‌ର ମାନସିକ ଅବସ୍ଥା । ବଡ଼ଲୋକି ନାମରେ ନାରୀର ସ୍ୱେଚ୍ଛାଚାରିତା ପାରିବାରିକ ଅଶାନ୍ତିର କିପରି କାରଣ ହୁଏ ତାହା ଏହି ଗଳ୍ପରେ ବ୍ୟଂଜିତ । 'ଉଜାଣି ନଈର ଢେଉ' ଗଳ୍ପରେ ପ୍ରେମର ମଧୁର ସ୍ମୃତି-ମନ୍ଥନ ମଧ୍ୟ ଦେଇ ମାନବିକତାର ହୋଇଛି ମୁଗ୍ଧ ବନ୍ଦନା । 'ସ୍ୱାଭିମାନ' ଗଳ୍ପରେ ଅଭାବ ଅନଟନ ପୀଡ଼ିତ ସାଧାରଣ ମଣିଷ ଚୋରି କଲେ ମଧ୍ୟ ତା' ଭିତରେ କିପରି ପ୍ରକାଶ ପାଏ ସ୍ୱାଭିମାନବୋଧ ତାହାକୁ ରୂପ ଦିଆଯାଇଅଛି । ବୁଧିଆ ମଳିକ ନଡ଼ିଆ ଚୋରି କରିବାକୁ ଯାଇ ଧରାପଡ଼ି ମାଡ଼ ଖାଇଛି । ସେ ଚୋର ନଥିଲା ମାତ୍ର ବଂଚିବା ପାଇଁ ସେ ଚୋରିକରିବାକୁ ଯାଇଛି । ଗଳ୍ପନାୟକଙ୍କ ସହାନୁଭୂତି ଫଳରେ ସେ ମୁକ୍ତ ହୋଇଛି । ଜୀବନରେ ଯେତେ ଅଭାବ ହେଲେ ମଧ୍ୟ ସେ ଆଉ ଚୋରି କରିବ ନାହିଁ ବୋଲି ପ୍ରତିଜ୍ଞା କରିଛି । 'ପ୍ରତିଶୋଧ' ଗଳ୍ପ ଗ୍ରାମ୍ୟ ରାଜନୀତିର ଏକ ଜୀବନ୍ତ ଚିତ୍ର । ତୁଚ୍ଛ ସ୍ୱାର୍ଥ ଓ କଳୁଷିତ ବାତାବରଣ ଗ୍ରାମ୍ୟ ଜୀବନକୁ କିପରି ନଷ୍ଟ କରିଦେଉଛି ତାହାର ବର୍ଣ୍ଣନା ଉକ୍ତ ଗଳ୍ପରେ ରହିଛି । ପାର୍ଥ ଚୌଧୀରଙ୍କ ଅନୁଗତ ପବନ ସ୍ୱାଇଁ ସରପଞ୍ଚ ପ୍ରତିଯୋଗିତାରେ ବିଜୟୀ ହେବା ପରେ ନିଜକୁ ଖୁବ ବଡ଼ ମନେ କରିବା, କଣନାଳୀ ବନ୍ଧକାଟି ପାର୍ଥ ଚୌଧୁରୀଙ୍କ ଜମିକୁ ନଷ୍ଟ କରିବାକୁ ଯାଇ ଆପଣାର କ୍ଷତି କରିବା ଘଟଣା ମାଧ୍ୟମରେ ଲେଖକ ଗ୍ରାମ୍ୟ ଜୀବନର ସଂକୀର୍ଣ୍ଣତାକୁ ସୂଚାଇ ଦେଇଅଛନ୍ତି । 'ଘଟାନ୍ତର' ଅତୃପ୍ତ ପ୍ରେମର ଏକ ମନୋଜ୍ଞ ରୂପାୟନ । ଏକଦା ରୀନାକୁ ଭଲପାଉଥିବା ସୁର ଘଟଣା ଚକ୍ରରେ ପଡ଼ି ତାକୁ ବିବାହ କରିପାରିଲା ନାହିଁ । ରୀନା ବିବାହ କଲା ଜନୈକ ଏକ୍‌ଜିକ୍ୟୁଟିଭ ଇଂଜିନିୟରଙ୍କୁ । ସୁର କଣ୍ଟ୍ରାକ୍ଟରୀ କରି ପ୍ରତିଷ୍ଠା ଲାଭ କଲା । ଥରେ ସେ ରୀନା ଘରକୁ ଯାଇ ଅନୁଭବ କଲା ରୀନାର ପରିବର୍ତ୍ତନ । ପଦସ୍ଥ ସ୍ୱାମୀର ମୋହ ଓ ଅର୍ଥର ପ୍ରାଚୁର୍ଯ୍ୟ ରୀନାକୁ ସୁରପ୍ରତି ବିମୁଖ କଲା । ସୁର ଏକମୁହାଁ ହୋଇ ଫେରି ଆସିଲା । ପ୍ରତିପତ୍ତି ଓ ଭୋଗବାଦ ନିକଟରେ ପ୍ରେମ ଯେ ହେୟ, ତାହା ଏହି ଗଳ୍ପରେ ପ୍ରତିପାଦିତ । 'ଉପହାସ' ଗଳ୍ପରେ ଜନୈକ ପାଗଳ ଚରିତ୍ର ମଧ୍ୟ ଦେଇ ସାମାଜିକ ଅବସ୍ଥା ପ୍ରତି ପ୍ରକାଶ ପାଇଛି ତୀର୍ଯ୍ୟକ ଦୃଷ୍ଟି ।

'ଏ ଜାତି ବନାମ ନୀଳାଚଳ ଏକ୍ସପ୍ରେସ' ଗଳ୍ପରେ ଗଳ୍ପନାୟକଙ୍କ ନିଜସ୍ୱ ଅନୁଭୂତି ବର୍ଣ୍ଣିତ । ଦିଲ୍ଲୀରୁ ଭୁବନେଶ୍ୱର ପର୍ଯ୍ୟନ୍ତ ରିଜର୍ଭେସନ କରିଥିଲେ ମଧ୍ୟ ପରବର୍ତ୍ତୀ ଷ୍ଟେସନ ମାନଙ୍କରେ ଯାତ୍ରୀମାନେ ଜବରଦସ୍ତ କିପରି ରିଜର୍ଭ କରିଥିବା ଲୋକଙ୍କ ଜାଗା ମାଡ଼ି ବସନ୍ତି, ରେଳର କଣ୍ଡକ୍ଟର କିପରି ଏସବୁ ଘଟଣାରେ ନୀରବ ରହନ୍ତି, ଟ୍ରେନର ଟୟଲେଟ ସବୁ କିପରି ଅପରିଷ୍କାର ରହେ, ପାଣିର ବ୍ୟବସ୍ଥା କିପରି ନଥାଏ, ପଙ୍ଖା କିପରି ଚାଲୁ

ନଥାଏ, ଧନଜୀବନ କିପରି ନିରାପଦ ରହେନାହିଁ ଇତ୍ୟାଦି ନାନା କଥାକୁ ଲେଖକ ଯେପରି ବର୍ଣ୍ଣନା କରିଛନ୍ତି ତାହା ଭାରତବର୍ଷର ସାଂପ୍ରତିକ ସାମାଜିକ ବିଶୃଙ୍ଖଳା ଓ ଦାୟିତ୍ୱହୀନତାକୁ ସୂଚାଇଦିଏ । ଯାତ୍ରୀଟିଏ ଘରୁ ଗୋଡ଼ କାଢ଼ି ଟ୍ରେନରେ ଗନ୍ତବ୍ୟ ସ୍ଥାନକୁ ଯାଉଥିଲା ବେଳେ କେବଳ ଭରସା ରଖେ ଏକ ଅଦୃଶ୍ୟ ଶକ୍ତି ଉପରେ । ଏହି ଗଳ୍ପରେ ବୈଷ୍ଣବ ବାବୁ ସହଯାତ୍ରୀଙ୍କୁ କହିଲେ – 'ସେହି ଚକାଡ଼ୋଳା, ବଳୀୟାରଭୁଜ, ଯାହା ଉପରେ ଭରସା ରଖି କେବଳ ଆମେ କାହିଁକି, ଏ ଦେଶ, ଏଜାତି ଆଉ ଏ ନୀଳାଚଳ ଏକ୍ସପ୍ରେସ ମଧ ଚାଲିଛି ।' (୧୪) ନୀଳାଚଳ ଏକ୍ସପ୍ରେସ ଯେପରି ହୋଇଯାଇଛି ସାଂପ୍ରତିକ ଭାରତବର୍ଷର ପ୍ରତୀକ । ଶୃଙ୍ଖଳା ନାହିଁ, ନିୟମ କାନୁନ ପ୍ରତି ଶ୍ରଦ୍ଧା ନାହିଁ । ଧନଜୀବନର ନିରାପତ୍ତା ନାହିଁ । କେବଳ ଅଛି ଭ୍ରଷ୍ଟାଚାର, ଦୁର୍ନୀତି, ସ୍ୱେଚ୍ଛାଚାର, କ୍ଷମତାର ରଣହୁଙ୍କାର, ରାଜନୀତିର କାରସାଦି ଓ ପ୍ରଶାସନିକ ଅପାରଗତା । ଏହା ଆମର ସାମାଜିକ ଅବସ୍ଥା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରେ । 'ସଂଶୟ' ଗଳ୍ପ ଏକ ସାର୍ଥକ ସମ୍ବେଦନଶୀଳ ଗଳ୍ପ । ଗଳ୍ପ ନାୟକ ସହରରେ ଚାକିରି କରନ୍ତି । ଗୁମାସ୍ତା ମାୟାଧରର ଅନୁରୋଧ କ୍ରମେ ଗାଁକୁ ଯାଇଛନ୍ତି ଜମିଜମା ବିଷୟରେ ବୁଝିବାପାଇଁ । ବାଟରେ ଭେଟିଛନ୍ତି ଜନୈକ ପାଗଳକୁ ମାତ୍ର ସେ ତାକୁ ଚିହ୍ନିପାରି ନାହାନ୍ତି । ଯେତେବେଳେ ସେ ଶୁଣିଲେ ସେହି ପାଗଳଟି ହେଉଛି ତାଙ୍କ ପିଲା ଦିନର ସାଙ୍ଗ ଅପର୍ତ୍ତି; ସେତେବେଳେ ତାକୁ ଭେଟିବା ପାଇଁ ସେ ବ୍ୟଗ୍ର ହୋଇ ଉଠିଛନ୍ତି । ମନେପଡ଼ିଛି ପିଲାଦିନର ସ୍ମୃତି । ଅପର୍ତ୍ତି ତାଙ୍କୁ କେତେ ଶ୍ରଦ୍ଧାରେ ପିଜୁଳି ଦେଉଥିଲା । ସେହି ଅପର୍ତ୍ତିକୁ ତାର ଭାଇମାନେ ଭିନେ କରିଦେଲେ । ତାର ସ୍ତ୍ରୀ ଓ ପୁତ୍ରର ବିୟୋଗ ହୋଇଗଲା । ଦାରିଦ୍ର୍ୟ ଭିତରେ ସେ ହେଲା ପାଗଳ । ଗଳ୍ପ ନାୟକଙ୍କ ଅନ୍ତରରେ ଅପର୍ତ୍ତି ପ୍ରତି ଶ୍ରଦ୍ଧାଜାତ ହେଲା । ସେ ତାକୁ ଖୋଜିବାକୁ ଲାଗିଲେ ମାତ୍ର ତାକୁ ପାଇଲେ ନାହିଁ । ନିଜକୁ ସେ ଧିକ୍କାର କଲେ ଅପର୍ତ୍ତିକୁ ଚିହ୍ନି ନ ପାରିଥିବା ହେତୁ । ବିବେକ ତାଙ୍କୁ ବାରମ୍ବାର ଧିକ୍କାର କଲା । ତାଙ୍କ ଭିତରେ ପ୍ରଶ୍ନ ଉଠିଲା 'ଅପର୍ତ୍ତିଟା ପାଗଳା ନା ମୁଁ' ? (୧୫) ଏହି ବବେକର ପ୍ରଶ୍ନ ତାଙ୍କର ନାନା ଗଳ୍ପରେ ଫୁଟି ଉଠିଛି । ଜଣେ ସମାଜ ଓ ମାନବ୍ ସଚେତନ ଦ୍ରଷ୍ଟାହିଁ ବିବେକ -ବିଚାରକୁ ଗୁରୁତ୍ୱ ଦିଏ । କଥାକାର୍ ଡକ୍ଟର ମହାନ୍ତି ଉକ୍ତ ଗଳ୍ପରେ ସେହି ବିବେକ ପ୍ରଶ୍ନ ଉଠାଇଛନ୍ତି, ଯାହା ତାଙ୍କୁ ସମ୍ବେଦନଶୀଳ କରିଦେଇଛି ।

'ଅଶାନ୍ତ ଗ୍ରହ' ଗଳ୍ପ ଭଗିଦାଦା ପରି ହୀନ ସ୍ୱାର୍ଥସର୍ବସ୍ୱ କୁଚକ୍ରୀମାନଙ୍କ କବଳରେ ପଡ଼ି ଶାନ୍ତ ନିଷ୍ପାପ ବ୍ୟକ୍ତି କିପରି ଅସୁବିଧାରେ ପଡ଼ନ୍ତି ତାହାର ଏକ ମାର୍ମିକ ଆଲେଖ୍ୟ । ଏପରି ଚରିତ୍ରମାନେ ସବୁକାଳେ ଅଛନ୍ତି । ଏବେ ମଧ ସେମାନେ ବିରଳ ନୁହନ୍ତି ।

୧୪. ନୀଳଚକ୍ରର ଆହ୍ୱାନ - ପୃ. ୧୦
୧୫. ଅତ୍ରୈବ - ପୃ. ୨୫

ଆପଣାର ହୋଇ, ବିଶ୍ୱାସ ଜନ୍ମାଇ ସେମାନେ ଅଶାନ୍ତି ଓ ଅନର୍ଥ ସୃଷ୍ଟି କରନ୍ତି । ଠିକଣା ସମୟରେ ସେମାନେ ଆଉ ଧରାଛୁଆଁ ଦିଅନ୍ତି ନାହିଁ । ଏଇମାନେ ଘରଭଙ୍ଗା, ଶନିଗ୍ରହ । 'ଶ୍ରାନ୍ତ ଗୋଧୂଳି' ଗଳ୍ପ ଅନାହତ ପ୍ରେମର ଏକ ମନ୍ମୟ ରୂପ-ଚିତ୍ର । ଦେବକାନ୍ତ ଶିକ୍ଷା ବିଭାଗର ଉପନିର୍ଦ୍ଦେଶକ ଭାବରେ ବିଭିନ୍ନ ଶିକ୍ଷା-କେନ୍ଦ୍ର ପରିଦର୍ଶନ କରୁଥିଲା ବେଳେ ତାଙ୍କର ଅବଚେତନକୁ ମନ୍ଥନ କରି ପ୍ରକାଶ ପାଇଛି ଅତୀତର ସ୍ମୃତି । ମନେ ପଡ଼ିଛି ସିପ୍ରା ସହିତ ତାଙ୍କର ମଧୁମୟ ପ୍ରେମର ହାବଭାବ । ଦୀର୍ଘ ତିରିଶ ବର୍ଷର ବ୍ୟବଧାନ ପରେ ସେ ଯାଇଛନ୍ତି ବରଗଡ଼କୁ ସିପ୍ରାର  ସ୍ୱାମୀ ଆଦିତ୍ୟଙ୍କ ଅନୁରୋଧ କ୍ରମେ । ମାତ୍ର ସେଠାରେ ପହଞ୍ଚି ଶୁଣିଛନ୍ତି  ସିପ୍ରାର ମୃତ୍ୟୁ ଖବର । ତାଙ୍କର ବୁକୁ ଫଟାଇ ଯେମିତି ଆର୍ତ୍ତନାଦ ବାହାରି ଆସୁଥିଲା । ପ୍ରେମ ଏଠି ଦେହକୁ ଅତିକ୍ରମ କରି ଦେହାତୀତ ହୋଇଯାଇଛି । ସଂପର୍କର ସେତୁବନ୍ଧନ ହୋଇଛି ବିଦେହୀ ଆତ୍ମା ସହିତ । 'ପୁଣ୍ୟାତ୍ମାର ଅନୁଚିନ୍ତା' ଗଳ୍ପରେ ପଶୁମାନଙ୍କ ପ୍ରତି ଶ୍ରଦ୍ଧା ପୋଷଣ ପାଇଁ ପ୍ରେରଣା ଥିଲେ ମଧ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜୀବନଧାରା ମଧରେ ସମନ୍ୱୟ ପାଇଁ ଇଙ୍ଗିତ ରହିଛି । 'ସୁଖ କହିବି ନା ଦୁଃଖ କହିବି' ଗଳ୍ପ ଆମ ସାମ୍ପ୍ରତିକ, ସାମାଜିକ, ପ୍ରଶାସନିକ ଓ ରାଜନୀତିକ ଜୀବନ ପ୍ରତି ଏକ ବ୍ୟଙ୍ଗାତ୍ମକ ଅଭିବ୍ୟକ୍ତି । ତୁଳାନାତ୍ମକ ଭାବରେ ଆମେରିକା ଓ ଆମଦେଶର ଶିକ୍ଷା ଓ ଚାକିରି ବ୍ୟବସ୍ଥାକୁ ଦର୍ଶାଇ ସେ ଦେଶରେ କର୍ତ୍ତବ୍ୟନିଷ୍ଠତା ପ୍ରତି ଆଦର ଥିଲା ବେଳେ ଆମ ଦେଶରେ ତାହା କିପରି ବିପଦପୂର୍ଣ୍ଣ ହୁଏ, ଦୁର୍ନୀତିକୁ କିପରି ନୀତି ବୋଲି ଘୋଷଣା କରାଯାଏ ତାହାକୁ ଗାଳ୍ପିକ ସୂଚାଇ ଦେଇଅଛନ୍ତି । 'ବିବର୍ଣ୍ଣ ପୃଥିବୀ' ଗଳ୍ପରେ ଲେଖକ ତୀର୍ଯ୍ୟକ ଦୃଷ୍ଟିପାତ କରିଛନ୍ତି  ସାଂପ୍ରତିକ କାଳର ଭାରତ ବର୍ଷରେ ତଥା ଆମ ରାଜ୍ୟ ଓଡ଼ିଶାରେ କଥା କଥାକେ  ରାଜନୀତିକ କାରଣରୁ 'ଚକାବନ୍ଦ, ଅଖବନ୍ଦ, ଭାରତବନ୍ଦ, କଟକ ବନ୍ଦ' ଡାକରା ପ୍ରତି । ଏଥିପାଇଁ ଉଚ୍ଚ ନ୍ୟାୟାଳୟ ଯେତେ ତାଗିଦ କଲେ ମଧ ନେତାମାନେ ଆପଣାର ବଡ଼ପଣ ଓ ପାରିବାରପଣ ଦେଖାଇବାରେ ବ୍ୟସ୍ତ ।

'ବିଧ୍ୱସ୍ତ କଳିକା' ଗଳ୍ପ ଏକ ମାନବିକ ସମ୍ବେଦନାଧର୍ମୀ ଗଳ୍ପ । ଟିକି ଝିଅଟିଏ ସ୍କୁଲକୁ ଯିବା ପାଇଁ ବସ୍‌କୁ ଅପେକ୍ଷା କରିଥିଲା ବେଳେ ମିନିଟ୍ରକ୍‌ର ଆଘାତରେ ମୃତ୍ୟୁ ବରଣ କରିଯିବା ଘଟଣା ଗଳ୍ପନାୟକଙ୍କୁ ଗଭୀର ଦୁଃଖ ଦେଇଛି । 'ବୟସର କୃଷ୍ଣଚୂଡ଼ା' ଗଳ୍ପ ଜନୈକ ନବେ ବର୍ଷ ବୃଦ୍ଧ ରାଧାଶ୍ୟାମ ଦେହୁରୀଙ୍କର ସାହିତ୍ୟପ୍ରାଣତାର ରମ୍ୟ ଚିତ୍ର । 'ଲେଖକମାନେ ସମ୍ମାନର ପାତ୍ର' ଏହାଥିଲା ସେହି  ବୃଦ୍ଧଙ୍କର ଆଦର୍ଶ । ଲେଖକ କଳ୍ପନାରୁ ସୃଷ୍ଟି କରୁଥିଲେ ମଧ ସେହି କଳ୍ପନା ସହିତ ବାସ୍ତବତା କ୍ଷୀର ନୀର ନ୍ୟାୟରେ ମିଶିକରି ଥାଏ । ପାଠକ ଯେତେବେଳେ ତାହାକୁ  ପଢ଼େ ସେତେବେଳେ ନିଜକୁ  କୌଣସି କୌଣସି ଚରିତ୍ର ଭିତରେ ଅନୁଭବ କରେ । ଏଇଥିରେହିଁ ଲେଖକର ସାର୍ଥକତା  ଫୁଟି ଉଠେ । 'ଭୋଗିଲି ଯେତେ ପାଇଲି ସେତେ' ଗଳ୍ପରେ ଆଜିକାଲିକାର  ସଭା-ସଂସ୍କୃତି ପ୍ରତି ବିଦ୍ରୂପ

ପ୍ରକାଶ ପାଇଥିଲେ ମଧ୍ୟ ସତ୍ୟବ୍ରତ ବାବୁ ଜନୈକ କୁଷ୍ଠରୋଗୀର ଅନ୍ତର୍ବେଦନାକୁ ଉପଲବ୍ଧି କରି ତା'ପ୍ରତି ସମ୍ବେଦନା ପ୍ରକାଶ କରିବା ପ୍ରସଙ୍ଗ ବେଶ୍ ହୃଦ୍ୟ ହୋଇଥିବା ଲକ୍ଷ୍ୟ କରାଯାଏ । 'ଶିଶୁପାଳକୁ ଚିଠି' ଓ 'ଶିଶୁପାଳର ଚିଟାଉ' ଦୁଇଟି ଗଳ୍ପ ଆମ ସାମାଜିକ ଜୀବନରେ ଦେଖା ଦେଇଥିବା ଯୌତୁକରାକ୍ଷସର ଚିତ୍ର ବହନ କରେ । ଧନଲୋଭୀ ପିତାମାତାଙ୍କର ବାଧ୍ୟ ପୁତ୍ର ସାଜି ଶିକ୍ଷିତ ଯୁବକ ବାରମ୍ବାର ବିବାହ ବେଦୀରୁ ଉଠିଯାଏ । ଏପରି ବ୍ୟକ୍ତିସ୍ୱାତନ୍ତ୍ର୍ୟହୀନ ପୁରୁଷଙ୍କୁ ଗଳ୍ପନାୟିକା ମେଣ୍ଢା ସହିତ ତୁଳନା କରିଛି । ସେ ଚେତେଇ ଦେଇଛି –'ଏ ସମାଜ ମନ ଜାଣେନାହିଁ । ହୃଦୟ ବୁଝେ ନାହିଁ । ମୁହଁ ଖୋଲି କିଛି ନ ମାଗିଲେ ମନର ଇପ୍‌ସିତ ବସ୍ତୁକୁ ହାତପାହାନ୍ତାରୁ ହରାଇବାକୁ ପଡ଼େ । ଜୋର କରି ଏ ସମାଜରୁ ନିଜର ଅଧିକାରକୁ ଆଦାୟ କରିବାକୁ ପଡ଼େ । (୧୬) ଏ ଗଳ୍ପର ନାୟିକା ଭୀରୁ ନୁହେଁ, ବିପ୍ଳବିଣୀ । ତେଣୁ ସେ ଗଳ୍ପନାୟକର ଭୀରୁତା ଓ କାପୁରୁଷତାକୁ ଆଘାତ ଦେଇଛି । ସୂଚେଇ ଦେଇଛି ମାନବିକତାକୁ ବଳିଦେଇ ପିତୃଋଣ ପରିଶୋଧ କରାଯାଏ ନାହିଁ । ପରାଧୀନ କାପୁରୁଷର ସ୍ତ୍ରୀ ହେବା ଅପେକ୍ଷା ବରଂ ଆତ୍ମହତ୍ୟା ଶ୍ରେୟସ୍କର । ଗଳ୍ପ ନାୟିକାର ସ୍ୱଷ୍ଟୋକ୍ତି 'ବାଧ ସନ୍ତାନର ଅନ୍ଧ ବୁଝାମଣାକୁ ଦୂରକୁ ଫିଙ୍ଗି ତୁମେମାନେ ବିବେକବାନ ହୋଇଯିବ, ନୂତନ ସୃଷ୍ଟି ପାଇଁ ଏ ପୃଥିବୀ ବ୍ୟାକୁଳ ହୋଇପଡ଼ିବ ସେଇଦିନ ନାରୀ ଖୋଜିବ ତା'ର ନାରୀତ୍ୱକୁ, ମାତୃତ୍ୱକୁ, ଦାଂପତ୍ୟ ପ୍ରେମର ଅସୁମାରୀ ଅମୃତଧାରା ବୁହାଇ ଏ ସୃଷ୍ଟିକୁ ବିଷମୁକ୍ତ କରିବ ।' (୧୭) ଏହି ଗଳ୍ପରେ ଲେଖକଙ୍କ ବିବେକ ନେଇଛି ଗୁରୁତ୍ୱପୂର୍ଣ୍ଣ ଭୂମିକା । ଏହାହିଁ ସାମାଜିକ ବିବେକ । ଏହି ବିବେକ ପ୍ରତିବାଦ କରିଛି ନିର୍ମମ ଯୌତୁକପ୍ରଥା ବିରୋଧରେ । 'ଶିଶୁପାଳର ଚିଟାଉ' ଗଳ୍ପରେ ଗଳ୍ପନାୟକଙ୍କ ଉତ୍ତର ପ୍ରଦତ୍ତ । ତେଜସ୍ୱିନୀ ନାରୀର ଚିଠି ପ୍ରତି ତାଙ୍କର ଶ୍ରଦ୍ଧା ଜାତ ହୋଇଛି ଓ କହିଛି ଏ ଯୌତୁକ ବ୍ୟାଧିଗ୍ରସ୍ତ ସମାଜକୁ ରୋଗମୁକ୍ତ କରି ପୃଥିବୀରେ ସ୍ନେହପ୍ରେମ ଓ ଦାଂପତ୍ୟ ଜୀବନର ଅମୃତଧାରା ବୁହାଇବାକୁ ହେଲେ ନାରୀ ସମାଜକୁ ଜାଗ୍ରତ କରିବାକୁ ହେବ । ପୁରୁଷବିଦ୍ୱେଷୀ ମନ ନେଇ ବିପ୍ଳବ କଲେ ସମସ୍ୟାର ସମାଧାନ ହୁଏ ନାହିଁ । ଏହି ଦୁଇଟି ଗଳ୍ପରେ ନିଜେ କଥାକାର ହିଁ ଉଭୟ ନାରୀ ଓ ପୁରୁଷ ଭୂମିକାରେ ଅବତୀର୍ଣ୍ଣ ହୋଇ ଯୌତୁକ ସମସ୍ୟା ବିଷୟରେ ଉଲ୍ଲେଖ କରିଥିବା ଜଣାଯାଏ । 'ଝରା ଶେଫାଳି' ଗଳ୍ପ ମଧ୍ୟ ସେହି ଯୌତୁକ ପ୍ରଥାର ଆଉ ଏକ ରମ୍ୟ ସୃଷ୍ଟି ।

'ଅନୁଭୂତି-ଜଣେ ମହାତ୍ମାଙ୍କ ସଂପର୍କରେ' ଗଳ୍ପ ଲେଖକଙ୍କ ନିଜସ୍ୱ ଅନୁଭୂତିର ଚିତ୍ର । ଏହି ଗଳ୍ପରେ ଶ୍ୟାମସୁନ୍ଦର ମଠର ବଡ଼ ବାବାଙ୍କ ବ୍ୟକ୍ତିତ୍ୱ, ଭଗବତ୍ ଭକ୍ତି ଓ ନିଷ୍ଠା, ଶରୀର ବ୍ୟାଧିପ୍ରତି ଅନାସକ୍ତି ଲେଖକଙ୍କୁ ଅଭିଭୂତ କରିଥିବା ପ୍ରସଙ୍ଗ ବର୍ଣ୍ଣିତ । 'ଦରିଆ ପାରିର ଗୁରୁ

---

୧୬. ବିଧ୍ୱସ୍ତ କଳିକା - ଶିଶୁପାଳକୁ ଚିଠି, ପୃ. - ୫୪

୧୭. ଅତ୍ରୈବ - ପୃ. ୫୯

ଛାତ୍ର' ଗଳ୍ପ ଲେଖକଙ୍କ ଆତ୍ମଲିପିରୁ ଖିଏ ପରି ମନେ ହୁଏ । ଏହି ଗଳ୍ପରେ ପାଶ୍ଚାତ୍ୟ ଦେଶରେ ଦାଂପତ୍ୟ ଜୀବନର ଭଙ୍ଗୁରତା, ପିତାମାତାଙ୍କ ବିଚ୍ଛେଦ ପରେ ଶିଶୁମାନଙ୍କର ଅସହାୟତା ଯେପରି ବର୍ଣ୍ଣିତ ସେହିପରି ଭାରତ ବର୍ଷର ପାରିବାରିକ ଜୀବନର ପବିତ୍ରତା ମଧ୍ୟ ରୂପାୟିତ । 'ବଂଶୀ' ଗଳ୍ପ କୃଷ୍ଣଭକ୍ତିର ରୂପକାତ୍ମକ ପରିଚୟ । 'ନମୁନା-ଏକ ଗଣତାନ୍ତ୍ରିକ ଚିନ୍ତାଧାରାର' ଗଳ୍ପ ଆମେରିକାର ନିର୍ବାଚନ ପ୍ରଥାର ଶୁଦ୍ଧ ପରଂପରାର ଏକ ବିବରଣୀ ମାତ୍ର ।

-୫-

କଥାକାର ଶ୍ରୀ ମହାନ୍ତିଙ୍କ ଗଳ୍ପ-ଜଗତ ମାନବ-ବନ୍ଦନା ଓ ମାନବିକତାର ମୁଗ୍ଧ ଗାୟତ୍ରୀ । ପ୍ରେମ, ବନ୍ଧୁତା, ସମ୍ବେଦନା ଓ ସହାନୁଭୂତି ମଧ୍ୟଦେଇ ତାଙ୍କର ଗଳ୍ପଗୁଡ଼ିକ ଗତିଶୀଳ । ପ୍ରାୟ ଗଳ୍ପଗୁଡ଼ିକ ଅନୁଭୂତ ସତ୍ୟର ରୂପଚିତ୍ର । ଗଳ୍ପର ଦିଗନ୍ତ ବିଦେଶରୁ ସ୍ୱଦେଶ ପର୍ଯ୍ୟନ୍ତ ପରିବ୍ୟାପ୍ତ । ସାଧାରଣ ନରନାରୀ ଯେପରି ଗଳ୍ପଗୁଡ଼ିକର ପାତ୍ର ପାତ୍ରୀ ସେହିପରି ପଦସ୍ଥ ସରକାରୀ କର୍ମଚାରୀ, ବିଦେଶାଗତ ଶାନ୍ତି ଅନ୍ୱେଷୀ ବ୍ୟକ୍ତି, ଶିକ୍ଷିତ ଯୁବକ ଯୁବତୀ ମଧ୍ୟ ପାତ୍ର ପାତ୍ରୀ ହୋଇଛନ୍ତି । ଗୁରୁ ଛାତ୍ର, ପିତାମାତା ଓ ପୁତ୍ର କନ୍ୟା, ସ୍ୱାମୀ ସ୍ତ୍ରୀ ଗଳ୍ପଗୁଡ଼ିକରେ ନେଇଛନ୍ତି ଗୁରୁତ୍ୱପୂର୍ଣ୍ଣ ଭୂମିକା । ସ୍ଥଳ ବିଶେଷରେ ବନ୍ଧୁ ବା ସାଙ୍ଗ ସାଥୀ ମଧ୍ୟ ଗଳ୍ପ ଭିତରକୁ ଆସିଛନ୍ତି । କେତେକ ଗଳ୍ପରେ ଡାକ୍ତର ବା କୁଚକ୍ରୀ ଅଛନ୍ତି । କେତେକ ଗଳ୍ପରେ ନାନା ପଶୁପକ୍ଷୀ ମଧ୍ୟ ଚିତ୍ରାୟିତ ହୋଇଛନ୍ତି । କେତୋଟି ଗଳ୍ପରେ କେନ୍ଦ୍ର ବିନ୍ଦୁ ହୋଇଯାଇଛନ୍ତି ଜଗନ୍ନାଥ, କୃଷ୍ଣ, ଠାକୁରାଣୀ, ସଭ୍ୟ ସମାଜର ଚରିତ୍ରମାନଙ୍କ ସହିତ ଗ୍ରାମର ସାଧାରଣ କୃଷକ ଓ ଶ୍ରମିକ, ସହରର ରିକ୍ସାବାଲା, ଚାକିରିଜୀବୀ, ରାଜନେତା, ଡାକ୍ତର, ସାଧୁସନ୍ନ୍ୟାସୀ, ଶିକ୍ଷକ, ଅଧ୍ୟାପକ ମଧ୍ୟ ନାନା ଗଳ୍ପରେ ପାତ୍ରପାତ୍ରୀ ରୂପେ ଗୃହୀତ । ସାଧାରଣ ନିର୍ବାକ ମଣିଷମାନଙ୍କର କଥା ବିଭିନ୍ନ ଗଳ୍ପରେ ସୂଚିତ । ତେବେ ଗଳ୍ପମାନଙ୍କରେ ଯଦିଓ ନାନା ସମସ୍ୟା ଉତ୍‌ଥାପିତ ହୋଇଛି ତଥାପି ସେଥିରେ ବିଦ୍ରୋହ ନାହିଁ, ଅଗ୍ନିର ଉତ୍ତାପ ନାହିଁ, ଅଛି ମଣିଷକୁ ଭଲପାଇବାର ଓ ସଂପର୍କର ସେତୁ ବାନ୍ଧିବାର ସଂକଳ୍ପ । ପ୍ରେମ ଓ ମାନବିକତା, ଶ୍ରଦ୍ଧା ଓ ସହାନୁଭୂତି ପ୍ରାୟ ଗଳ୍ପଗୁଡ଼ିକର ମର୍ମବାଣୀ । କେତେକ ଗଳ୍ପରେ ସ୍ୱଦେଶ ପ୍ରେମ ଓ ଜାତୀୟତା ସୂଚିତ । କେତେକରେ ଅଛି ଶୁଦ୍ଧଭକ୍ତିର ଦିବ୍ୟ ବର୍ଣ୍ଣନା ।

ଶ୍ରୀ ମହାନ୍ତି ମିତବାକ୍ । ତେଣୁ ଗଳ୍ପଗୁଡ଼ିକ ଦୀର୍ଘ ନୁହନ୍ତି । ନାଟକୀୟତା ଅଛି ମାତ୍ର ବର୍ଣ୍ଣନା ମୁଖ୍ୟ ସ୍ଥାନ ଗ୍ରହଣ କରିଛି । କେତେକ ଗଳ୍ପ ଠିକ୍ ଗଳ୍ପ ପରି ମନେ ହୁଏନାହିଁ । ତାହା ଯେପରି ତାଙ୍କର ଆତ୍ମଲିପିର ଅଂଶ ହୋଇଯାଇଛି । ଗଳ୍ପ ଭିତରେ ସାଂଳାପିକ ଶୈଳୀ ପରିଦୃଷ୍ଟ । ବାହ୍ୟ ବାସ୍ତବତା ବା ପରିଦୃଶ୍ୟମାନ ବାସ୍ତବତା ଗଳ୍ପଗୁଡ଼ିକର ଆଧାର ଶିଳା ।

ଦର୍ପଣ-ଶିଳା ବା ଅନ୍ତର୍ନିହିତ ବାସ୍ତବତା ଯେ ନାହିଁ, ନୁହେଁ । ତେବେ କଥାକାର ମୁଖ୍ୟତଃ ସମକାଳୀନ ସମାଜର ଯେଉଁସବୁ ସମସ୍ୟାକୁ ଦେଖିଛନ୍ତି ତାହାକୁ ରୂପ ଦେଇଛନ୍ତି । ତାରି ଭିତରୁ ଆବିଷ୍କାର କରିଛନ୍ତି ମାନବିକ ସୂକ୍ଷ୍ମ ସତ୍ତାକୁ । ନିଜେ ଯେପରି ଅଧିକାଂଶ ଗଳ୍ପରେ ପାଲଟି ଯାଇଛନ୍ତି ଚରିତ୍ରଟିଏ । ତେବେ କଥାକାର ଯାହା ଚାହିଁଛନ୍ତି କହିବାକୁ ତାହାକୁ ସ୍ପଷ୍ଟ କରି କହିଛନ୍ତି । ଆନ୍ତର୍ଜାତିକ କ୍ଷେତ୍ରରେ ବହୁ ସ୍ଥାନକୁ ଯାଇ ବିବିଧ ଲୋକ ସଂପର୍କରେ ଆସିଛନ୍ତି । ସବୁବେଳେ ତାଙ୍କ ଭିତରେ ବିଦେଶ ସହିତ ସ୍ୱଦେଶର ତୁଳନାତ୍ମକ ଭାବଟିଏ ପ୍ରକାଶ ପାଇଛି । ସ୍ୱଦେଶର ମହିମା ତାଙ୍କୁ ପ୍ରଲୁବ୍ଧ କରିଛି । ତଥାପି ବିଦେଶର ଲୋକ-ଚରିତ୍ର ପ୍ରତି ବୀତସ୍ପୃହ ନୁହନ୍ତି । ସେଠିକାର ଯାହା ମହନୀୟ ଦିଗ ତାକୁ ସେ କରିଛନ୍ତି । ସେହି କୋମଳତା ହୋଇଯାଇଛି ତାଙ୍କ ଗଳ୍ପର ପ୍ରାଣସତ୍ତା । ସେ ଚାହିଁଛନ୍ତି ବିଜ୍ଞାନ ଓ ଆଧ୍ୟାତ୍ମିକତାର ମିଳନ । ବସ୍ତୁବାଦକୁ ସେ ପ୍ରତ୍ୟାଖ୍ୟାନ କରି ନାହାନ୍ତି ମାତ୍ର ତାହା ମଣିଷକୁ ଗ୍ରାସ କରୁ, ତାହା ଚାହିଁ ନାହାନ୍ତି । ହିଂସା ଓ ପ୍ରତାରଣାର ଉତ୍କଟ ପରିବେଶ ଭିତରେ ସେ ଚାହିଁଛନ୍ତି ସ୍ନେହ, ପ୍ରୀତି ମମତା ଓ ମାନବିକତାସ୍ନାତ ଏକ ସୁନ୍ଦର ମାନବ ସମାଜ । ଏହାହିଁ ତାଙ୍କ ଗଳ୍ପର ସନ୍ଦେଶ ଓ ଏହି କାରଣରୁ ଶ୍ରୀମହାନ୍ତିଙ୍କ ଗଳ୍ପ-ଜଗତ ସ୍ୱତନ୍ତ୍ର ମାନ୍ୟତା ଲାଭ କରିବାକୁ ଦାବୀ କରେ ।



# ନୀଳଚକ୍ରର ଆହ୍ୱାନ ଓ ବିଧ୍ୱସ୍ତ କଳିକା : ଗାଳ୍ପିକ ଡକ୍ଟର ଗୁରୁପ୍ରସାଦ ମହାନ୍ତି

ଅଧ୍ୟାପକ ଡଃ ରବିନାରାୟଣ ମହାରଣା

ଡକ୍ଟର ଗୁରୁପ୍ରସାଦ ମହାନ୍ତି ଆମ ସମୟର ଜଣେ ପ୍ରଥିତଯଶା ଗାଳ୍ପିକଭାବରେ ବେଶ୍ ସୁପରିଚିତ । ୧୯୮୮ ମସିହାରେ ତାଙ୍କର ପ୍ରଥମ ଗଳ୍ପ ସଂକଳନ 'ସାଲବେଗର ଅଶ୍ରୁ' ତାଙ୍କୁ ଜଣେ ସଫଳ କଥାଶିଳ୍ପୀଭାବରେ ଓଡ଼ିଶା ସାହିତ୍ୟରେ ପରିଚିତ କରାଏ । ଅବଶ୍ୟଏହା ପୂର୍ବରୁ ସେ କେତୋଟି ଗଳ୍ପ ଲେଖି ସାରିଥିଲେ ଓ ପାଠକମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ମଧ ହୋଇସାରିଥିଲେ । ବିଶେଷ କରି ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ରାମକୃଷ୍ଣ ନନ୍ଦ ଓ ଅନୁବାଦକ ଯୁଗଳକିଶୋର ଦତ୍ତଙ୍କର ପ୍ରଚ୍ଛନ୍ନ ପ୍ରେରଣା ତାଙ୍କୁ ଗଳ୍ପରଚନା କ୍ଷେତ୍ରରେ ମନୋନିବେଶ କରିବାକୁ ବାଧ କରିଛି । ପରବର୍ତ୍ତୀ କାଳରେ 'କହେ ସାଲବେଗ ହୀନ'(୧୯୮୯), 'ନୀଳଚକ୍ରର ଆହ୍ୱାନ' (୧୯୯୦), 'ବିଧ୍ୱସ୍ତ କଳିକା' (୧୯୯୬) ଓ 'ଦୁଃଖ କହିବି କି ସୁଖ କହିବି' (୧୯୯୮) ପ୍ରଭୃତି ଗଳ୍ପ ସଂକଳନ ଗୁଡ଼ିକ ତାଙ୍କର ଅନବଦ୍ୟ ସୃଷ୍ଟି ଭାବରେ ଓଡ଼ିଆ ସାହିତ୍ୟରେ ପ୍ରକାଶ ଲାଭ କରିଛି । ଏତଦ୍ ବ୍ୟତୀତ ଦୁଇଖଣ୍ଡ ଉପନ୍ୟାସ : 'ଯେ ଯଥା ମାଂ ପ୍ରପଦ୍ୟନ୍ତେ' ଓ 'ମୋହନବଂଶୀ', ତିନିଗୋଟି ଭ୍ରମଣ କାହାଣୀ', 'ପାତାଳ ପୁରୀର ହାଲଚାଲ' (୧ମ ଓ ୨ୟ ଭାଗ), 'ଯେ ଦେଶେ ଯାଇ', 'ଦୂର ସାଗର ପାରେ'. ଏବଂ ସାତଖଣ୍ଡ ବୈଷୟିକ ପୁସ୍ତକ : 'ଗୋ ଖାଦ୍ୟ', 'ଉନ୍ନତ ବାଛୁରୀ ପାଳନ', 'ଗୋ ପାଳନ', 'ଛାଗ ପାଳନ', 'ମେଷ ପାଳନ', 'ସବୁଜ ଗୋ ଖାଦ୍ୟ' ଓ 'ଶଙ୍କର ବାଛୁରୀ ପାଳନ' ପ୍ରଭୃତି ପୁସ୍ତକମାନ ମଧ ରଚନା କରି ସେ ବେଶ ପାଠକମାନଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଛନ୍ତି । ବିଶେଷ କରି 'ପାତାଳ ପୁରୀର ହାଲଚାଲ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କୁ ୧୯୯୦ ମସିହା ପାଇଁ ଶ୍ରେଷ୍ଠ ଭ୍ରମଣକାହାଣୀକାର ଭାବରେ ସମ୍ମାନିତ କରିଛନ୍ତି । ଏହି ସବୁ ଦୃଷ୍ଟି କୋଣରୁ ବିବେଚନା କଲେ ଜଣାଯାଏ ଯେ ଗାଳ୍ପିକ ଡକ୍ଟର ମହାନ୍ତି ଜଣେ ସଫଳ ଗଳ୍ପ-ଉପନ୍ୟାସ-ଭ୍ରମଣ କାହାଣୀର ଲେଖକ ଭାବରେ ଓଡ଼ିଆ ପାଠକମାନଙ୍କ ନିକଟରେ ବେଶ୍ ସୁପରିଚିତ ଓ ଶ୍ରଦ୍ଧାସ୍ପଦ ।

ତେବେ ଯେତେବେଳେ ଆମେ ତାଙ୍କର 'ନୀଳଚକ୍ରର ଆହ୍ୱାନ' ଓ 'ବିଧ୍ୱସ୍ତ କଳିକା' - ଗଳ୍ପ ସଂକଳନ ଦୁଇଟିକୁ ପାଠକରୁ, ସେତେବେଳେ ଏହି ଗଳ୍ପ ସଂକଳନ ଦୁଇଟିର ଭାବାବେଗ ଏକ ଭିନ୍ନଶ୍ରେଣୀର ବୋଲି ପ୍ରତିୟମାନ ହୋଇଥାଏ । 'ନୀଳଚକ୍ରର ଆହ୍ୱାନ'ରେ ରହିଛି ମାତ୍ର ଦଶଗୋଟି ଗଳ୍ପ : ଏ ଜାତି ବନାମ୍ ନୀଳଚକ୍ର ବ୍ୟବଧାନ ହେଉଛି ମଧ ପାଞ୍ଚବର୍ଷ - 'ନୀଳଚକ୍ରର ଆହ୍ୱାନ'(୧୯୯୦) ଓ 'ବିଧ୍ୱସ୍ତ କଳିକା' (୧୯୯୬), ତେବେ ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଉଭୟ ଗଳ୍ପ ସଂକଳନର ଜନ୍ମ । ବିଂଶ ଶତାବ୍ଦୀର ଶେଷ ଦଶନ୍ଧିକୁ ଯଦି ଲକ୍ଷ୍ୟ କରିବା ତେବେ ଆମେ ଦେଖିବା ଯେ ଏହି ସମୟକୁ ପୃଥିବୀରେ ଦୁଇଦୁଇଟା ବିଶ୍ୱଯୁଦ୍ଧ ଘଟି ସାରିଛି । ପରମାଣୁ ବୋମା ମଧ ପରୀକ୍ଷିତ ହୋଇ ଯାଇଛି, ବିଶେଷ କରି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଭୂୟୋବିକାଶ ସାଧିତ ହୋଇ ପାରିଛି । ଅନ୍ୟ ପକ୍ଷରେ ମଧ ଦେଖିବାକୁ ଗଲେ ପୃଥିବୀକୁ ପାଶ୍ଚାତ୍ୟର ଭାବଚେତନା ଏତେମାତ୍ରାରେ ସଂକ୍ରମିତ ହୋଇଯାଇଛି ଯେ, ଯାହାର ପ୍ରଭାବ ଫଳରେ ମଣିଷ ଆଜି ନିଃସଙ୍ଗ ହୋଇ ଉଠୁଛି, ସମ୍ପୂର୍ଣ୍ଣ ଏକାକୀତ୍ୱବୋଧକୁ ଉପଲବ୍ଧି କରୁଛି । ମଣିଷ ଆଉ ମଣିଷକୁ ବିଶ୍ୱାସ କରିପାରୁ ନାହିଁ - ବରଂ ସନ୍ଦେହ କରୁଛି, ସ୍ୱାଧୀନତାର ମୋହ ଭଙ୍ଗକୁ ବିଶେଷ ପ୍ରକାରର ନିରୁତ୍ସାହିତ ମଧ ମଣିଷ ମଧରେ ବୃଦ୍ଧି ପାଇବାରେ ଲାଗୁଛି । ଏ ସବୁକୁ ଯଦି ଆମେ ଏକାଠି କରିଦେବା, ତେବେ ଜାଣିପାରିବା ଯେ, ଏକ ବିଶେଷ ପ୍ରକାରର ଅସନ୍ତୁଳିତ ଅବସ୍ଥା ବିଂଶ ଶତାବ୍ଦୀର ଶେଷ ଦଶନ୍ଧରେ ମଣିଷଙ୍କୁ, ବିଶେଷ ଭାବରେ ଆଧୁନିକ ମଣିଷକୁ କବଳିତ କରି ପକାଇଛି । ଏହି ଭଳି ସ୍ଥିତିକୁ ପ୍ରତ୍ୟେକ କବି-ସାହିତ୍ୟିକମାନେ ଯେ ଅନୁଭବ ନ କରିଛନ୍ତି ତା' ନୁହେଁ, କରିଛନ୍ତି ଓ ତା'ର ଏକ ମଞ୍ଚର ଅଭିବ୍ୟକ୍ତିକୁ ମଧ ପ୍ରକାଶ କରିଛନ୍ତି ନିଜର କୃତିମାନଙ୍କରେ । ଗାଳ୍ପିକ ଗୁରୁପ୍ରସାଦ ମଧ ସମୟର ସ୍ଥିତାବସ୍ଥାକୁ ଲକ୍ଷ୍ୟ କରିଛନ୍ତି ଓ ସେହି କାରଣରୁ ସେ ମଧ ଆଲୋଚ୍ୟ କୃତିଦୁଇଟିରେ ସାଂପ୍ରତିକସ୍ଥିତିକୁ ବିଶେଷ ଭାବରେ ସ୍ଥାପିତ କରିଛନ୍ତି ।

ଗାଳ୍ପିକ ଗୁରୁପ୍ରସାଦଙ୍କ ଗଳ୍ପକୃତିଗୁଡ଼ିକୁ ଆଲୋଚନା କଲାବେଳେ ଏକଥା ମଧ ମନେ ରଖିବାକୁ ହେବ ଯେ ସେ କେବଳ ଜଣେ ନିରୂତା ସାହିତ୍ୟିକ ନୁହନ୍ତି । ଅଧିକନ୍ତୁ ସେ ମଧ ଜଣେ ପଶୁ-ଚିକିତ୍ସକ । ଓଡ଼ିଶା ସରକାରଙ୍କର ପଶୁପାଳନ ବିଭାଗରେ ଚାକିରୀ କରି ଶେଷରେ ସର୍ବୋଚ୍ଚ ପଦବୀ ତଥା ନିର୍ଦ୍ଦେଶକ ଭାବରେ କିଛିବର୍ଷ କାର୍ଯ୍ୟକରି ଅବସର ଗ୍ରହଣ କରିଛନ୍ତି । ତେଣୁ ଜୀବମାନଙ୍କ ପ୍ରତି ଏକ ସ୍ୱତଃସ୍ଫୂର୍ତ୍ତ ଦୟାଭାବ ଯେପରି ଝରି ଆସିଛି ତାଙ୍କ ଲେଖନୀ ମୂନରୁ । ମାଂସ ଖାଇବା ପ୍ରତି ମନେକର ଅହେତୁକ ମୋହ ଓ ତା'ର ବାସ୍ତବସ୍ଥିତିରେ ମାଂସ ପ୍ରତି ଘୃଣାର ଏକ ଚମତ୍କାର ଚିତ୍ର ପ୍ରକାଶ ପାଇଛି ତାଙ୍କର ଗଳ୍ପ 'ବିଯୁକ୍ତାକ୍ଷର' (ନୀଳଚକ୍ରର ଆହ୍ୱାନ) ଓ 'ସମବେଦନା' (ବିଧ୍ୱସ୍ତ କଳିକା) ରେ । ବିଯୁକ୍ତାକ୍ଷରରେ ସ୍ୱର୍ଣ୍ଣଲତା ବାରମ୍ବାର ଅଭିଯୋଗ କରନ୍ତି ତାଙ୍କ ସ୍ୱାମୀ ଗୌରବାବୁଙ୍କୁ ଯେ

ନିଜେ ମାଂସ କିଣିବାକୁ ନ ଯାଇ ଅନ୍ୟ ଉପରେ ନିର୍ଭର କରୁ ଥିବାରୁ ସବୁବେଳେ ଖରାପ ମାଂସ ଘରକୁ ଆସୁଛି ଓ ପିଲାମାନେ ଅଧାପେଟ ଖାଉଛନ୍ତି ସ୍ତ୍ରୀକୁ ସନ୍ତୋଷ କରିବାକୁ ଯାଇ ଗୌରବାବୁ କେବଳ ଆସନ୍ତାଥର ନିଜେ ଭଲ ମାଂସ ବାଛି ଆଣିବାର ପ୍ରତିଶ୍ରୁତି ଦିଅନ୍ତି ସିନା ହେଲେ କେବେ ନିଜ ପ୍ରତିଶ୍ରୁତିକୁ ରକ୍ଷା କରିପାରନ୍ତି ନାହିଁ । ସେଦିନ କିନ୍ତୁ ସେକ୍ରେଟାରିଏଟ୍ ମିଟିଂରେ ଯୋଗଦେବାକୁ ଗୌରବାବୁ ଯେତେବେଳେ ଭୁବନେଶ୍ୱର ବାହାରିଲେ, ସେତେବେଳେ ସ୍ୱର୍ଣ୍ଣଲତା ମଧ୍ୟ ତାଙ୍କ ସହିତ ଭୁବନେଶ୍ୱର ଯିବାକୁ ଚାହିଁଲେ ଗୌରବାବୁ ମଧ୍ୟ କୌଣସି ପ୍ରକାରର ବାରଣ କଲେ ନାହିଁ । ସ୍ୱର୍ଣ୍ଣଲତା ଗୌରବାବୁଙ୍କ ସହ ଭୁବନେଶ୍ୱର ଯିବା ବାଟରେ ଦେଖିଲେ ବାଟରେ ମାଂସ ବିକ୍ରିହେଉଛି । ଲୋଭ ସମ୍ବରଣ କରି ନ ପାରି ସ୍ୱାମୀଙ୍କୁ ମାଂସ ନେବା କଥା କୁହନ୍ତି । ଡ୍ରାଇଭର ଉତ୍ତର ଦିଅନ୍ତି ଯେ- ସେଠାରେ ଭଲ ମାଂସ ମିଳେ । ଫେରିଲାବେଳକୁ ନେଇ ହେବ । ମାତ୍ର ଫେରିବା ବେଳକୁ ସେ ନିଜେ ମାଂସ ନେବାକୁ ଯାଇ ମଧ୍ୟ ଯେଉଁ ମାଂସ କିଣି ଆଣନ୍ତି, ତାହା ଭଲ ମାଂସ ହୋଇଥିଲେ ମଧ୍ୟ ମାଂସ କଟା ଓ ଛେଳିର ଆର୍ତ୍ତଚିତ୍କାର ସ୍ୱର୍ଣ୍ଣଲତାଙ୍କ ନାରୀହୃଦୟକୁ ବିଚଳିତ କରିପକାଏ । ସେ ଅତି ସନ୍ତର୍ପଣରେ ଘରେ ମାଂସ ରାନ୍ଧନ୍ତି, ପିଲାଙ୍କୁ ଖୁଆନ୍ତି ଓ ସ୍ୱାମୀଙ୍କୁ ମଧ୍ୟ ଖୁଆନ୍ତି । ମାତ୍ର ନିଜେ ଅତି ଗୋପନ ଭାବରେ ମାଂସଠାରୁ ଦୂରଇଯାଇ ପରଟା, ଆଳୁଭଜା ଓ ମିଠା ନେଇ ଖାଆନ୍ତି । କଥାଟା ଲୁଚି ରହେନା ଗୌରବାବୁଙ୍କ ଦୃଷ୍ଟିରୁ । ଗୌରବାବୁ ବିସ୍ମିତ ହୋଇ ଉଠନ୍ତି । ମାଂସ ନିଜେ ପରଶି ଦେବାକୁ ମଧ୍ୟ ଯାଆନ୍ତି । ମାତ୍ର ସ୍ୱର୍ଣ୍ଣଲତା ବାରଣ କରନ୍ତି । ଶୋଇବା ବେଳେ ସବୁ କହିବେ କହି ସେ କେବଳ ନିରାମିଷ ଖାଦ୍ୟ ହିଁ ଖାଆନ୍ତି । ହାତ ମୁହଁ ଧୋଇସାରି ସ୍ୱର୍ଣ୍ଣଲତା ଖଟ ଉପରେ ଟିକେ ଦମ୍ ନେଇ ଗୌରବାବୁଙ୍କୁ ନିଃସଙ୍କୋଚରେ କହିଯାଆନ୍ତି ତାଙ୍କ ଭିତରେ କିପରି ଛେଳିମାଂସ ପ୍ରତି ଘୃଣାଭାବ ଆସି ଯାଇଥିଲା । ସ୍ୱର୍ଣ୍ଣଲତାଙ୍କର ଗୋଟିଏ ସ୍ୱୀକାରୋକ୍ତି ଏହିପରି । "... ଏଇ ସେ ସ୍ୱାଦିଷ୍ଟ ମାଂସ । ସେଇ ମାଂସକୁ ରାନ୍ଧିଲାବେଳେ ମୋର ମନେପଡ଼ିଯାଉଥାଏ ସେ ଛେଳିର ସାଶ୍ରୁତ ଚାହାଣୀ । କେବଳ ସେଇ ଗୋଟିକ ନୁହେଁ । ସେଠି ବନ୍ଧା ହୋଇଥିବା ସବୁତକ ଛେଳିଙ୍କର ଭୋକ ଉପାସିଆ ଦୟନୀୟ ରୂପ ଆଖି ଆଗରେ ମୋର ନାଚି ଯାଉଥାଏ । କେମିତି ମାଂସତକ ରନ୍ଧାବଢ଼ା କରି ପିଲାମାନଙ୍କ ଆଗରେ ଥୋଇ ଦେବି, ସେଇ ଚିନ୍ତାରେ ମୁଁ ବ୍ୟତିବ୍ୟସ୍ତ ହୋଇ ପଡୁଥିଲି । ମୋର ଆଜି ଆଦୌ ଖାଇବାକୁ ଇଚ୍ଛା ନ ଥିଲା । କାଳେ ଖାଲି ପେଟରେ ନିଦ ନହେବ ବୋଲି କଷ୍ଟେ ମଷ୍ଟେ ପରଟା ଦି'ଖଣ୍ଡ ଉଦରସ୍ଥ କଲି । ସେତିକିବେଳେ ତୁମେ ଯଦି ମାଂସ ତରକାରୀରୁ ବୁନ୍ଦାଏ ମୋ ଥାଳିରେ ପକେଇ ଥାଆନ୍ତ ତାହେଲେ ମୋ ପେଟରେ ସବୁତକ ବାନ୍ତିହୋଇ ବାହାରି ଆସିଥାଆନ୍ତା'' (ନୀଳଚକ୍ରର ଆହ୍ୱାନ, ପୃଷ୍ଠା ୪୫-୪୬ ) । ଏବେ ସେ ଉପଲବ୍ଧି କରିଛନ୍ତି ଗୌରବାବୁ କାହିଁକି ନିଜେ ମାଂସ କିଣିବାକୁ ନ ଯାଇ ଅନ୍ୟ ହାତରେ ମଗାନ୍ତି । ସ୍ୱର୍ଣ୍ଣଲତା ଏଣିକି ନିଷ୍ପତ୍ତି

ନିଅନ୍ତି । X X X ଆଉ ଏ ଘରକୁ ମାଂସ ଆସିବ ନାହିଁ ।'' (ପୃଷ୍ଠା-୪୬) ଅବଶ୍ୟ ଗୌରବାବୁ ଏଭଳି ଏକ ନିଷ୍ପତ୍ତିକୁ ଗ୍ରହଣ କରିପାରି ନାହାନ୍ତି । ଗୌରବାବୁଙ୍କ ସ୍ୱଷ୍ଟୋକ୍ତି ମଧ୍ୟରେ ଲେଖକଙ୍କର ଉକ୍ତିଟି ଉଙ୍କି ମାରିଛି ଏହିପରି : X X X ତୁମ ମନରେ ବୈରାଗ୍ୟ ଆସିଲା ବୋଲି ପିଲାମାନଙ୍କ ରୁଚିକୁ ଆମର ଇଚ୍ଛାଅନୁସାରେ ନିୟନ୍ତ୍ରଣ କରିବାଟା ଠିକ୍ ହେବ ନାହିଁ । ସେମାନଙ୍କ ଲାଗି ପୁଷ୍ଟିକର ଖାଦ୍ୟ ଯୋଗାଇ ରଖିବାକୁ ହେବ । ତେଣୁ ମାଛ, ମାଂସ, ଅଣ୍ଡା ଆଦି ରୁଚିକର ଖାଦ୍ୟ ପ୍ରତି ସେମାନଙ୍କ ମଧ୍ୟରେ ବିତୃଷ୍ଣା ଜନ୍ମାଇବା ଆମ ପକ୍ଷରେ ଅନୁଚିତ । X X X (ପୃଷ୍ଠା ୪୬) ତେବେ ସ୍ୱର୍ଣ୍ଣଲତାଙ୍କ ହୃଦୟର ପରିବର୍ତ୍ତନ ଏହି ଗଳ୍ପର ମୁଖ୍ୟ କଥା । ସେହିପରି 'ସମବେଦନା' ଗଳ୍ପ (ବିଧ୍ୱସ୍ତ କଳିକା) ରେ ରାଜେନ୍ଦ୍ର ବାବୁ ବସା ବଦଳିକରି ଯେଉଁ ନୂଆ ଘରଟିକୁ ଯାଇଛନ୍ତି, ତାହାର 'ପାଇଖାନାଟା ମୋଜାଇକ୍ ହୋଇ ଚକ୍ ଚକ୍ କରୁଛି । ସବୁ ଘରର ଚଟାଣରେ ବଡ଼ ବଡ଼ ଦାନା ରଙ୍ଗ ରଖି କରି ପଥର ଦିଆ ମୋଜାଇକ୍ । X X X ବାହାର ପଟ ବାରଣ୍ଡା ଛାତରେ ଦୋଳି ବାନ୍ଧିବାକୁ ଦୁଇଟା କଡ଼ିଆ ଅଛି ।'' (ପୃଷ୍ଠା - ୧୩/ବିଧ୍ୱସ୍ତ କଳିକା) ଏମିତି ଦେଖିବାକୁ ଗଲେ ସେ ଘରର ସବୁ ଯେମିତି ସୁନ୍ଦର । ହେଲେ ତା'ର ପରିବେଶ କିନ୍ତୁ ତଦନୁରୂପ . ସୁନ୍ଦର ନୁହେଁ । ପାଖରେ ମାଂସ ଦୋକାନ । କଂସେଇ ଛେଳିନେଇ ଯିବାର ଦେଖିଛନ୍ତି ରାଜେନ୍ଦ୍ରବାବୁଙ୍କ ଛୋଟ ଛୋଟ ପିଲା ପିଙ୍କୁ ଓ ମାତୁଲି, ରିଙ୍କୁ । ସେମାନେ ଛେଳିକୁ ବାଇଆ ନେଇଯାଉଛି ବୋଲି ଧରି ନେଇଛନ୍ତି । ମାଂସକଟା ତାଙ୍କ ମନରେ ଘୃଣା ଭରି ଦେଇଛି । ଯେଉଁ ପିଲାମାନେ ମାଂସ ଖାଇବାକୁ ଖୁବ୍ ଜିଦ୍ କରୁଥିଲେ, ସେମାନେ ଆଜି ଖାଲି ପରିବା ଖାଇବାକୁ କହୁଛନ୍ତି । ଶେଷରେ ଶ୍ରୀମତୀ ବନଲତାଙ୍କ ରୋଷ ପ୍ରକାଶ ପାଇଛି । X X X ଏତେ ବର୍ଷ କାଳ ପିଲାଏ ଗଳି ଭିତରେ ଛୋଟ ଘରଟାରେ ରହିଲେ, ମାତ୍ର ଏତେ ଅଶାନ୍ତି କେଉଁଠି ହୋଇନଥିଲା । ସକାଳୁ ଉଠିବାମାତ୍ରେ ଛେଳିର ଚିତ୍କାର, ମାଂସକଟାର ରକ୍ତବୁହା ଛୁରୀ କଟୁରୀ କାରବାର ପିଲାଗୁଡ଼ାକ ଶାନ୍ତିରେ ଟିକେ ବସି ଶୋଇ ପାରୁନାହାନ୍ତି ।''(ବିଧ୍ୱସ୍ତ କଳିକା/ପୃଷ୍ଠା - ୨୦) । ଜୀବହତ୍ୟାରୁ ଘୃଣା ଜନ୍ମି କ୍ରମେ ପିଲାଙ୍କ ଠାରୁ ବୟସ୍କଙ୍କୁ ମଧ୍ୟ କବଳିତ କରି ପକାଇଛି । ତେଣୁ ରାଜେନ୍ଦ୍ର ବାବୁ ପୁଣି ଏକ ସୁସ୍ଥ ପରିବେଶର ଘରଟିଏ ଅନୁଧ୍ୟାନ କରିବାକୁ ବାହାରିଛନ୍ତି । ''ଭାତ ଥାଳିଟା ଠେଲିଦେଇ ଉଠିପଡ଼ିଲେ ରାଜେନ୍ଦ୍ର । ଥାଉ, ଆଜି ମୋର କୋର୍ଟକୁ ଯିବା ବନ୍ଦ । ତୁମେ ଆଉ ଜିନିଷପତ୍ର ସଜାସଜି କରନା, ସୂର୍ଯ୍ୟକାନ୍ତ ବାବୁଙ୍କ ଘରଟା କାଲିପର୍ଯ୍ୟନ୍ତ ଖାଲିଥିଲା । ଯାଏଁ, ଦେଖେ ଯଦି ମିଳିଗଲା ତ ଆଜି ସେ ଘରକୁ ଚାଲିଯିବା ।'' (ବିଧ୍ୱସ୍ତ କଳିକା/ପୃଷ୍ଠା-୨୦) ଏହିପରି ଭାବରେ ଦେଖିବାକୁ ଗଲେ ଗାଳ୍ପିକ ଗୁରୁପ୍ରସାଦ ମହାନ୍ତି, ଜୀବ ମାନଙ୍କ ହତ୍ୟାକୁ ପ୍ରକାରାନ୍ତରେ ସହ୍ୟ କରି ପାରି ନଥିବା ପରି ମନେ ହୋଇଥାଏ । ତେଣୁ ସେ ଜୀବହତ୍ୟାଠାରୁ ନିଜକୁ ଆପାତତଃ ଦୂରେଇ ରଖିବାର ପ୍ରୟାସ ଜାରି ରଖିଛନ୍ତି ।

ସଭ୍ୟତା ଯେତେ ଆଗେଇ ଯାଇଥାଉ ନା କାହିଁକି, ଦେବାଦେବୀଙ୍କର ବିଶ୍ୱାସ ଆଜି ପରି ଏକବିଂଶ ଶତାବ୍ଦୀରେ ମଧ୍ୟ ମଣିଷକୁ ଯେ ଶକ୍ତ ଭାବରେ ବାଂଧିରଖିଛି ଓ ଦେବତାଙ୍କ ବଳି ନାଁରେ ଯେ ସେ ଜୀବହତ୍ୟା କରିବାକୁ କୁଣ୍ଠା ପ୍ରକାଶ କରୁ ନାହିଁ, ତା'ର ଏକ ମାର୍ମିକ ଆଲେଖ୍ୟ ଦେଖିବାକୁ ମିଳେ ଡକ୍ଟର ମହାନ୍ତିଙ୍କର ଅନ୍ୟ ଏକ ଗଳ୍ପ 'ବିଦ୍ରୋହ' (ନୀଳଚକ୍ରର ଆହ୍ୱାନ) ରେ । ସେଠାରେ ଗଳ୍ପ ନାୟିକା ସ୍ୱର୍ଣ୍ଣଲତା ସ୍ୱାମୀଙ୍କ ସହିତ ଯାଇଛନ୍ତି ଗୌହାଟୀ । ସେଠାରେ ବିଭିନ୍ନ ସ୍ଥାନ ବୁଲାବୁଲି କ୍ରମରେ ସ୍ୱର୍ଣ୍ଣଲତା ଗୋଟିଏ ଦିନ ଭୋରରୁ ସ୍ଥାନର ପୀଠଦେବୀ କାମାକ୍ଷା ଦେବୀଙ୍କୁ ଦର୍ଶନ କରିବାକୁ ଯାଆନ୍ତି । ଠାକୁରାଣୀଙ୍କ ମନ୍ଦିର ପାହାଡ଼ ଉପରେ । ରାସ୍ତା ଉପରୁ ମନ୍ଦିରର ବେଢ଼ା ଭିତରକୁ ଯେଉଁ ପ୍ରଶସ୍ତ ପାହାଚ ଗୁଡ଼ିକ ନିର୍ମିତ ହୋଇଛି, ସେଥିରେ ଗଲାବେଳେ ତାଙ୍କ ଦୃଷ୍ଟି ପଡ଼ିଛି ପାହାଡ଼ର ଦୁଇପାର୍ଶ୍ୱରେ ବସିଥିବା ହାଟ ଉପରେ । ଏହି ହାଟରେ ନାନା ଜାତିର ପଶୁ-ପକ୍ଷୀ, କିଛି ମେଣ୍ଢା, ନାଲି, ଧଳା ଓ ଛଉ ଛଉକା ରଙ୍ଗର ଗଞ୍ଜା କୁକୁଡ଼ା ଇତ୍ୟାଦି ମଧ୍ୟ ବିକ୍ରି କରାଯାଉଥାଏ । ଯେତେବେଳେ ସ୍ୱର୍ଣ୍ଣଲତା ଜାଣିଛନ୍ତି ଯେ ଏହି ସବୁ ପଶୁପକ୍ଷୀ କେବଳ ଭକ୍ତ ମାନଙ୍କପାଇଁ ବିକ୍ରି କରାଯାଉଛି, ସେତେବେଳେ ତାଙ୍କର ବିସ୍ମୟର ସୀମା ରହିନାହିଁ । ଏବଂ ଯେତେବେଳେ ସେ ଶୁଣିଛନ୍ତି ଯେ ପୂର୍ବେ ଦେବୀଙ୍କ ନିକଟରେ ମଣିଷ ବଳି ଦିଆଯାଉଥିଲା, ସେତେବେଳେ ସେ ଭୟରେ ନିଜ ସ୍ୱାମୀଙ୍କ ନିକଟକୁ ପାଖେଇ ଆସି ତାଙ୍କୁ ଜାବୁଡ଼ି ଧରିଛନ୍ତି । ପାହାଡ଼ ପାରି ହୋଇ ସିମେଣ୍ଟ ରାସ୍ତା ଉପରକୁ ଉଠିବା ବେଳେ ଡାହାଣ ପଟେ ଥିବା ଏକ ବଡ଼ ଖାଲ ଭିତରକୁ ସ୍ୱର୍ଣ୍ଣଲତାଙ୍କ ନଜର ପଡ଼ିଛି । ସେହି ଖାଲରେ ଗେରୁଆ ଲୁଗା ପିନ୍ଧି କାନ୍ଧରେ ଗେରୁଆରଂଗର ଚଦର ପକାଇଥିବା ଲୋକଟା ହାତରେ ଛୁରୀ ଓ ଆର ହାତରେ ସରାଏ ରକ୍ତ ଧରି ଚାଲିଥାଏ । ଅର୍ଗଳି ପାଖରେ ସଦ୍ୟ କଟାଯାଇଥିବା ଛେଳିର ଗଣ୍ଡିଟା ପଡ଼ି ଛଟପଟ ହେଉଥାଏ । (ନୀଳଚକ୍ରର ଆହ୍ୱାନ/ପୃଷ୍ଠା-୫୧ ) ସ୍ୱର୍ଣ୍ଣଲତା ଏଥର ଆଉ ଆଗକୁ ବଢ଼ି ପାରିନାହାନ୍ତି । ତାଙ୍କ ମନର ଭାବାନ୍ତର ଜାଗ୍ରତ ହୋଇଛି । ଠିକ୍ କହିବାକୁ ଗଲେ ସ୍ୱର୍ଣ୍ଣଲତାର ବିଦ୍ରୋହକ୍ତି ମାଧ୍ୟମରେ ଗାଳ୍ପିକ ଯେପରି ନିଜର ବିଦ୍ରୋହ ପ୍ରକାଶ କରିପାରିଛନ୍ତି । ''ଯେଉଁ ଆଦ୍ୟାଶକ୍ତି ମହାମାୟାଙ୍କ ଦ୍ୱାରା ପଶୁ, ପକ୍ଷୀ, କୀଟ, ପତଙ୍ଗ ଓ ମାନବ ଜାତିର ସୃଷ୍ଟି ହୋଇଛି, ତାଙ୍କ ନିକଟରେ ସ୍ୱାର୍ଥପର ମଣିଷ ତା'ର ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧି ପାଇଁ ଅନ୍ୟ ଏକ ନିରୀହ ଜୀବକୁ ବଳିରୂପେ ଅର୍ପଣ କରିବା କେତେ ଦୂର ଯଥାର୍ଥ । ତାହା କେହି କେବେ ବିଚାରକୁ ନେଇଛି କି ? ପ୍ରକୃତରେ କଣ ଜଗଜନନୀ ମା ଏଇ ନିରୀହ ଜୀବମାନଙ୍କର ରକ୍ତପାନ କରି ପରିତୃପ୍ତା ହୁଅନ୍ତି ? ରକ୍ତର ନୈବେଦ୍ୟ ବାଢ଼ି ଯଦି ମନୁଷ୍ୟ ମାଆର ଅର୍ଚ୍ଚନା କରିବାକୁ ଚାହେଁ, ତେବେ ସେ ନିଜ ଦେହରୁ ରକ୍ତ କେତେ ବୁନ୍ଦା ନିଗାଡ଼ି ଦେବାକୁ ଭୟକରେ କାହିଁକି ? ନିରପରାଧ ପଶୁପକ୍ଷୀମାନଙ୍କୁ କଲବଲ କରି ଦେବୀଙ୍କ ସମ୍ମୁଖରେ ହାଣିବା ଦ୍ୱାରା କଣ ସେମାନଙ୍କ

ଶରୀରରେ ଲୁକ୍କାୟିତ ମାତୃସତ୍ତାକୁ ଅବମାନନା କରାଯାଉ ନାହିଁ ? ଏତେ ବଡ଼ ଶକ୍ତି ପୀଠରେ ଯୁଗ ଯୁଗ ଧରି ପ୍ରାଣୀ ଜଗତ ପ୍ରତି ଯେଉଁଭଳି ଅନ୍ୟାୟ ଆଚରଣ ହେଉଛି, ତାହା କଣ ମାନବ ଜାତି ପ୍ରତି ଅମଙ୍ଗଳ ସୂଚକ ନୁହେଁ ?'' X X X ପୁଣି ମଧ୍ୟ ସ୍ୱର୍ଣ୍ଣଲତା କହିଛି -ଇତର ଜୀବମାନଙ୍କୁ କଲବଲ କରି ଏଠି ଯେଉଁଭଳି ପୂଜା ହେଉଛି, ତାହା (ସେଗୁଡ଼ିକ) ମଣିଷକୁ ସନା ବାଧୁନାହିଁ ଯଦି ନିଜ ପରିବାରର କୌଣସି ଲୋକକୁ ନେଇ ଏହା କରାଯାଆନ୍ତା, ତେବେ କଣ କେହି ସମ୍ଭାଳି ପାରନ୍ତା ?'' (ନୀଳଚକ୍ରର ଆହ୍ୱାନ/ପୃଷ୍ଠା- ୫୨-୫୩) । ଏହି କାରଣରୁ ଗାଳ୍ପିକ ସ୍ୱର୍ଣ୍ଣଲତାକୁ ଅଧାବାଟରୁ ଫେରାଇ ଆଣିଛନ୍ତି । ସେମାନେ କାମାକ୍ଷୀ ଦେବୀଙ୍କୁ ଅଧବାଟରେ ମୁଣ୍ଡିଆ ମାରି ଘରକୁ ଲେଉଟିଛନ୍ତି, ମାତ୍ର ଦେବୀଙ୍କୁ ଦର୍ଶନ କରିବାକୁ ଯାଇ ନାହାନ୍ତି । ସେଦିନ ଠିକ୍ ଏହିଭଳି ପ୍ରଫେସର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମଧ୍ୟ ନିଜର 'କନ୍ୟା କୁମାରୀ' ପ୍ରବନ୍ଧରେ ଶୁଚୀନ୍ଦମଠାରେ ଶିବଙ୍କ ଦାୟିତ୍ୱହୀନତାପାଇଁ ତାଙ୍କ ମୁହଁ ଚାହିଁବାକୁ କୁଣ୍ଠାପ୍ରକାଶ କରି ନଥିଲେ କି ? ଗାଳ୍ପିକ ଡକ୍ଟର ମହାନ୍ତି ବାସ୍ତବରେ ଏକ ମାନବବାଦୀ ହୋଇ ନିଜର ବିଚାରକୁ ସାବ୍ୟସ୍ତ କରିଛନ୍ତି, ଅନ୍ଧବିଶ୍ୱାସରେ ବଶବର୍ତ୍ତୀ ହୋଇ ଦେବୀପୀଠରେ ଯାହା ଅମାନବିକତାର ବ୍ୟଭିଚାର ଚାଲିଛି, ତାକୁ ଗ୍ରହଣ କରି ନାହାନ୍ତି - ଏହାହିଁ ବାସ୍ତବରେ ଗାଳ୍ପିକଙ୍କ ବିଶେଷତ୍ୱ ବୋଲି କୁହାଯାଇପାରେ ।

ମାନବାଦୀ ଆବେଗର ଆଉ କୋଡୋଟି ଗଳ୍ପ ମଧ୍ୟ ଆମ ଦୃଷ୍ଟିସୀମାକୁ ସ୍ପର୍ଶ କରେ । ସେଗୁଡ଼ିକ ହେଉଛି 'ବିଧ୍ୱସ୍ତ କଳିକା' (ବିଧ୍ୱସ୍ତ କଳିକାର ଶୀର୍ଷକ ଗଳ୍ପ), 'ଭୋଗିଲି ଯେତେ ପାଇଲି କେତେ' (ବିଧ୍ୱସ୍ତ କଳିକା), 'ଏ ଜାତି ବନାମ୍ ନୀଳାଚଳ ଏକ୍ସପ୍ରେସ' (ନୀଳଚକ୍ରର ଆହ୍ୱାନ), ପ୍ରଭୃତି କେତେକ ଗଳ୍ପ । 'ବିଧ୍ୱସ୍ତ କଳିକାର ବସ୍‌କୁ ଅପେକ୍ଷା କରିଥିବା ସ୍କୁଲଯିବା ଝିଅଟିର ବସଦୁର୍ଘଟଣା ଲେଖକଙ୍କୁ ଯେପରି ବ୍ୟଥିତ କରି ପକାଇଛି, ଏଜାତି ବନାମ୍ ନୀଳାଚଳ ଏକ୍ସପ୍ରେସରେ ଠିକ୍ ସେହିପରି ଦିଲ୍ଲୀରୁ ଭୁବନେଶ୍ୱରକୁ ଫେରୁଥିବା ବାଟରେ ରେଳଯାତ୍ରାର ବିଚିତ୍ର ଅନୁଭୂତି – ଶୌଚାଳୟରେ ପାଣିନାହିଁ- ରିଜର୍ଭ କରିଥିବା ସିଟ୍‌ରେ ଅନ୍ୟ ଯାତ୍ରୀର ଅଧିକାର ଜନିତ ପ୍ରାଦୁର୍ଭାବ - କଣ୍ଡକ୍ଟରର ଅନୁପସ୍ଥିତି - ନିରାପତ୍ତାର ଅଭାବ ଇତ୍ୟାଦି ଲେଖକଙ୍କୁ ମଧ୍ୟ ସେହି ଯାତ୍ରାର ଓ ଦେଶର ସାଂପ୍ରତିକ ସ୍ଥିତିର ଭବିଷ୍ୟତ ସମ୍ପର୍କରେ ସନ୍ଦିଗ୍ଧ କରିପକାଇଛି । ଭୋଗିଲି ଯେତେ ପାଇଲି କେତେ' ରେ ମୃତ୍ୟୁଶୀଳ ମଣିଷର ମରଣାନ୍ତକ ଯନ୍ତ୍ରଣା ଓ ନର୍କବାସ ପରି ସ୍ଥିତାବସ୍ଥାରେ ମଧ୍ୟ ବଞ୍ଚିବାର ଅଦମ୍ୟ ଲୋଭ ଗାଳ୍ପିକଙ୍କ ହୃଦୟକୁ ଯେତିକି କରୁଣାସିକ୍ତ କରି ପକାଇଛି, ଅନୁରୂପ ଭାବରେ ପ୍ରାଚୁର୍ଯ୍ୟ ଓ ପଦବୀରେ ଥାଇ ପିଲାଦିନର ଅନ୍ତରଙ୍ଗ ବନ୍ଧୁକୁ ତା'ର ପାଗଳାବସ୍ଥାରେ ନଚିହ୍ନି ପାରିବାର ଗ୍ଲାନି ମଧ୍ୟ ଲେଖକଙ୍କୁ ମର୍ମନ୍ତୁଦ ଯନ୍ତ୍ରଣାରେ ଦଗ୍ଧ କରି ପକାଇଛି (ସଂଶୟ ଗଳ୍ପ/ ନୀଳଚକ୍ରର ଆହ୍ୱାନ) ଆଜିର

ଆଧୁନିକ ସମାଜରେ ଯେ ମଣିଷର ଜୀବନ କେତେ, ଯନ୍ତ୍ରବତ୍ ହୋଇ ପଡ଼ିଛି, ତା'ର ନମୁନାକୁ ଆମେ ପାଉ 'ବିବର୍ଣ୍ଣ ପୃଥିବୀ' (ନୀଳଚକ୍ରର ଆହ୍ୱାନ) ଗଳ୍ପରେ ବା ସବୁକିଛି ଭଲ ମନ୍ଦ ଜାଣିମଧ୍ୟ ଆମେ ବେଳେ ବେଳେ କିପରି ଅନ୍ୟର ପ୍ରଭାବଶାଳୀ କଥାରେ ବଶୀଭୂତ ହୋଇ ଜାଣୁ ଜାଣୁ ଭୁଲ କାର୍ଯ୍ୟ କାରିପକାଉ ତା'ର ମଧ୍ୟ ଦୃଷ୍ଟାନ୍ତ ଦେଇଛନ୍ତି 'ଅଶାନ୍ତ ଗ୍ରହ' (ନୀଳଚକ୍ରର ଆହ୍ୱାନ) ପରି ଗଳ୍ପ ମାଧ୍ୟମରେ ।

ଗାଳ୍ପିକ ଡକ୍ଟର ଗୁରୁପ୍ରସାଦଙ୍କର ମାନବବାଦୀ ଦୃଷ୍ଟିଭଙ୍ଗୀ ବିଶେଷ ଭାବରେ ଯେଉଁ ଗଳ୍ପରେ ପ୍ରତିଫଳିତ ହୋଇଛି, ତାହା ହେଉଛି 'ଅନ୍ୱେଷା', (ବିଧ୍ୱସ୍ତ କଳିକା), 'ଶିକାର' (ବିଧ୍ୱସ୍ତ କଳିକା)ଗଳ୍ପ ଦ୍ୱୟରେ, 'ଅନ୍ୱେଷା' ଗଳ୍ପରେ ଗଳ୍ପ ନାୟକ (ହୋଇ ପାରନ୍ତି ଲେଖକ ମଧ୍ୟ ନିଜେ) ଙ୍କର ଚାକିରୀରେ ବଦଳି ହୋଇଛି । ରାଜ୍ୟର ଯେଉଁ ବୃହତ୍ତମ ସରାକାରୀ ପଶୁ ପ୍ରଜନନ ଫାର୍ମକୁ ଗଳ୍ପନାୟକଙ୍କର ବଦଳି ହୋଇଛି, ସେଠାରେ ପୂର୍ବତନ ଅଫିସର କ୍ୱାଟର ଛାଡ଼ି ନଥିବାରୁ ସେଠାକାର ଭଣ୍ଡାର ରକ୍ଷକ ମହାପାତ୍ରବାବୁ ତାଙ୍କପାଇଁ ଅତିଥି ଭବନରେ ରହିବାର ବନ୍ଦୋବସ୍ତ କରାଇଛନ୍ତି । ଗାଳ୍ପିକ ସେହି ଅତିଥି ଭବନରେ ହଠାତ୍ ଦୁଇଟି ଘରଚଟିଆଙ୍କୁ ଆବିଷ୍କାର କରିଛନ୍ତି । ନିବୁଜ ହୋଇ ବନ୍ଦ କରାଯାଇଥିବା କୋଠାଘର ଭିତରକୁ ଘରଚଟିଆ କିପରି ପଶିଲେ, ସେ ସମ୍ପର୍କରେ ସେ ବିଶେଷ ଚିନ୍ତାଶୀଳ ହୋଇପଡ଼ିଛନ୍ତି । ଭଣ୍ଡାର ରକ୍ଷକ ମହାପାତ୍ରବାବୁଙ୍କ ଠାରୁ ବୁଝିବାରୁ ଜଣାପଡ଼ିଲା ଯେ, ପୂର୍ବପଟ ଝରକାର ତଳକାଚ ଭାଙ୍ଗିଯାଇଥିବାରୁ ସେହିବାଟ ଦେଇ ଘରଚଟିଆ ପକ୍ଷୀଦ୍ୱୟ ଆସି ବୋଧେ ଆଲମିରା ଉପରେ ନିଜର ବସା ବାନ୍ଧିଥିଲେ । ମାତ୍ର ତାଙ୍କ ଆସିବା ଖବର ପାଇ ସେ ଏହି ଘରକୁ ସଜଡ଼ା ସଜଡ଼ି କଲାବେଳେ ଓ ଆଲମାରୀକୁ ଘରୁ ବାହାର କଲାବେଳେ ସେହି ବସାଟି ଖସି ପଡ଼ି ନଷ୍ଟ ହୋଇଗଲା । ସେଥିରେ ତାଙ୍କର ସଦ୍ୟଜାତ ଦୁଇଟି ଛୁଆଥିଲେ । ତଳେ ଆଘାତ ପାଇ ସେମାନେ ମରିଗଲେ । ତାକୁ ସେମାନେ ଫୋପାଡ଼ି ଦେଇଛନ୍ତି । ହୁଏତ ସେମାନେ ନିଜ ଛୁଆକୁ ଖୋଜିବାପାଇଁ ଏହି ଘରକୁ ପଶିଆସିଥିବେ । ବର୍ତ୍ତମାନ ଗଳ୍ପନାୟକ ପକ୍ଷୀଙ୍କ ପାଇଁ ଘରର ସମସ୍ତ ଝରକା କବାଟ ମୁକ୍ତ ରଖିଛନ୍ତି । ମାତ୍ର ସେମାନେ ତାଙ୍କ ଉପସ୍ଥିତିରେ ସେ ଘରକୁ ନ ଆସି ବାହାରୁ କେବଳ ଝରକା ବାଟଦେଇ ଆସୁଛନ୍ତି ଓ ତାଙ୍କ ଅନୁପସ୍ଥିତିରେ ଘର ଭିତରକୁ ଆସି ଡ୍ରେସିଂଟେବୁଲର ଦର୍ପଣକୁ କେବଳ ଖୁମ୍ପୁଛନ୍ତି । ବର୍ତ୍ତମାନ ଗଳ୍ପନାୟକ ଅନୁଭବ କରିଛନ୍ତି ଯେ ପକ୍ଷୀମାନେ ବର୍ତ୍ତମାନ ଭ୍ରମାସକ୍ତ । ନିଜ ପ୍ରତିବିମ୍ବକୁ ନିଜଛୁଆ ଭାବି ସେମାନେ ତାଙ୍କୁ ମୁକ୍ତ କରିବାକୁ ଚେଷ୍ଟା କରୁଛନ୍ତି । ତେଣୁ ଲେଖକ ପକ୍ଷୀକୁ ବାସ୍ତବାଭିମୁଖୀ କରାଇବା ପାଇଁ ଏକ ଅଭିନବ ପ୍ରଚେଷ୍ଟା ଅବଲମ୍ବନ କରିଛନ୍ତି । ଗଳ୍ପନାୟକ ମାଧ୍ୟମରେ ସେ ଦର୍ପଣ ଉପରେ ଝରକାର ପରଦାଟିକୁ ଆଣି ପକାଇ ଦେଇଛନ୍ତି । ଫଳରେ ପକ୍ଷୀଦ୍ୱୟ ଆଉ ନିଜର ପ୍ରତିବିମ୍ବକୁ ନ ଦେଇ ଅନ୍ୟତ୍ର କେଉଁଆଡ଼େ ଉଡ଼ିଯାଇଛନ୍ତି । ଲେଖକ ଅତି ଯତ୍ନର ସହିତ

ପକ୍ଷୀଦ୍ୱୟଙ୍କ ଜୀବନକୁ ଉଦାହରଣ ଭାବରେ ଗ୍ରହଣ କରି ଆମ ସମାଜକୁ ଯେପରି ଜଣାଇ ଦେବାକୁ ଚାହିଁଛନ୍ତି ଯେ, ଜୀବନରେ ଯେତେ ଦୁଃଖ ଆସୁପଛେ, ଆମେ ବାସ୍ତବତାକୁ ପ୍ରଥମେ ଗ୍ରହଣ କରି ବର୍ତ୍ତମାନରେ ବଞ୍ଚିବାକୁ କିପରି ହେବ, ସେଥିପାଇଁ ଉଦ୍ୟମ ଅବ୍ୟାହତ ରହିବା ଦରକାର । ଗଳ୍ପଟିରେ ପ୍ରତିପାଦ୍ୟ ସତ୍ୟହିଁ ଆଧୁନିକ ମଣିଷର ଜୀବନ ସତ୍ୟ ନୁହେଁ କି ?

ଠିକ୍ ସେହିପରି 'ଶିକାର' ଗଳ୍ପରେ ଆଦିବାସୀ ଯୁବକଟି ସହରୀ ମଣିଷଙ୍କ ପରି ମଲାଜନ୍ତୁକୁ ବିକ୍ରିକରି ପାରିନାହିଁ । ତା' ଭିତରେ ଏକ ମଣିଷପଣିଆ ଏବେବି ବଞ୍ଚିରହିଛି । ସେ ମାଂସ ରନ୍ଧାହେବା ପର୍ଯ୍ୟନ୍ତ ଅପେକ୍ଷା କରିଛି । ମାଂସ ରାନ୍ଧିବାରେ ସାହାଯ୍ୟ କରିଛି । ମାତ୍ର ଯେତେବେଳେ ଦେଖିଛି ମାଂସ ଶିଝିଲାବେଳକୁ ସେଥିରୁ ଏକ ଫୁରୁକୁଟିଆ ଗନ୍ଧ ବାହାରୁଛି ଓ ମାଂସରୁ ଫେଣ ନିର୍ଗତ ହେଉଛି, ସେତେବେଳେ ସେ ମାଂସକୁ ଖାଇବାକୁ ସତର୍କ କରାଇ ଯାଗା ଛାଡ଼ି ଚାଲିଯାଇଛି ସିନା, ସହରୀ ମଣିଷଙ୍କଠାରୁ ପଇସାଟିଏ ମଧ ନେଇ ନାହିଁ । ଗଳ୍ପରେ ଲେଖକ ତେବେ କଣ କହିଛନ୍ତି ? ଯଦି ଏହି ଗଳ୍ପ ସହିତ ଅତି ପାଖାପାଖି ଭାବେ 'ଅଶାନ୍ତ ଗ୍ରହ' (ନୀଳଚକ୍ରର ଆହ୍ୱାନ) କୁ ବା 'ସଂଶୟ' (ନୀଳଚକ୍ରର ଆହ୍ୱାନ) କୁ ରଖି ବିଚାର କରିବା ବେଳେ ଜାଣିପାରିବା ଯେ ଯେତେବେଳେ ଅତି ଆପଣାର ଲୋକ ମଣିଷକୁ ଭୁଲି ଯାଉଛନ୍ତି ବା ନିଜ ମଣିଷର କ୍ଷତି କରିବାକୁ ପଛାଉ ନାହାନ୍ତି ସେତେବେଳେ ଆଦିବାସୀଭଳି ପୂର୍ଣ୍ଣ ଅପରିଚିତ-ଅଜଣା-ଅଶୁଣା ବ୍ୟକ୍ତି ମଣିଷର କ୍ଷତି କରିବାକୁ ଚାହିନାହାନ୍ତି । ଅର୍ଥଲୋଭ ଆଧୁନିକ ମଣିଷର ମଣିଷ ପଣିଆକୁ ଧ୍ୱଂସ କରି ଦେଉଥିବା ବେଳେ, ଆଦିବାସୀ ମଣିଷର ମଣିଷ ପଣିଆ ନିକଟରେ ଅର୍ଥ ପୂର୍ଣ୍ଣମାତ୍ରରେ ପରାସ୍ତ ହୋଇପଡ଼ିଛି । ସତେଯେପରି ଗାଳ୍ପିକ ଏହି ଗଳ୍ପ ମାଧମରେ କହିବାକୁ ଚାହିଁଛନ୍ତି ଯେ ଆମେ ମଧ ଚାହିଁଲେ ଆମର ସେହି ହୃତ ମଣିଷ ପଣିଆକୁ ପୁଣି ଥରେ ଫେରିପାଇ ପାରିବା ।

ଅନ୍ୟାନ୍ୟ ଗଳ୍ପ ଭାବରେ 'ଶିଶୁ ପାଳକୁ ଚିଠି' (ବିଧ୍ୱସ୍ତ କଳିକା)ରେ ଲେଖକଙ୍କର ଯୌତୁକ ବିରୋଧୀ ମନୋଭାବ ପ୍ରକାଶ ପାଇଥିବା ବେଳେ 'ଶିଶୁପାଳର ଚିଟାଉ' (ବିଧ୍ୱସ୍ତ କଳିକା)ରେ ଯୌତୁକ ପ୍ରଥାର ଅବିବେକୀ ତଥା ଅମାନୁଷିକ କାର୍ଯ୍ୟ ପଛରେ ଯେ ନାରୀର ହିଁ ପ୍ରଚ୍ଛନ୍ନ ହାତ ରହିଛି ଓ ନାରୀ ଚାହିଁଲେ ଯେ ଏଭଳି କୁପ୍ରଥାକୁ ସଂପୂର୍ଣ୍ଣ ଭାବରେ ନିଶ୍ଚିହ୍ନ କରିପାରିବ, ସେ ସମ୍ପର୍କରେ ଲେଖକ ଅତ୍ୟନ୍ତ ସ୍ପଷ୍ଟଭାବରେ ନିଜର ବକ୍ତବ୍ୟ ଉପସ୍ଥାପନ କରିଛନ୍ତି । ସେହପରି 'ଝରା ସେଫାଳି' (ବିଧ୍ୱସ୍ତ କଳିକା) ଗଳ୍ପରେ ବାରମ୍ବାର କନ୍ୟା ଦେଖିବାର ରୀତିକୁ ଗ୍ରହଣ କରି ପାରନ୍ତି ନାହିଁ ଲେଖକ ମହାଶୟ । 'ବୟସର କୃଷ୍ଣଚୂଡ଼ା' (ବିଧ୍ୱସ୍ତ କଳିକା) ରେ ପାଠକୀୟ ସମ୍ମାନକୁ ଲେଖକ ପାଥେୟ କରିଥିବାବେଳେ,

'ଅନୁଭୂତି ଜଣେ ମହାତ୍ମାଙ୍କ ସମ୍ପର୍କରେ' (ବିଧ୍ୱସ୍ତ କଳିକା) ଗଳ୍ପରେ ମହାତ୍ମାମାନେ କିପରି କ୍ୟାନସର ପରି ରୋଗରେ ମରଣାନ୍ତକ କଷ୍ଟକୁ ମଧ୍ୟ ଅନୁଭବ କରିପାରନ୍ତି ନାହିଁ, ଏକ ଆଲୌକିକ ଶକ୍ତିମଧ୍ୟରେ କେବଳ ଆନନ୍ଦକୁ ଉପଲବଧି କରୁଥାନ୍ତି ତାକୁ ପ୍ରକାଶ କରିଥିବା ବେଳେ 'ପୁଣ୍ୟାତ୍ମାଙ୍କ ଅନୁଚିନ୍ତା' (ନୀଳଚକ୍ରର ଆହ୍ୱାନ) ଗଳ୍ପରେ ତଥାକଥିତ ପୁଣ୍ୟାତ୍ମାଙ୍କ ବିଦେଶୀମାନଙ୍କ ପ୍ରତି କପୋଳକଳ୍ପିତ ଅବାସ୍ତବ ଭାବନାକୁ ପରିବର୍ତ୍ତନ କରି ବିଦେଶୀମାନେ ଯେ କେତେ ଜୀବମାନଙ୍କୁ ଭଲ ପାଆନ୍ତି, ସେମାନଙ୍କର ପାରିବାରିକ ସମ୍ପର୍କ ମଧ୍ୟରେ ଭଲ ପାଇବା କେତେ ନିଆରା, ତାକୁ ପ୍ରକାଶ କରିଛନ୍ତି । ଠିକ୍ ସେହିପରି 'ଦରିଆ ପାରିରେ ଗୁରୁଛାତ୍ର' (ବିଧ୍ୱସ୍ତ କଳିକା) ଗଳ୍ପରେ ବିଦେଶରେ ଗୁରୁ କିପରି ଶିଷ୍ୟକୁ ବା ଛାତ୍ରକୁ ପାଠ ପଢ଼ାଇବା ସହିତ ତା'ର ବ୍ୟକ୍ତିଗତ ଜୀବନ ମଧ୍ୟକୁ ପ୍ରବେଶକରି ଛାତ୍ରର ଭଲ ପାଇବାକୁ କିପରି ଫଳପ୍ରଦ କରିବାକୁ ଚେଷ୍ଟା କରନ୍ତି ତାହା ଦର୍ଶାଇଛନ୍ତି । 'ଶ୍ରାନ୍ତ ଗୋଧୂଳି' (ନୀଳଚକ୍ରର ଆହ୍ୱାନ)ରେ ଦେବକାନ୍ତ ଓ ସିପ୍ରାଙ୍କ ଅପାର୍ଥିବ ତଥା ଦେହୋତ୍ତର ପ୍ରେମ ଯେ କୌଣସି ପାଠକକୁ ଅଭିଭୂତ କରିପକାଇବ ନିଶ୍ଚୟ । 'ଦୁଃଖ କହିବି ନା ସୁଖ କହିବି' ଗଳ୍ପରେ ଗାଳ୍ପିକ ବିଦେଶର ସମ୍ମାନ, ସୁବିଧା ଓ ଅର୍ଥର ପ୍ରାଚୁର୍ଯ୍ୟକୁ ପଛରେ ପକାଇ ଜାତୀୟତାର ମୋହରେ ନିଜ ଦେଶରେ ଚାକିରୀ କରି ଯେଉଁ ହଇରାଣ-ହରକତ ହୋଇଛନ୍ତି, ତା'ର ଏକ ମାର୍ମିକ ଅଭିବ୍ୟକ୍ତକୁ ପ୍ରକାଶ କରିଛନ୍ତି ମାତ୍ର । 'ନମୂନା-ଏକ ଗଣତାନ୍ତ୍ରିକ ଚିନ୍ତାଧାରାର' (ବିଧ୍ୱସ୍ତ କଳିକା)ରେ ଗାଳ୍ପିକ ସତେ ଯେପରି ପାଶ୍ଚାତ୍ୟ ଦେଶର କଥା କହିବା ଛଳରେ କହିବାକୁ ଚାହିଁଛନ୍ତି ଯେ ନିର୍ବାଚନ କାଳରେ ଆମେ ଜଣକୁ ଭଲଭାବରେ ବୁଝି ଓ ତା'ର ଚିନ୍ତାଧାରାକୁ ଉପଲବ୍ଧିକରି ତାକୁ ନିର୍ବାଚିତ କରିବା ଦରକାର । ଆମେରିକାର ଜଣେ ସାଧାରଣ ଗୃହିଣୀଙ୍କର ବିଚାର ବୁଦ୍ଧି ତାଙ୍କୁ ଏତେ ଚକିତ କରି ଦେଇଛି ଯେ, ସେ ସେହି କଥାରୁ ନିଜ ଦେଶର ସାଧାରଣ ଲୋକଙ୍କ କଥାକୁ ଚିନ୍ତା କରିଛନ୍ତି ଓ ସେ ସଂପର୍କରେ କେବଳ ଅନୁଶୋଚନା କରିଛନ୍ତି ।

ଏହିପରି ଭାବରେ ଦେଖିବାକୁ ଗଲେ ଗାଳ୍ପିକ ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କର 'ନୀଳଚକ୍ରର ଆହ୍ୱାନ' ଓ 'ବିଧ୍ୱସ୍ତ କଳିକା' ଗଳ୍ପ ସଂକଳନ ଦ୍ୱୟରେ ସଂଶିତ ହୋଇଥିବା ମୋଟ ୨୪ ଗୋଟି ଗଳ୍ପ ମଧ୍ୟରେ ଗାଳ୍ପିକ ଅନେକତ୍ର ନିଜର ମାନବବାଦୀ ଦୃଷ୍ଟିଭଙ୍ଗୀ ନେଇ ସମକାଳୀନ ବାସ୍ତବତାକୁ ଆକଳନ କରିଛନ୍ତି । ସେହି କାରଣରୁହିଁ ତାଙ୍କ ଗଳ୍ପ ଗୁଡ଼ିକ ଏତେ ମନଛୁଆଁ – ଏତେ ହୃଦୟସ୍ପର୍ଶୀ ହୋଇ ପାରିଛି । ସେଦିନ କଥା ସାହିତ୍ୟର ଅନନ୍ୟ ରୂପକାର ଦସ୍ତୋଭସ୍କି କହିଥିଲେ – "What can be more fantastic and more unexpected than reality ? What can sometimes be ever more improbable than reality ? X X X Reality stands above everything else." ଏହି କଥାର ଗୂଢ଼ ରହସ୍ୟକୁ ଉପଲ୍‌ବଧି କରିଛନ୍ତି ଗାଳ୍ପିକ ଡକ୍ଟର

ମହାନ୍ତି ମହାଶୟ । ଏହି କାରଣରୁ ତ ସେ ନିଛକ ବାସ୍ତବତାକୁ ନିଜର ଗଳ୍ପ ପାଇଁ ଆଧାର ଭାବରେ ଗ୍ରହଣ କରିଛନ୍ତି । ଏହି କାରଣରୁ ମଧ୍ୟ ତାଙ୍କର ଗଳ୍ପ ଅନେକତ୍ର ହୋଇ ଉଠିଛି ଆତ୍ମଜୈବନିକ ଓ ସ୍ୱୀକାରୋକ୍ତିମୂଳକ । ଅନ୍ତର୍ଜୀବନର ଅଭିବ୍ୟକ୍ତି ପାଇଁ ଗଳ୍ପର ଭାଷା ମଧ୍ୟ ହୋଇଛି ଅନ୍ତଃସଂଳାପର ଭାଷା । ବେଳେବେଳେ ତାହା-ପ୍ରତୀକାତ୍ମକ ବା ଚିତ୍ରକଳ୍ପାତ୍ମକ ହୋଇ ଭାଷାକୁ ଅପୂର୍ବ ଶ୍ରୀ ପ୍ରଦାନ କରିବାକୁ ସକ୍ଷମ ହୋଇଛି । ମୋଟ ଉପରେ ଗାଳ୍ପିକଙ୍କର ନିଜସ୍ୱ ଅନୁଭବ ସହିତ ଯେତେବେଳେ ମାନବିକ ଆବେଦନର ସଂଯୋଗ ଘଟିଛି, ସେତେବେଳେ ଗଳ୍ପଗୁଡ଼ିକ ହୋଇ ଉଠିଛି ଅତିମାତ୍ରାରେ ରସସିକ୍ତ ଓ ପ୍ରାଣସ୍ପର୍ଶୀ । ସାମ୍ପ୍ରତିକ ଆଧୁନିକ ସାହିତ୍ୟରେ ଯେତେବେଳେ ଉତ୍ତର ଆଧୁନିକତା ଆସି ମୁହଁ ଦେଖାଇଲାଣି, ସେତେବେଳେ ଗାଳ୍ପିକଙ୍କର ନିଜସ୍ୱ ଚିନ୍ତନ ତାଙ୍କୁ ଏକ ଅନନ୍ୟ କଥାକାର ଭାବରେ ସମ୍ମାନ ଆଣିଦେବ ନିଶ୍ଚୟ, ଏଥିରେ ଦ୍ୱିରୁକ୍ତି ନଥାଇ ପାରେ ।

*ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,*
*ରଘୁନାଥଜୀଉ ମହାବିଦ୍ୟାଳୟ,*
*ଦେଉଳ ସାହି- କଟକ-୭୫୩୦୦୮*



# ସାଲବେଗର ଅଶ୍ରୁରେ କଥାକାର ଗୁରୁପ୍ରସାଦ

ଅସିତ୍ ମହାପାତ୍ର

ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କ ଲିଖିତ ଗଳ୍ପପୁସ୍ତକ ''ସାଲବେଗର ଅଶ୍ରୁ'' ବାସ୍ତବିକ୍ ମାନବ ଜୀବନର କେତୋଟି ଅଶ୍ରୁସିକ୍ତ ଘଟଣାବହୁଳ ମାର୍ମିକ ଅଭିବ୍ୟକ୍ତିର ଏକ ସଫଳ ସୃଷ୍ଟି । ସାମାଜିକ ବ୍ୟବସ୍ଥାର ପାରମ୍ପରିକ ଗଡ୍ଡାଳିକା ପ୍ରବାହରୁ ନିଜ କଲମକୁ ମୁକ୍ତକରି ପ୍ରଚଳିତ ବ୍ୟବସ୍ଥାର ରକ୍ଷଣଶୀଳତା ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି ସେ । କଥାକାର ଗୁରୁପ୍ରସାଦ ଏହି ପୁସ୍ତକରେ ମଣିଷ ମନର ହିଂସା, ଈର୍ଷା, ଘୃଣା, ଅସହିଷ୍ଣୁତା ଓ ରକ୍ଷଣଶୀଳତାକୁ ଚିହ୍ନି ଚିହ୍ନାଇବାକୁ ଚେଷ୍ଟା କରିଛନ୍ତି ।

ପୁସ୍ତକର ପୂର୍ବାଭାଷରେ ସେ ଲେଖିଛନ୍ତି –''ଦୈନନ୍ଦିନ ଜୀବନରେ ମଣିଷଯାହା ଦେଖୁଛି, ଶୁଣୁଛି ବା ଖବରକାଗଜରୁ ପଢୁଛି, ତା ଉପରେ ନିଜର ସ୍ୱାଧୀନ ମତ ପ୍ରକାଶ କରିବାକୁ ତାର ଇଚ୍ଛା ହୁଏ ।'' ତଦନୁଯାୟୀ ଲେଖକଙ୍କ ଦୃଷ୍ଟିକୁ ଆସିଥିବା ତେରଗୋଟି ଘଟଣାର ସମାହାରରେ ''ସାଲବେଗର ଅଶ୍ରୁ''ର ସୃଷ୍ଟି । ମଣିଷ ରୁଦ୍ଧ ଚିନ୍ତାର ପରିପ୍ରକାଶ ଲାଗି ଲେଖନୀ ତାଙ୍କର ପ୍ରାଣବନ୍ତ ହୋଇ ଉଠିଛି ।

ସେ ଲେଖିଛନ୍ତି – '' ସମାଜର ନିମ୍ନ ସ୍ତରରେ ଥିବା ଅସହାୟ ନିରୀହ ମଣିଷ ତା ବୁକୁର ଦୁଃଖ ଓ ହାହାକାରକୁ ସାଧାରଣରେ ପ୍ରକାଶ କରିବାର ଭାଷା ପାଏନା । ଅନ୍ତର ଭିତରେ ବିଦ୍ରୋହର ଯେଉଁ ନିଆଁ ଜଳୁଥାଏ ତାର ପରିପ୍ରକାଶ ହୁଏ ତା ଆଖିର ଟୋପା ଟୋପା ଲୁହରେ । ସମାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ନପାରି ପୃଥିବୀର କୋଟି କୋଟି ଦୀପୁ, କନକ, ମାଧମାଆ, ଡାନ୍‌ମୋରିସ୍, କାବୁଲି, ବା ସାଲବେଗଙ୍କ ଆଖିରୁ ଯେଉଁ ଲୁହ ବହିଚାଲିଛି ତାର ପ୍ରତିକାର କରିବା ଦୂରେଥାଉ, ସେ ବିଷୟରେ ସାଧାରଣ ଲୋକ ଜାଣିବାର ସୁବିଧା ପାଏନା ।'' ତେଣୁ କଥାକାର ଗୁରୁପ୍ରସାଦ ସ୍ୱୀୟ ସହଜାତ ଗଳ୍ପ ପ୍ରତିଭା ବଳରେ ତାଙ୍କ ଦୃଷ୍ଟିକୁ ଆସିଥିବା କେତୋଟି ବିଶେଷ ଘଟଣାକୁ ଗଳ୍ପ ରୂପ ଦେଇଛନ୍ତି । ସାଧାରଣ ପାଠକ ଏସବୁ ଗଳ୍ପର ଭାଷାର ସାବଲୀଳତା ଏବଂ ପ୍ରକାଶ ଶୈଳୀର ବୈଚିତ୍ର୍ୟତାରେ ମଜ୍ଜିଯାଏ । ଏ ସବୁ ଗଳ୍ପରେ କେବଳ ରହିଛି ସମସ୍ୟା, ମାତ୍ର ସେସବୁ ସମାଧାନର ଦାୟିତ୍ୱ ଲେଖକ ଚତୁରତାର ସହିତ ପାଠକମାନଙ୍କ ଉପରେ ଛାଡ଼ି ଦେଇଛନ୍ତି ।

ଏହି ପୁସ୍ତକର ଗଳ୍ପଗୁଡ଼ିକ ଚାରି ପ୍ରକାର ଭାବପ୍ରକଳ୍ପ ନେଇ ଫୁଟି ଉଠିଛନ୍ତି । ୧– ଧର୍ମଗତ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ, ୨ – ଜୀବେ ଦୟା, ୩ – ବ୍ୟାହତ ପ୍ରେମର ଭାବାବେଗ, ୪ – ମାନବିକ ମୂଲ୍ୟବୋଧ । ଶିରୋନାମା ''ସାଲବେଗର ଅଶ୍ରୁ'' କାହାଣୀରେ ଲେଖକ ଧର୍ମନାମରେ ଧର୍ମାନ୍ଧତାକୁ ବିଦ୍ରୂପ କରିଛନ୍ତି । ସମଗ୍ର ବିଶ୍ୱ ଯେତେବେଳେ ସନାତନ ଜଗନ୍ନାଥ ଧର୍ମ ତଥା ଜଗନ୍ନାଥ ପ୍ରେମରେ ନିମଜ୍ଜିତ ହେବାପାଇଁ ଆକୁଳ ହୋଇଉଠିଛି, ସେତେବେଳେ ରକ୍ଷଣଶୀଳ ଧର୍ମାନ୍ଧତାର ବଶବର୍ତ୍ତୀ ହୋଇ ବିଦେଶୀଭକ୍ତ ମାନଙ୍କପ୍ରତି ପବିତ୍ର ଶ୍ରୀ ମନ୍ଦିରର ଦ୍ୱାରଦେଶରେ ହିଁ ଦୁର୍ବ୍ୟବହାର କରାଯାଇଛି । ଡକ୍ଟର ଜାକ୍‌ସନ୍‌ଙ୍କ ଭଳି କେତେ ଯେ ଭକ୍ତ ଅତୀତରେ ଏହି ନିର୍ଯ୍ୟାତନାର ଶୀକାର ହୋଇଛନ୍ତି ତାହା କେବଳ ଇତିହାସ ହିଁ କହିବ । ''ଅସ୍ପୃଶ୍ୟଭକ୍ତି'' ଗଳ୍ପର ନାୟକ ଡାନ୍‌ମୋରିସ ଭାରତୀୟ ଦେବଭୂମିରେ ଈଶ୍ୱରଙ୍କ ଦର୍ଶନାର୍ଥୀ ହୋଇ ଲାଞ୍ଛିତ ବା ଅପମାନିତ ହେବା ପୂର୍ବରୁ ପ୍ରଭୁ ଜଗନ୍ନାଥଙ୍କ ଅପାର କରୁଣାବଶତଃ ସିଂହଦ୍ୱାରସ୍ଥ ପତିତପାବନ ବେଦୀ ଉପରେ ତିନିଠାକୁରଙ୍କ ଦର୍ଶନ ଲାଭ କରିଛନ୍ତି । ତାଙ୍କ ହୃଦୟରେ ଭକ୍ତିର ଫଲ୍‌ଗୁ ପ୍ରବାହିତ ହୋଇଛି । ମାତ୍ର ପୀତାମ୍ବରବାବୁଙ୍କ ଶତ ଅନୁରୋଧ ସତ୍ତ୍ୱେ କୁସଂସ୍କାରୀ ଧର୍ମାନ୍ଧମାନଙ୍କ ପ୍ରତିରୋଧ ଯୋଗୁଁ ମନ୍ଦିର ପ୍ରବେଶ କରିପାରି ନାହାନ୍ତି । ଏପରିକି, ଦେବୀଙ୍କ ସମ୍ମୁଖରେ ଅସହାୟ ମଣିଷକୁ ବୀଭତ୍ସ ଭାବରେ ହତ୍ୟାକରି ମାନବିକତାର ବିରୁଦ୍ଧାଚରଣ କରନ୍ତି । କଥାକାର ତାଙ୍କ ରଚିତ ''ବଳି'' ଓ ''ରକ୍ତମନ୍ଦାର'' ଗଳ୍ପରେ ଏସବୁର ନିଖୁଣ ଚିତ୍ର ଆଙ୍କି ଦେଇଛନ୍ତି । ଗରିବ ବିଧବା ମାଧମାଆକୁ ଜବରଦସ୍ତ ନିଶାଗ୍ରସ୍ତ କରି ଗାଆଁଠାକୁରାଣୀଙ୍କ ପାଖରେ ନିର୍ମମ ଭାବରେ ହତ୍ୟା କଲାବେଳେ ସେ ଯେପରି ବିକଳ ହୋଇ ତାର ଅସହାୟ ପିଲାମାନଙ୍କ ସ୍ମୃତିରେ ରଡ଼ିଛାଡ଼ି ବାହୁନି ଉଠିଛି, ସେଇ ଆର୍ତ୍ତନାଦ ମାଧ୍ୟମରେ କଥାକାର ଏ ଦେଶର କନ୍ଦିବିକନ୍ଦିରେ ସମାଜର ଦୃଷ୍ଟି ଅନ୍ତରାଳରେ ଘଟି ଯାଉଥିବା ଅଗଣିତ ମଣିଷଙ୍କର ମୃତ୍ୟୁକାଳୀନ ହତାଶମୟ ଯନ୍ତ୍ରଣାକୁ ପ୍ରତିଧ୍ୱନିତ କରିଛନ୍ତି ।

ତେବେ ମାଂସ ଭକ୍ଷଣ ଉଦ୍ଦେଶ୍ୟରେ ଜୀବଜନ୍ତୁମାନଙ୍କୁ ମାନବୋଚିତ ରୀତିରେ ହତ୍ୟାକରିବାର ଉଦାହରଣ ଦିଆଯାଇଛି ''ମୃତ୍ୟୁପଥର ଯାତ୍ରୀ'' ଗଳ୍ପରେ । ଚିକାଗୋର ଏକ କଂସେଇଖାନାରେ ମେଣ୍ଢାମାନେ କିପରି ଯନ୍ତ୍ରଣାହୀନ ମୃତ୍ୟୁବରଣ କରୁଛନ୍ତି ତାର ଏକ ନିଖୁଣ ଚିତ୍ର ଲେଖକ ତାଙ୍କ କଲମର ସାଙ୍କେତିକ ପ୍ରକାଶ ଭଙ୍ଗୀରେ ରୁଚିକର ଭାବେ ପ୍ରକାଶ କରିଛନ୍ତି ।

ସାଧାରଣତଃ ପୁରୀ, କପିଳାସ, ଚଣ୍ଡୀଖୋଲ ବା ହରିଶଙ୍କର ଭଳି ତୀର୍ଥସ୍ଥାନ ମାନଙ୍କରେ ବହୁସଂଖ୍ୟକ ମାଙ୍କଡ଼ ଦେଖିବାକୁ ମିଳନ୍ତି । ଖାଦ୍ୟାଭାବରୁ ସେମାନଙ୍କ ମଧ୍ୟରୁ

କେତେକେ ଦୁର୍ବଳ । ପ୍ରାଣୀଙ୍କ ଲାଗି ମାନବୋଚିତ ସମ୍ବେଦନଶୀଳତାର ଅଭାବ ବୋଧ କଥାକାରଙ୍କ ''ଟେଷ୍ଟରିଲିଫ୍'' ଗଳ୍ପରେ ପରିସ୍ଫୁଟ ହୁଏ । ସବୁଦିନିଆଁ ସାଧାରଣ ଏକ ମାମୁଲି ଘଟଣାକୁ ପାଠକମାନଙ୍କ ସମ୍ମୁଖରେ ଏକ ନୂତନ ଶୈଳୀରେ ପ୍ରକାଶ କରିବାର ଉଦ୍ୟମ ଡକ୍ଟର ମହାନ୍ତିଙ୍କ ପୁସ୍ତକରେ ଅବ୍ୟାହତ ରହିଛି ।

ମାନବ ଜୀବନକୁ ମଧୁମୟ କରେ ପ୍ରେମ । କିଶୋର କିଶୋରୀଙ୍କ କଅଁଳ ମନର ସବୁଜ ଆକାଶରେ ଯେତେବେଳେ ପ୍ରେମର ରଙ୍ଗୀନ ବଉଦ ଭାସିଉଠେ ସେତେବେଳେ ହୃଦୟ ହୁଏ ପଲ୍ଲବିତ । ପ୍ରେମବୀଣାର ମଧୁର ଝଙ୍କାରରେ ଯୁବମନ ଶୀହରି ଉଠେ । ବୟସ ସିଡ଼ିରେ ଉପରକୁ ଉଠି ଯାଉ ଯାଉ ପଛକଥା ପଛରେ ରହିଯାଏ । ମାତ୍ର କଦବା କେଉଁଠି ହଜିଲା ଦିନର ଅଲିଭା ସ୍ମୃତି ଜାଗରିତ ହେଲେ ମଣିଷ ନିଜର ସତ୍ତା ହରାଇବସେ । ସେଇଭଳି ପ୍ରେମର ଏକ ମଧୁମୟ ସ୍ମୃତିକୁ ପାଥେୟ କରି ଲେଖକ ''ଭସାଣି ନଈର ଢ଼େଉ'' ଗଳ୍ପ ରଚନା କରିଛନ୍ତି । ଏତଦ୍ ବ୍ୟତୀତ ବ୍ୟଥାହତ ପ୍ରେମର ଅନ୍ୟ ଏକ ଚିନ୍ତା ଫୁଟି ଉଠିଛି ''ଆହତ ମୃଗ'' ଗଳ୍ପରେ । ପ୍ରେମିକାର ଅନ୍ୟତ୍ର ବିବାହ ସମ୍ବାଦରେ ବ୍ୟଥିତ ପ୍ରେମିକର ମନୋବେଦନାକୁ ଅତି ସ୍ପଷ୍ଟଭାବରେ ରୂପାୟିତ କରିଛନ୍ତି କଥାକାର ।

ତାଙ୍କର 'ର୍‍ୟାଗିଂ', 'ଜୀବନ ଯେଉଁଠ ଜଳେ' ଓ 'ସ୍ୱାଭିମାନ' ଆଦି ଗଳ୍ପରେ ମାନବିକତାର ମୂଲ୍ୟବୋଧ ପରିସ୍ଫୁଟ ହୋଇଛି । ''ର୍‍ୟାଗିଂ'', ଗଳ୍ପରେ ଦେଶର ବୈଷୟିକ ଶିକ୍ଷାନୁଷ୍ଠାନ ମାନଙ୍କରେ ନୂଆ ଛାତ୍ରଛାତ୍ରୀମାନଙ୍କ ପ୍ରତି ପୁରାତନ ଛାତ୍ର ମାନଙ୍କର ଅସଦାଚରଣ ତଥା ଉତ୍ପୀଡ଼ନର ଏକ ନିଖୁଣଚିତ୍ର ଅଙ୍କିତ ହୋଇଛି । ଦୀପୁଭଳି ଶହ ଶହ ଯୁବକ ଏହି ର୍‍ୟାଗିଂରୂପକ ଯୂପକାଠିରେ ବନ୍ଧାହୋଇ ପ୍ରାଣବଳି ଦେଇଛନ୍ତି । ବିନୟ ମହାପାତ୍ରଙ୍କ ଭଳି ଅନେକ ପିତା ନିଜ ପୁତ୍ରର ଉଜ୍ଜ୍ୱଳ ଭବିଷ୍ୟତ ଆଶାରେ ର୍‍ୟାଗିଂରେ ଭୟାବହତା ବୁଝିନପାରି ପରିଶେଷରେ ପୁତ୍ରହରା ହେବାର ଅନେକ ଦୃଷ୍ଟାନ୍ତ ଅଛି । ଏଭଳି ଏକ କଦର୍ଯ୍ୟ ପ୍ରଥା ବିରୁଦ୍ଧରେ ଦେଶବାସୀଙ୍କୁ ସଚେତନ କରାଇବା ଦିଗରେ ଗଳ୍ପଟି କଥାକାରଙ୍କ ଏକ ସଫଳ ସୃଷ୍ଟି ।

ସେହିଭଳି, ''ଜୀବନ ଯେଉଁଠି ଜଳେ'' ଗଳ୍ପଟି ଜଣେ ସାଧାରଣ ମଣିଷର ଆତ୍ମଜ୍ୱଳନର ଅନ୍ୟଏକ ଚିତ୍ର । ମଣିଷ ତା ମନର ଅକୁହା ଦୁଃଖକୁ ଲାଘବ କରିବା ପାଇଁ ନିଶାଗ୍ରସ୍ତ ହୁଏ ତାହାହିଁ ବିଶ୍ୱଜିତ୍‌ଙ୍କ ପରି ଜଣେ ସରକାରୀ କର୍ମଚାରୀଙ୍କର ଆତ୍ମକାହାଣୀ । ଧନୀ ଶ୍ୱଶୁରଙ୍କ ପାଗଳି ଝିଅକୁ ବିବାହ କରି ବିଶ୍ୱଜିତ୍‌ଙ୍କ ପାରିବାରିକ ଜୀବନ ହା ହୁତାଶମୟ ହୋଇ ଉଠେ । ପରିବାରର କେହି ତାଙ୍କ ପିଠିରେ ଗରମ ଚା'ଢ଼ାଳି ଫୋଟକା କରି ଦେଇଥିଲେ ମଧ୍ୟ ତଦ୍‌ଜନିତ କଷ୍ଟକୁ ଆଖିବୁଜି ସହିଯିବା ଛଡ଼ା ଅନ୍ୟତ୍ର ବ୍ୟକ୍ତ କରିବାର ସାହସ ତାଙ୍କର ନାହିଁ ।

ଏହିପରି କେତେ ଯେ ବିଶ୍ୱଜିତ୍ ସେମାନଙ୍କ ଅନ୍ଧକାରାଚ୍ଛନ୍ନ ଗମ୍ଭୀରା ଭିତରେ ଆତ୍ମଗୋପନ କରି ଅହର୍ନିଶି ତିଳ ତିଳ କରି ବଶୀଭୂତ ହେଉଛନ୍ତି ତାହା ଗଳ୍ପଛଳରେ ପାଠକମାନଙ୍କ ଦୃଷ୍ଟିକୁ ଆଣିଛନ୍ତି କଥାକାର ଗୁରୁପ୍ରସାଦ ।

''ସ୍ୱାଭିମାନ'' ଗଳ୍ପରେ ସେ ଚୋର, ଡାକୁ ବା ଅସାମାଜିକ ଶ୍ରେଣୀଭୁକ୍ତ ମଣିଷ ଭିତରେ ଲୁକ୍କାୟିତ ଆତ୍ମସମ୍ମାନ ବା ସ୍ୱାଭିମାନ ଭାବର ଅବତାରଣା କରିଛନ୍ତି । ଅଭାବ ଅନାଟନର ବଶବର୍ତ୍ତି ହୋଇ ମଣିଷ ଚୋରୀ କରେ । ମାତ୍ର ସର୍ବ ସାଧାରଣଙ୍କଠାରୁ ତାର ଅପକର୍ମ ଲୁଚାଇ ରଖିବାକୁ ସେ ସଚେଷ୍ଟ ରହେ । ବିଚାରବନ୍ତ ଲୋକର ସଂସ୍ପର୍ଶରେ ଆସି ସେ ନିଜର ଦୋଷ ସ୍ୱୀକାର କରେ ଓ ନିଜକୁ ମାର୍ଜିତ କରିବାକୁ ଚେଷ୍ଟା କରେ । କିନ୍ତୁ କ୍ଷମା ବଦଳରେ ଯଦି ତାକୁ ଦଣ୍ଡ ମିଳେ ତେବେ ତାର ସ୍ୱାଭିମାନ କ୍ଷୁର୍ଣ୍ଣ ହେବାଯୋଗୁଁ ସମାଜ ଉପରେ ଦାଉ ସାଧିବାକୁ ସେ ଚେଷ୍ଟାକରେ ।

ଏହି ପୁସ୍ତକରେ ଥିବା ସବୁଗୁଡ଼ିକ ଗଳ୍ପ ବେଶ୍ ହୃଦ୍ୟ ଓ ସୁଖପାଠ୍ୟ ହୋଇଛି । ଜୀବନର କରୁଣ ଅନୁଭୂତି ଗୁଡ଼ିକର ମାର୍ମିକ ରୂପାୟନ ଏବଂ ବିବଶତାକୁ ଉତ୍ତରୀୟ କରି କାନ୍ଧରେ ବୋହି ଚାଲୁଥିବା ଡକ୍ଟର ମହାନ୍ତିଙ୍କ ଗଳ୍ପପୁରୁଷ ଏକ ନୂତନ ଭଙ୍ଗୀରେ ରୂପାୟିତ ହେଲା ଭଳି ମନେହୁଏ । ଜଣେ ପଶୁବିଜ୍ଞାନୀ ହୋଇ ସେ ଯେ, ଓଡ଼ିଆ ସାହିତ୍ୟରେ ଜଣେ ନୀରବ ସାଧକ ହୋଇ ପାରିଛନ୍ତି, ସେଥିଲାଗି ତାଙ୍କୁ ଅଭିନନ୍ଦିତ କରିବା ସଙ୍ଗେ ସଙ୍ଗେ ତାଙ୍କ ସୃଷ୍ଟିର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି ।

*ଅପର୍ଣ୍ଣା, ସୁତାହାଟ, କଟକ - ୧*



# ଗାଳ୍ପିକ ଗୁରୁପ୍ରସାଦ

ଅଧ୍ୟାପକ ଡଃ ସତ୍ୟାନନ୍ଦ ସ୍ୱାଇଁ

ଡାକ୍ତର ଗୁରୁପ୍ରସାଦ ମହାନ୍ତି ଜଣେ ସାର୍ଥକ ସାରସ୍ୱତ ସାଧକ । ଗଳ୍ପ, ପ୍ରବନ୍ଧ, ଭ୍ରମଣ କାହାଣୀ ରଚନାକରି ବୈଜ୍ଞାନିକ ଡକ୍ଟର ମହାନ୍ତି ଉତ୍କଳୀୟ ସାରସ୍ୱତ ସାମ୍ରାଜ୍ୟରେ ନିଜର ଆସନ ଦୃଢ଼ ପରିପାରିଛନ୍ତି । ଦୁଇ ଖଣ୍ଡରେ ପ୍ରକାଶିତ ଗଳ୍ପ ସଂକଳନ 'ସାଲବେଗର ଅଶ୍ରୁ' ଓ 'କହେ ସାଲବେଗ ହୀନ' ତାଙ୍କର ସୃଜନୀ ପ୍ରତିଭାର ସଫଳ ସ୍ୱାକ୍ଷର । ଅତିଲୋକପ୍ରିୟ ଜଗନ୍ନାଥ ଭଜନ ''ଆହେ ନୀଳଶୈଳ ପ୍ରବାଳ ମତ ବାରଣର'' ଶେଷ ପଦ, ''କହେ ସାଲବେଗ ହୀନ ଜାତିରେ ମୁଁ ଯବନ '' ଏହି ଗ୍ରନ୍ଥ ଦୁଇଟି ଲେଖକଙ୍କ ସାମାଜିକ ବିଷର୍ଣ୍ଣତା (Social despodency) ର ପରିଚୟ ପ୍ରଦାନ କରେ । ଅନ୍ତରଙ୍ଗ ଅନୁଭୂତି ଓ ତଜ୍ଜନିତ ମନୋବେଦନା ଗାଳ୍ପିକଙ୍କର ଗଳ୍ପଗୁଡ଼ିକୁ କରିଛି ପ୍ରାଣସ୍ପର୍ଶୀ । ଜଣେ ପ୍ରଖ୍ୟାତ ପାଶ୍ଚାତ୍ୟ ସମାଲୋଚକ ଥରେ କହିଥିଲେ, ବ୍ୟକ୍ତିର ଆବେଗ (Imotion) ପ୍ରକାଶ କରିବା ପାଇଁ କବିତା ପ୍ରକୃଷ୍ଟ ମାଧମ କିନ୍ତୁ ବ୍ୟକ୍ତିର ସାମାଜିକ ପ୍ରତିଶ୍ରୁତିବଦ୍ଧତା (social commitment) ପ୍ରକାଶ କରିବାପାଇଁ କଥା ସାହିତ୍ୟ ହେଉଛି ପ୍ରକୃଷ୍ଟ ମାଧମ । କିନ୍ତୁ କଥାକାର ଗୁରୁପ୍ରସାଦଙ୍କ ଗଳ୍ପଗୁଡ଼ିକରେ ଆବେଗ ଓ ସାମାଜିକ ଅନୁଶୀଳନର ଏକ ମଧୁର ସମନ୍ୱୟ ପରିଲକ୍ଷିତ ହୁଏ । ଜଣେ ସମ୍ବୋଦନଶୀଳ ପାଠକ ଗଳ୍ପଟିଏ ପଢୁପଢୁ ଭାବବିହ୍ୱଳ ହୋଇ ଉଠେ ଓ ଚିନ୍ତା କରେ କଣ କରାଯାଇ ପାରିବ । ଲେଖକ ଜଣେ ସାର୍ଥକ କଳାକାର ରୀତିରେ ଉପସ୍ଥାପିତ କରନ୍ତି ସମସ୍ୟା । ପାଠକକୁ ଏମିତି ଉଦ୍‌ବେଳିତ କରନ୍ତି ଯେ ପାଠକଟିଏ ଖୋଜିବୁଲେ ସମାଧାନର ବାଟ । ଗଳ୍ପଟି ପଢ଼ା ସରିବା ସଙ୍ଗେ ସଙ୍ଗେ ସରିଯାଏ ନାହିଁ ବରଂ ଆରମ୍ଭ ହୁଏ ତାର ପ୍ରତିକ୍ରିୟା । ସେଇଥିପାଇଁ ବୋଧହୁଏ କବିଗୁରୁ ତଥା ଆଧୁନିକ ଗଳ୍ପସାହିତ୍ୟର ଜନକ ରବୀନ୍ଦ୍ରନାଥ କହିଥିଲେ,''ଶେଷ ହୟଲ୍ ହଏଲନା ଶେଷ ।''

''କହେ ସାଲବେଗ ହୀନ'' ଶୀର୍ଷକଟି ମଧ ବେଶ୍ ଚିନ୍ତା ଉଦ୍ରେକକାରୀ । ସାଲବେଗ ଜଣେ ସାଧାରଣ କବି ନଥିଲେ । ସେ ଥିଲେ ଜଣେ ମହାନ ଭକ୍ତ । ତାଙ୍କର ଭକ୍ତି ବ୍ୟକ୍ତି ସ୍ୱାର୍ଥ ପାଇଁ ତାଙ୍କୁ ପ୍ରାର୍ଥନା କରିବା ପାଇଁ ଉନ୍ମନା କରୁନଥିଲା । ତା ମଧ୍ୟରେ ଥିଲା ସବୁପ୍ରାଣୀ ପାଇଁ ଆନନ୍ଦ ଅନ୍ୱେଷଣର ବାର୍ତ୍ତା । ଯେତେବେଳେ ଜଣେ ପାଠକ

ସାଲବେଗକୃତ ଭଜନ ଗାନକରେ ସେ ତା ନିଜର ଅନୁଭୂତି ହିଁ ପ୍ରକାଶ କରେ । ସାଲବେଗ ସବୁ ଆର୍ତ୍ତ ମଣିଷର ପ୍ରତିନିଧିତ୍ୱ କରି ଦୁଃଖନଳିନୀ ବନ ଦଳନପାଇଁ ନୀଳାଦ୍ରୀବାରଣ ଙ୍କୁ ପ୍ରାର୍ଥନା କରିଛନ୍ତି । ଠିକ୍ ସେହି ରୀତିରେ ଗୁରୁପ୍ରସାଦ ଅଧୁନାତନ ସମାଜରେ ସଭ୍ୟ ମଣିଷ ସାମ୍ନା କରୁଥିବା ସମସ୍ୟାର ସମାଧାନ ପାଇଁ ଆର୍ତ୍ତ ଆବେଦନ କରିଛନ୍ତି ସତେ ଯେମିତି । ସମାଜତତ୍ତ୍ୱବିଦ୍ କହନ୍ତି ମଣିଷର ସାଂସାରିକ ବୁଦ୍ଧି ଯେଉଁଠି ଶେଷ ହୋଇଯାଏ ସେଇଠି ଆରମ୍ଭ ହୁଏ ତାର ଈଶ୍ୱର ବିଶ୍ୱାସ । ଗୁରୁବାବୁଙ୍କ କ୍ଷେତ୍ରରେ ମଧ ତାହା ଘଟିଛି । ସାମାଜିକ ବିସମ୍ବାଦର ସମାଧାନ ପାଇଁ ସେ ଜନାର୍ଦ୍ଦନ ଓ ଜନତା-ଜନାର୍ଦ୍ଦନ ନିକଟରେ ଉଭାହୋଇଛନ୍ତି ଦୀନହୀନ ସାଲବେଗ ବେଶରେ ।

ଦୁଃଖ ରହୁଥିବା ମଣିଷପାଇଁ ଭାବିବାଲାଗି ଆଜିର ମଣିଷର ସମୟନାହିଁ । ପଶୁ, ପୁଣି ଯଦି ଖାଦ୍ୟଯୋଗ୍ୟ ପଶୁ କଥାପଡ଼ିଲା ତାକଥା ଭାବିବାକୁ ତାର ବେଳ ନାହିଁ । କିନ୍ତୁ ଶିଶୁଟିଏ ଯାହା ପାଖରେ ନିଷ୍ଠୁରତା ନୂଆହୋଇ ଆତ୍ମପ୍ରକାଶ କରେ ସେ କେମିତି ବ୍ୟସ୍ତ ବିବ୍ରତ ହୋଇ ପଡ଼େ । ବାପାଙ୍କ ସାଥିରେ ଖାଉଖାଉ ତା'ର ଅଭ୍ୟାସ ହୋଇଯାଏ ମାଂସଖିଆ । ଏହି ମାଂସ ହୋଇଉଠେ ତା'ର ପ୍ରିୟତମ ଆହାର । କିନ୍ତୁ ଯିଏ ମୋହନଦାସ କରମଚାନ୍ଦ ଗାନ୍ଧୀଙ୍କ ପରି ବାପା ମା'ଙ୍କଠାରୁ ମାଂସଖିଆ ଶିଖିନଥାଏ ତା' ପେଟରେ ମାଂସ ଜୀବନ୍ୟାସ ପାଇଯାଏ । ଛେଳିର କରୁଣ ଚିତ୍କାରରେ ସେ ବିନିଦ୍ର ରଜନୀ ଯାପନ କରେ । କିନ୍ତୁ ମାଂସଖିଆ ଅଭ୍ୟାସ କରିଥିବା ପିଲାଟି ଯେତେବେଳେ ମାଂସ ପ୍ରସ୍ତୁତ ପର୍ବ ଦେଖେ ତା ମନରେ ମଧ ଏମିତି ଏକ ଆଲୋଡ଼ନ ସୃଷ୍ଟିହୋଇଥାଏ । ଏହା ଏକ ମନସ୍ତାତ୍ତ୍ୱିକ ସତ୍ୟ । କିନ୍ତୁ ପିଲାଟିର ଏହି ସମ୍ବେଦନଶୀଳ ପ୍ରତିକ୍ରିୟା ପ୍ରତି ପ୍ରୌଢ଼ ବାପା ମା ଗୁରୁତ୍ୱ ଦିଅନ୍ତି ନାହିଁ । କିନ୍ତୁ ଲେଖକଙ୍କ ପ୍ରାଣରେ ଏହି ଶିଶୁ ସୁଲଭ ପ୍ରତିକ୍ରିୟା ଲକ୍ଷ୍ୟକରି ହୁଏ 'ସମବେଦନା' ଶୀର୍ଷକ ଗଳ୍ପରେ । ଯେଉଁ ବାପା ଦିନେ ପୁଅକୁ ମାଂସ ଖାଇବାକୁ ପ୍ରୋତ୍ସାହିତ କରି କହୁଥିଲେ, 'ମର୍ଦ୍ଦପିଲା ତୁ ମାଂସ ଖାଇଲେ ସିନା ବଳୁଆ ହେବୁ ।'' ସେହି ପ୍ରୌଢ଼ ଶିଶୁମାନଙ୍କ ସମ୍ବେଦନଶୀଳ ମନୋଭାବ ଲକ୍ଷ୍ୟ କରି ନିଜେ ପ୍ରଭାବିତ ହେଲେ ଘରଣୀଙ୍କ କଥାରେ ଘର ବଦଳାଇ ଛେଳି ହଣା ଜାଗାଠାରୁ ଦୂରରେ ଘରଭଡ଼ା ନେବାର ବ୍ୟବସ୍ଥା କଲେ । କିନ୍ତୁ ଏ କ'ଣ ସମସ୍ୟାର ସମାଧାନ ହେଲା ? ଗଳ୍ପ ଶେଷରେ ମେଁ, ମେଁ, ମେଁ ଶବ୍ଦ-ସୃଷ୍ଟି କରି ମାଂସାଶୀ ମଣିଷକୁ ଏହି ପ୍ରଶ୍ନ ପଚାରିଛନ୍ତି । ପରୋକ୍ଷ ଭାବେ ନିଜ ସ୍ତ୍ରୀ ସନ୍ତାନଙ୍କ ପ୍ରତି ସମ୍ବେଦନଶୀଳ ହେବା ସଙ୍ଗେ ସଙ୍ଗେ ପଶୁମାନଙ୍କ ପ୍ରତି ସମ୍ବେଦନଶୀଳ ହେବାର ଆହ୍ୱାନ ଦେଇ କବି ସୁଲଭ କୋମଳ ପ୍ରାଣରେ ପ୍ରମାଣ ଦେଇ ପାରିଛନ୍ତି ।

କଳିଆ, କଙ୍କାଳସାର 'କଳିଙ୍ଗଶିଳ୍ପୀ'' । ପେଟ ପୂରାଇବା ପାଇଁ ପଥର କାଟୁଛି । ଡହ ଡହ ଖରାବେଳେ ସହରର ଘର ଘର ବୁଲି ଚକି ବିକୁଛି । ଘରେ ଭୋକିଲା ପିଲା,

ଶନିସପ୍ତା ଭୋଗୁଥିବା ସ୍ତ୍ରୀ । ସାତପୁରୁଷର ଧନ୍ଦା ଛାଡ଼ିପାରୁନି ବେଶି ରୋଜଗାର ପାଇଁ । ଭୁଲିନାହିଁ କେମେତି ତା'ର ଅମଳରେ ପଥର କିନିଷର ଚାହିଦା ଥିଲା । କହିପାରୁନି 'କୋଣାର୍କ' ଶିଳ୍ପୀଥିଲେ ତା'ର ବାପ ଗୋସାପ । କିନ୍ତୁ ଗାଳ୍ପିକ ନାୟକଙ୍କ ପୁଅ ମୁହଁରେ ପ୍ରଶ୍ନ ଓ ନାୟକଙ୍କ ମୁହଁରେ ଉତ୍ତର ଦେଇ କହିଛନ୍ତି : –

"ବାପା, ଏ ଚକିବାଲା କ'ଣ ବଡ଼ ବଡ଼ ଦେଉଳ ତିଆରି କରିପାରିବ ? ତା'ରି ବଉଁଶ ଲୋକେ କ'ଣ ଆମ ଲିଙ୍ଗରାଜ ଦେଉଳ ଗଢ଼ିଥିଲେ ? – କହିଲି – ହଁ"

"ତା ହେଲେ ସେ ଖାଇବାକୁ ପାଉନି, ଛିଣ୍ଡା ପିନ୍ଧୁଛି .... ?"....ମିଟୁ ମୁହଁରେ ହିଁ ମିଟୁ ପ୍ରଶ୍ନର ଉତ୍ତର ଖୋଜୁଥିଲି ।"

ଲେଖକ ଏହି ଜାତୀୟ ସ୍ୱାଭିମାନ ସମ୍ବଳିତ ପ୍ରଶ୍ନଟିର ଉତ୍ତର ପାଇନାହାନ୍ତି । ସେଇଥିପାଇଁ ସମଗ୍ର ପାଠକ ସମାଜ ଆଗରେ ଏ ପ୍ରଶ୍ନଟିକୁ ସେ ଉତ୍‌ଥାପିତ କରି କଥାକାରର ସାମାଜିକ କର୍ତ୍ତବ୍ୟ କରିଛନ୍ତି । ଏହି ଗଳ୍ପରେ ବ୍ୟବହୃତ ଆବେଗମୟୀ ଭାଷା ଓ ପରିବେଶ ସୃଷ୍ଟିକରି ଲେଖକ ନିଜର ଲକ୍ଷ୍ୟସ୍ଥଳରେ ପହଞ୍ଚିପାରିଛନ୍ତି ।

ବୈଜ୍ଞାନିକ ଗୁରୁପ୍ରସାଦ ସମାଜରେ ଥିବା କୁସଂସ୍କାର ପ୍ରତି ବକ୍ରୋକ୍ତି କରିଛନ୍ତି ତାଙ୍କର ଅନ୍ୟତମ ଗଳ୍ପ 'ଶୁଭସଙ୍କେତ'ରେ । ଭାଇ ଭଉଣୀ ପରୀକ୍ଷା ଯିବା ବାଟରେ ଶବଟିଏ ଦେଖି କୋମଳମତୀ ଝିଅଟି କାନ୍ଦିପକାଇଛି । ଭାଇ ସାମାଜିକ ବିଶ୍ୱାସ 'ଶବ' ଦେଖିଲେ ଶୁଭହେବ କହି ବୁଝାଇଛି । ଲେଖକ ଚରିତ୍ର ମିନି ମୁହଁରେ କହିଛନ୍ତି - "ଗୋଟିଏ ପରିବାର ସର୍ବନାଶ ହେବାର ଦୃଶ୍ୟ ଯଦି ଅନ୍ୟଜଣକୁ ଶୁଭ ବୋଲି କୁହାଯିବ ତେବେ ସେ ଶୁଭ ନହେବା ଭଲ ।" ଏ କ'ଣ ଲେଖକଙ୍କ ମାନବବାଦୀସ୍ୱରର ପ୍ରତିଧ୍ୱନି ନୁହେଁ ? ଗାଳ୍ପିକ ପ୍ରତ୍ୟକ୍ଷ ଭାବେ ପାଠକକୁ ଉପଦେଶ ନଦେଇ ସୃଷ୍ଟିକରିଛନ୍ତି ପରିବେଶ ଯାହା ଲେଖକ ଚରିତ୍ର ମୁହଁରେ କହିଛନ୍ତି ଗୋଟିଏ ପରିବାରର ସର୍ବନାଶ ହେବାର ଦୃଶ୍ୟ ପାଠକକୁ ଆପଣଛାଏଁ ପ୍ରଭାବିତ କରିବ । କେଉଁଠି ଶିଶୁଟିଏ କେଉଁଠି ସ୍ତ୍ରୀ ଲୋକଟିଏ, କେଉଁଠି କୋମଳମତୀ କିଶୋରୀଟିଏ ତ କେଉଁଠି ପ୍ରାଜ୍ଞ ବୃଦ୍ଧଜନଙ୍କ ଚରିତ୍ର ମାଧ୍ୟମରେ ଗାଳ୍ପିକ ନିଜର ବକ୍ତବ୍ୟ ପ୍ରଦାନ କରିଛନ୍ତି । ସେଗୁଡ଼ିକର ପ୍ରାସଙ୍ଗିକତା ମଧ୍ୟ ଲକ୍ଷ୍ୟଣୀୟ । "ଅତୃପ୍ତ ସୁରାର ତୃଷ୍ଣା" ଗଳ୍ପରେ ଉପଦେଶ ଦେଇଛନ୍ତି ନାୟକଙ୍କ ବାପା । ଘର ମାଲିକର ପୁଅର ଜୀବନଯାଏ ଏହି ସୁରାପାନଯୋଗୁଁ । ବୃଦ୍ଧ ପିତାଙ୍କ ମୁହଁରେ ଲେଖକ କୁହାଇଛନ୍ତି – "ମଣିଷ ସାମୟିକ ତୃପ୍ତିପାଇଁ ସୁରାର ଆଶ୍ରୟନିଏ । ମାତ୍ର ସୁରାର ତୃପ୍ତି –ସହଜରେ ହୁଏନା । ସେଥିପାଇଁ ଲୋଡ଼ାହୁଏ ନିରୀହ ମଣିଷର ଜୀବନ ।" ଉଭୟ ସିଦ୍ଧାନ୍ତ ମୂଳକ ଓ ନିର୍ଣ୍ଣାୟକ ଉଦାହରଣ ।

ସେଦିନ କଥାସମ୍ରାଟ ଫକୀର ମୋହନ ଅଙ୍ଗେନିଭା କଥା ହେଉ ବା 'ଡାକ ମୁନ୍‌ସୀର' କାଳ୍ପନିକ ଅକୃତଜ୍ଞତା କଥା କହୁ କହୁ କହିଥିଲେ, 'ପୁଅକଥା, ଅଜାଗାଘା ଦେଖି ହୁଏନି କି ଦେଖେଇ ହୁଏନି । ଏହି ଆପତ୍ୟ-ଅକୃତଜ୍ଞତା (fillial ingratitude) ଜନକ ଜନନୀଙ୍କୁ ଯେତିକି ବ୍ୟଥାଦିଏ ସେତିକି ଦୁଃଖଦିଏ ସାଧାରଣ ଜନତାଙ୍କୁ । ଲେଖକଙ୍କ ବ୍ୟଥିତ ପ୍ରାଣ ବିଳପୀ ଉଠିଛି ଗଳ୍ପ ''ପତରି ପ୍ରୀତିମାପନେ''ର ପ୍ରତି ଶବ୍ଦରେ । ''ଭୋ, ଭୋ, କୁକୁର ଭୁକାର ବିରକ୍ତିକର ପରିବେଶରୁ ଆରମ୍ଭ ''ବାବୁ ପଇସାଟିଏ ଦିଅ''ର ହୃଦୟ ବିଦାରକ ଧ୍ୱନିରେ ଶେଷଗଳ୍ପରେ ଲେଖକ ସ୍ୱାର୍ଥାନ୍ୱେଷୀ କନ୍ୟାସନ୍ତାନର ଅକୃତଜ୍ଞ ବ୍ୟବହାର ଗାଳ୍ପିକଙ୍କୁ ଏମିତି ବିରକ୍ତ କରିଛି ଯେ ସେ ସେହି ଝିଅଟିକୁ 'ଛତରଖାଇ' ପରି ବିଶେଷଣରେ ବିଭୂଷିତ କରିଛନ୍ତି । ଯେଉଁ ପରଂପରାରେ ପିତାଙ୍କୁ ସବୁ ଦେବତାଙ୍କଠାରୁ ଶ୍ରେଷ୍ଠ ରୂପେ ଗ୍ରହଣ କରାଯାଏ ସେଠି କେମିତି ସ୍ୱାର୍ଥପର ଝିଅ ବାପ ସମ୍ପତ୍ତିବଳରେ ଚାକିରି କରି ବାପାକୁ ବଡ଼ଦାଣ୍ଡରେ ଭିକାରୀ ସଜାଏ ତାହା ଏହି ଗଳ୍ପର ମର୍ମସ୍ପର୍ଶୀ କଥାବସ୍ତୁ ।

''କହେ ସାଲବେଗ ହୀନ'' ଗଳ୍ପ ସଂକଳନର ଶୀର୍ଷକ ଗଳ୍ପଟି ଏକ ଭିନ୍ନ ସ୍ୱାଦର ଗଳ୍ପ । ଏଥିରେ ଲେଖକଙ୍କର ଭକ୍ତିଭାବ ପ୍ରକାଶିତ ହୋଇଛି । ଆମେରିକୀୟ ଇସକନ୍ ଭକ୍ତ 'କୃଷ୍ଣଦାସ' ସାଲବେଗ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ରଥଯାତ୍ରାରେ ଜଗନ୍ନାଥଙ୍କ ଦର୍ଶନ ପାଇସାରି ତାଙ୍କର ତୃଷ୍ଣା ପୂର୍ଣ୍ଣହୋଇନାହିଁ । ପତିତପାବନଙ୍କୁ ଆଲିଙ୍ଗନ କରିବାପାଇଁ ସେ ରଥଉପରକୁ ଚଢ଼ିଯାଇଛନ୍ତି । ହୀନ ଯବନ ହୋଇଥିବାରୁ ତାଙ୍କୁ ସହିବାକୁ ପଡ଼ିଛି ପଣ୍ଡାମାନଙ୍କଠାରୁ ଅନେକ ପ୍ରହାର । ଯନ୍ତ୍ରଣା ଯେତିକି ବଢ଼ିଛି ଭକ୍ତି ସେତିକି ବଢ଼ିଛି । ଶ୍ରୀରଙ୍ଗା ଚରଣକୁ ଧରିବାକୁ ଅବସର ମିଳିନି । ପଣ୍ଡାମାନେ ତାଙ୍କର ଏହି ଆନ୍ତରିକତା ସୃଷ୍ଟି କରି କୃଷ୍ଣଦାସଙ୍କୁ କୃତଜ୍ଞ କରିଛନ୍ତି ସତେ ଯେମିତି । ଭକ୍ତିର ଏହି ଆବେଗମୟ ଦିଗଟି ସପକ୍ଷରେ କହିଥିଲେ ମଧ୍ୟ ଗଳ୍ପସାରା ଆନୁଷ୍ଠାନିକ ଅତ୍ୟାଚାରପ୍ରତି ସେ ବିଦ୍ରୂପ କରିଛନ୍ତି ।

'ଅନ୍ୟ ଏକ ଯଶୋଦା', 'ପ୍ରତିଶୋଧ', 'ଘଟାନ୍ତର' ଓ 'ଉପହାସ' ଗଳ୍ପ ଗୁଡ଼ିକରେ ଦୈନନ୍ଦିନ ଜୀବନରେ ଅଭିଜ୍ଞତାମାନଙ୍କର କଳାତ୍ମକ ପରିପ୍ରକାଶ ଘଟିଛି । ସମଗ୍ର ସଂକଳନଟି ସଂପର୍କରେ ସୁସାହିତ୍ୟିକ ସ୍ୱର୍ଗତ ରାମକୃଷ୍ଣ ନନ୍ଦ କହିଥିଲେ, ''ଦୈନନ୍ଦିନ ଜୀବନର କୌଣସି ଏକ ବିଶେଷ ମୁହୂର୍ତ୍ତର ଅନୁଭୂତିରୁ କ୍ଷୁଦ୍ର ଗଳ୍ପର ଜନ୍ମ, ତାହାର ପ୍ରମାଣ ହେଉଛି ଆଲୋଚ୍ୟ ସଂକଳନଟି ତେଣୁ କଳ୍ପିତ କଥାଗୁଡ଼ିକ ଅନୁଭୂତିର କଷଟିରେ ପରୀକ୍ଷିତ ସେଇଥିପାଇଁ ପ୍ରତ୍ୟେକଗଳ୍ପ ସମ୍ବେଦନଶୀଳ ପାଠକ ପ୍ରାଣକୁ ଆନ୍ଦୋଳିତ କରେ ଓ ଆହ୍ଲାଦିତ କରେ ।



# ଡଃ ଗୁରୁପ୍ରସାଦ ମହାନ୍ତିଙ୍କ ପ୍ରଶ୍ନ : ଦୁଃଖ କହିବି କି ସୁଖ କହିବି ?

ଡଃ. ହୁସେନ୍ ରବିଗାଂଧୀ

ଇତି ମଧ୍ୟରେ ଉତ୍କଳ ସମ୍ମିଳନୀ ମାଧ୍ୟମରେ ସାରା ଓଡ଼ିଶା ତଥା ଓଡ଼ିଆ ଭାଷାର ସ୍ୱାଭିମାନ ରକ୍ଷା କରିବା ପାଇଁ ନିରବଚ୍ଛିନ୍ନ ଓ ନିରଳସ ଭାବେ କାର୍ଯ୍ୟ କରିଚାଲିଥିବା ବିଶିଷ୍ଟ ପଶୁଚିକିତ୍ସାବିତ୍, ସମାଜସେବୀ, ଦେଶପ୍ରାଣ, ଓଡ଼ିଆସ୍ୱାଭିମାନର ମୂର୍ତ୍ତିମନ୍ତ ପ୍ରତୀକ, ନୀରବ ବିପ୍ଳବୀ, ସମାଜ ସଂସ୍କାରକ ଡାକ୍ତର ଗୁରୁପ୍ରସାଦ ମହାନ୍ତିଙ୍କ ପ୍ରଣୀତ ''ଦୁଃଖ କହିବି କି ସୁଖ କହିବି'' ପୁସ୍ତକ ପାଠ କରିବାର ପରମ ସୌଭାଗ୍ୟ ଲାଭ କରି ମୁଁ ବିମୋହିତ ହୋଇ ପଡ଼ିଲି । ପୁସ୍ତକଟି ମୋତେ ଲେଖକ ଡାଃ ମହାନ୍ତି ନିଜେ ପ୍ରଦାନ କରିଥିଲେ । ଏତେ ସୁନ୍ଦର ଆଲୋଚନାମୂଳକ ପୁସ୍ତକଟିଏ ନିକଟ ଅତୀତରେ ଅନ୍ତତଃ ମୋତେ ପାଠ କରିବାର ସୁଯୋଗ ମିଳିନଥିଲା । ଏହାକୁ ତାଙ୍କର ଦୀର୍ଘ ସରକାରୀ ଚାକିରୀର ଅଭିଜ୍ଞତା କୁହାଯାଇପାରେ । ଏହାକୁ ତାଙ୍କର ଯୁକ୍ତରାଷ୍ଟ୍ର ଆମେରିକାରେ ପାଠ ପଢୁଥିବା ବେଳର ଅନୁଭୂତି କୁହାଯାଇପାରେ ବା ଏକ ସଚେତନ ସାଧାରଣ ନାଗରିକ ଦେଶର ସାଂପ୍ରତିକ ଅବସ୍ଥା ଦେଖି ନିଜର ଦୀର୍ଘଶ୍ୱାସଜନିତ ବାଙ୍ମୟତାର କିଂଚିତ୍ ପରିପ୍ରକାଶ ମଧ୍ୟ କୁହାଯାଇପାରେ । ମାତ୍ର ଏ ସବୁର ସମ୍ମିଶ୍ରଣରେ ଗୋଟିଏ ସରଳ, ଆଦର୍ଶବାଦୀ, ନୀତିବାଦୀ, ଶୃଙ୍ଖଳିତ ଦେଶପ୍ରାଣ ବ୍ୟକ୍ତିର ଆତ୍ମଆଲୋଚନମୂଳକ ସ୍ୱଗତୋକ୍ତି ହେଉଛି ''ଦୁଃଖ କହିବି କି ସୁଖ କହିବି'' ପୁସ୍ତକରେ ସନ୍ନିବେଶିତ ସମସ୍ତ ଆଲୋଚନାମାନଙ୍କର ସାରମର୍ମ । ନିଜ ଦେଶ ମାତୃକାର ସେବା କରିବା ସହିତ ନିଜ ପିତା, ମାତା, ଗ୍ରାମ, ରାଜ୍ୟ ଓ ରାଜ୍ୟବାସୀଙ୍କ ପାଇଁ କିଛି କରିବାର ଉଚ୍ଚାଭିଳାଷ ନେଇ ଏକଦା ବିଦେଶ ଯାତ୍ରା କରି ଜ୍ଞାନ ଅପହଂଚ ଇଲାକାରୁ ଜ୍ଞାନ ଫଳ ଆଣି ନିଜ ମାଟିରେ ତାହା ଫଳାଇ ଦୀର୍ଘ ପରାଧୀନତା ପରେ ସଦ୍ୟ ସ୍ୱାଧୀନ ମାଟିରୁ ଅନ୍ଧକାର ଦୂର କରିବାର ଅଦମ୍ୟ ପିପାସା ନେଇ ନିଜ ଲୋକଙ୍କ ସେବାରେ (ଉଭୟେ ସରକାରୀ ଚାକିରୀ ଓ ଚାକିରୀ ପରେ ଜଣେ ସମାଜସେବୀ ଭାବେ) ନିଜ ଜୀବନକୁ ଉତ୍ସର୍ଗ କରିବା ପାଇଁ ସ୍ୱପ୍ନବିଭୋର ଲୋକଟିର ଆତ୍ମା ହଠାତ୍ ଆମ ଦେଶ ଦଶ ଓ ରାଜ୍ୟର ବାସ୍ତବତା ସାମ୍ନାରେ ମୁହାଁ ମୁହିଁ ହୋଇ ନିଜକୁ ନିଜେ ଯେପରି ଆବିଷ୍କାର କରିଛନ୍ତି, ତାରି ନାତିଦୀର୍ଘ ଅଭିଜ୍ଞତାର ସମାହାର ଏଇ ପୁସ୍ତକରେ ସଂକଳିତ ହୋଇଥିବା ପ୍ରତ୍ୟେକଟି ପ୍ରବନ୍ଧ । କିନ୍ତୁ ସବୁ ପ୍ରବନ୍ଧର ଉପସଂହାରରେ

ମୁଁ ଗୋଟିଏ ଉଜ୍ଜ୍ୱଳ ଆଲୋକରେଖା (କ୍ଷୀଣ ହେଲେ ବି) ଦେଖିପାରିଲି । ତାହା ହେଉଛି, ଏ ସମସ୍ତ ଦୀର୍ଘଶ୍ୱାସ ଓ ନେତିବାଚକ (Negative) ସାମାଜିକ ବାସ୍ତବତା ଭିତରେ ବି ଡାଃ ମହାନ୍ତି ହତାଶ ହୋଇ ନାହାନ୍ତି ଏବଂ ବିଶ୍ୱାସ ରଖିଛନ୍ତି ଏପରି ଏକ ସମୟକୁ, ଯେତେବେଳେ ଏ ମାଟିରେ ପୁଣି ମାନବାତ୍ମାର ମହକ / ସୁରଭି ଓଜାଡ଼ି ହୋଇ ପଡ଼ିବ ରାତ୍ରିର ଗଭୀର ଅନ୍ଧକାର ଭିତରେ ରଜନୀଗନ୍ଧାର ବାସ୍ନା ବିଚ୍ଛୁରିତ ହେବାଭଳି ।

ଡାଃ ଗୁରୁପ୍ରସାଦ ମହାନ୍ତି ଜଣେ ପଶୁଚିକିତ୍ସାବିତ୍ ଓ ସମାଜସେବୀ ହେବା ସହିତ ଜଣେ ଉନ୍ନତମାନର ସାହିତ୍ୟିକ । ଦୀର୍ଘଦିନ ଧରି ସେ ବାଣୀ ସାଧନାରେ ତଲ୍ଲୀନ ଅଦ୍ୟାବଧି ତାଙ୍କର ପ୍ରାୟ ୩୦ଟିରୁ ଅଧିକ ପୁସ୍ତକ ପ୍ରକାଶିତ ଏବଂ ତାଙ୍କର ଭ୍ରମଣ କାହାଣୀ ''ପାତାଳ ପୁରୀର ହାଲ୍‌ଚାଲ୍'' ୧୯୯୦ ସାଲରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇ ସାରିଛି । ସେ ଲେଖିଛନ୍ତି ଗଳ୍ପ, ଉପନ୍ୟାସ, ଭ୍ରମଣ କାହାଣୀ ଓ ଅନେକ ପ୍ରବନ୍ଧ । ହେଲେ ଆମ ସମୟର ଜଣେ ସ୍ୱାଭିମାନୀ ଓଡ଼ିଆ ଏବଂ ଦେଶ ବିଦେଶରେ ଓଡ଼ିଆ ଅସ୍ମିତାକୁ ରକ୍ଷା କରିବା ପାଇଁ ଏକଲବ୍ୟ ପରି ସାଧନାରତ ବ୍ୟକ୍ତିତ୍ୱ ଭାବେ ତାଙ୍କୁ ପ୍ରାୟ ସମସ୍ତେ ଜାଣନ୍ତି । ''ଦୁଃଖ କହିବି କି ସୁଖ କହିବି'' ତାଙ୍କର ସଦ୍ୟତମ ସାରସ୍ୱତ ବାଟିକାର ଏକ ଅତି ସୁନ୍ଦର ଓ ଅତି ସୁଗନ୍ଧଯୁକ୍ତ ସୁମନ ।

''ଦୁଃଖ କହିବି କି ସୁଖ କହିବି'' ଗ୍ରନ୍ଥରେ ବିଭିନ୍ନ ସମୟରେ ରଚିତ ତାଙ୍କର ୨୬ଟି ପ୍ରବନ୍ଧ ସନ୍ନିବେଶିତ । ପ୍ରଥମ ପ୍ରବନ୍ଧ 'ପକା କମ୍ବଳ ପୋତ ଛତା' ଠାରୁ ଶେଷ ପ୍ରବନ୍ଧ 'ଉଲଗ୍ନ ସୀତା' ଯାଏଁ ପ୍ରତିଟି ଲେଖା ତାଙ୍କର ଚିନ୍ତା ଉଦ୍ରେକକାରୀ ଭାବଗମ୍ଭୀର ତଥା ଆମ ସମାଜର ବର୍ତ୍ତମାନର ଆଇନାରେ ପ୍ରତିବିମ୍ବିତ ସାମାଜିକ ବାସ୍ତବତା । ଏହି ପୁସ୍ତକର ପ୍ରାକ୍ ଭାଗରେ ବିଶିଷ୍ଟ ପ୍ରାବନ୍ଧିକ ଓ ଆଲୋଚକ ଡଃ ପ୍ରଫୁଲ୍ଲ କୁମାର ମହାନ୍ତି (ପ୍ରାକ୍ତନ ଅଧକ୍ଷ, ରେଭେନ୍ସା ମହାବିଦ୍ୟାଳୟ) ଯଥାର୍ଥରେ ପୁସ୍ତକଟିକୁ ସଂକ୍ଷେପରେ କହିଛନ୍ତି, 'ପିୟ ବାକ୍ୟ ଓ ଅପ୍ରିୟ ଅନୁଭୂତି' । ଅର୍ଥାତ୍ ଲେଖକ ଡଃ ଗୁରୁପ୍ରସାଦ ନିଜ ହୃଦୟର ସମସ୍ତ ପ୍ରିୟ ବାକ୍ୟମାନଙ୍କ ମାଧମରେ ନିଜ ଜୀବନର କଟୁ, ତିକ୍ତ, କଷାୟ ଅପ୍ରିୟ ଅନୁଭୂତିମାନଙ୍କୁ କଲମବଦ୍ଧ କରିଛନ୍ତି ବର୍ତ୍ତମାନର ସମାଜବିଜ୍ଞାନୀମାନଙ୍କ ବିଚାର ପାଇଁଏବଂ ସଚେତନ କରାଇବାକୁ ଯତ୍ନ କରିଛନ୍ତି ଭବିଷ୍ୟତର ବଂଶଧରମାନଙ୍କୁ ଯେ, ଯେଉଁ ଛଳନା ବା ହିପୋକ୍ରେସି ମଧ୍ୟରେ ଆମ ସମୟର ବଂଶଧର ବଞ୍ଚିଛନ୍ତି, ଆତଯାତ ହେଉଛନ୍ତି, ନିଜ ଧୋବଧାଉଳିଆ ଚେହେରାକୁ ଦେଖାଇ ନିଜର ବଡ଼ପଣ ପ୍ରଦର୍ଶନ କରୁଛନ୍ତି, ତାହା ଯେମିତି ଆଗାମୀ ପିଢ଼ି ପାଇଁ ପ୍ରେରଣାର ବିଷୟ ନ ହେଉ । ଆଗାମୀ ପିଢ଼ି ଏକ ସ୍ୱଚ୍ଛ ଓ ସ୍ଫଟିକ ଚରିତ୍ରର ରକ୍ତମାଂସଧାରୀ ମଣିଷ ହୁଅନ୍ତୁ, ସତ୍ୟନିଷ୍ଠ ଓ ନିଷ୍କପଟ ହୁଅନ୍ତୁ । ଏହାହିଁ ଡାଃ ଗୁରୁପ୍ରସାଦ ନିଜ ରଚିତ ପ୍ରତ୍ୟେକଟି ଲେଖାରେ ନୀରବ ଭାବେ କହିଛନ୍ତି ।

ଏ ଗ୍ରନ୍ଥର ସଂକଳିତ ପ୍ରତ୍ୟେକଟି ପ୍ରବନ୍ଧ ତାଙ୍କର ଆତ୍ମାର କରୁଣ ବିଳାପ ସହିତ ଆସନ୍ତାକାଲି ପାଇଁ ଏକ ସ୍ୱଚ୍ଛ, ନିର୍ମଳ, କର୍ଦ୍ଦମମୁକ୍ତ ସ୍ଫଟିକ ସମାନ ସାମାଜିକ ନିର୍ଝରିଣୀ

ପ୍ରବାହ ପାଇଁ ଭାବପ୍ରବଣ ଅଭିବ୍ୟକ୍ତି ସହିତ ଗମ୍ଭୀର ମାର୍ଗଦର୍ଶନକାରୀ ଅଭିବ୍ୟକ୍ତି ମଧ୍ୟ ଅଛେ । 'ପକା କମ୍ବଳ ପୋତ ଛତା' ପ୍ରବନ୍ଧରେ ଲେଖକ ଖେଦୋକ୍ତି ପ୍ରକାଶ କରି କହୁଛନ୍ତି - ''ଭଗବାନ ହିରଣ୍ୟକଶ୍ୟପୁକୁ ମାରିବାକୁ ତା' ଘରର ଗୋଟିଏ ସ୍ତମ୍ଭରୁ ସିନା ବାହାରି ପଡ଼ିଥିଲେ, ଏବେ ଲକ୍ଷ ଲକ୍ଷ ହିରଣ୍ୟକଶ୍ୟପୁଙ୍କୁ ମାରିବାକୁ କେତେ ସ୍ତମ୍ଭ ଫଟେଇବେ ଫଟାନ୍ତୁ । ବାସ୍ତବିକ ଏବର ସାମାଜିକ ବ୍ୟବସ୍ଥାରେ ସମସ୍ତେ ତ ଊଣା ଅଧିକେ ହିରଣ୍ୟକଶ୍ୟପୁ । କାହାକୁ ମାରିବା ଓ କାହାକୁ ତାରିବା ?

ଆଉ ଗୋଟିଏ ପ୍ରବନ୍ଧ 'ଗାନ୍ଧିବାଦର ଅପମୃତ୍ୟୁ'ରେ ଠିକ୍ ସେହି ପରି ଲେଖକ ଦୀର୍ଘଶ୍ୱାସ ପକାଇ କହୁଛନ୍ତି, ''ତେଣୁ ଏ ଦେଶରେ ଅଭିଜ୍ଞ ଲୋକଙ୍କର ସରକାରୀ ସ୍ତରରେ କାଟ୍‌ତି ନାହିଁ । ଯିଏ କାମଧନ୍ଦା ଛାଡ଼ି ଉପରିସ୍ଥ ହାକିମଙ୍କ ନିକଟବର୍ତ୍ତୀ ହେବାକୁ ପ୍ରତିଯୋଗିତାରେ ଆଗେଇ ପାରିଲା, ସେଇ କେବଳ ଉପରକୁ ଉଠିପାରିବ । ନିଜର କର୍ତ୍ତବ୍ୟରେ ହେଳା କଲେ ମଧ୍ୟ ସେ ହେବ ସରକାରଙ୍କ ସୁନାପୁଅ । କଥାରେ ଅଛି, କହିବୋଲି ପାରେ ଯିଏ, ପଚା ଚିଙ୍ଗୁଡ଼ି ବିକେ ସିଏ ।'' ବାସ୍ତବିକ ଆମ ପ୍ରଶାସନର ଅସଲି ଚେହେରାକୁ କେତେ ଅଳ୍ପ କଥାରେ ଲେଖକ ସରଳ ଭାବରେ ପରଶି ଦେଇଛନ୍ତି, ତାହା ପ୍ରଶାସନକୁ ଖୁବ୍ ନିକଟରୁ ଦେଖୁଥିବା ଲୋକ ବେଶ୍ ଆରାମ୍‌ରେ ବୁଝିପାରିବ । ଏ ଦେଶରେ ଅଧିକାର୍‌ଗତ ଭେଦଭାବ କାହିଁ କେଉଁ ସ୍ମରଣାତୀତ କାଳରୁ ଚଳି ଆସୁଛି । ସେଇଥିପାଇଁ ଭାରତ ପୃଥିବୀରେ ଏକମାତ୍ର ଦେଶ, ଯେଉଁଠି ଜନ୍ମରୁ ଜାତି ବ୍ୟବସ୍ଥାଟି କାଏମ୍ କରାଯାଇଛି । ଯୋଗ୍ୟତା ଥାଉ ବା ନଥାଉ, ରାଜାପୁଅ ରାଜା, ମନ୍ତ୍ରୀପୁଅ ମନ୍ତ୍ରୀ, ପୁରୋହିତପୁଅ ପୁରୋହିତ ଓ ଝାଡୁଦାର୍‌ର ପୁଅ ଝାଡୁଦାର । ଏକଥା ଅନ୍ୟ କୌଣସି ସଭ୍ୟ ଦେଶରେ ନଥିଲା କି ନାହିଁ । କିନ୍ତୁ ଆମ ଦେଶରେ ଏହା ଏବେ ମଧ୍ୟ ବିଦ୍ୟମାନ । ଲେଖକ ଯଥାର୍ଥରେ ତାଙ୍କର ପ୍ରଥମ ଶ୍ରେଣୀ ନାଗରିକ ରଚନାରେ ଏକଥାକୁ ଅତି ସରଳ ଭାଷାରେ ଓ ଅଳ୍ପ ଶବ୍ଦରେ ଚମତ୍କାରଭାବେ କହି ପାରିଛନ୍ତି । ମାତ୍ର ଆମ ଦେଶରେ ଆବହମାନ କାଳରୁ ଯେଉଁ ଅଧିକାରଗତ ଭେଦଭାବ ଚଳି ଆସୁଛି, ଆଜିର ଗଣତାନ୍ତ୍ରିକ ଶାସନରେ ସେହି ଚିନ୍ତାଧାରାରେ ବେଶୀ କିଛି ପରିବର୍ତ୍ତନ ଦେଖାଯାଏନା । ଏଇଟା ରାଜାଙ୍କର, ଏଇଟା ମନ୍ତ୍ରୀଙ୍କର ଆଦି ସୁବିଧା ସୁଯୋଗ ବଣ୍ଟାକୁଣ୍ଟା କରିବା ଏବେ ମଧ୍ୟ ସମାଜରେ ପ୍ରଚଳିତ ହେଉଛି । ଏପରିକି ମଠ, ମନ୍ଦିର, ସାଧୁ ସନ୍ନ୍ୟାସୀଙ୍କ ପାଖରେ ଭି.ଆଇ.ପି. ଓ ସାଧାରଣ ଜନତା ମଧ୍ୟରେ ପ୍ରଭେଦ ଦେଖିବାକୁ ମିଳେ । ଦେବଦର୍ଶନ ପାଇଁ ସାଧାରଣ ଜନତା ଲମ୍ବା ଧାଡ଼ିବାନ୍ଧି ଘଣ୍ଟା ଘଣ୍ଟା ଅପେକ୍ଷା କରି ରହିଥିବା ବେଳେ ଭି.ଆଇ.ପି.ମାନେ ଆଗେ ଯାଇ ଠାକୁରଙ୍କୁ ଦର୍ଶନ କରିଆସନ୍ତି । ତହସିଲ୍ ବା ସରକାରୀ ଅଫିସ୍ ମାନଙ୍କରେ ଟାଉଟର, ଠକ, ଗୁଣ୍ଡା ବା ରାଜନୈତିକ ଲୋକଙ୍କ ପ୍ରତାପ କେତେ ବେଶୀ, ତାହା କେବଳ ଅନୁଭବ ହିଁ କରିପାରିବ ।''

ଏହାର ସମାଧାନ ପାଇଁ ଡାକ୍ତର ଗୁରୁପ୍ରସାଦ କିନ୍ତୁ ଯେଉଁ ମାର୍ଗ ନୂଆ ପୀଢ଼ିର ତରୁଣ/ତରୁଣୀମାନଙ୍କୁ ଦେଖାଇବାକୁ ଚାହିଁଛନ୍ତି, ସେଥିରେ ମୁଁ ଏକମତ ନୁହେଁ । ଅବସ୍ଥା ଓ ବ୍ୟବସ୍ଥା ବିରୁଦ୍ଧରେ ଶିକ୍ଷିତ ସମ୍ପ୍ରଦାୟ ଏକ କ୍ରାନ୍ତିକାରୀ ଦୃଷ୍ଟିଭଙ୍ଗୀ ଗ୍ରହଣ କରି ସଂଗ୍ରାମ କରିବା ପରିବର୍ତ୍ତେ ସେମାନଙ୍କୁ ପଳାୟନପନ୍ଥୀ ହେବା ପାଇଁ ଆହ୍ୱାନ ଦେବା ସମୀଚୀନ ନୁହେଁ ବୋଲି ମୋର ମତ । ଲେଖକ କହୁଛନ୍ତି, ''କେବଳ ମିଛ ଖଚ, ଜାଲ୍, ଫିସାଦ, ଅନ୍ୟାୟ, ଅନାଚାରର ନାଲିଫିତା ଶାସନ ତଳେ ଶ୍ୱାସରୁଦ୍ଧ ହୋଇ ଧକେଇ ଧକେଇ ଜୀଇଁ ରହିବା ତୁଳନାରେ ବୁଦ୍ଧିବୃତ୍ତି ଓ ଅଧ୍ୟବସାୟକୁ ପାଥେୟ କରି ବିଦେଶ ମାଟିରେ ନିଜର ସାମର୍ଥ୍ୟ ବା କାର୍ଯ୍ୟଦକ୍ଷତା ପ୍ରତିପାଦିତ କରିପାରିଲେ ଜଣେ ସୁଯୋଗ୍ୟ ଲୋକ ଭାବରେ ସମ୍ମାନର ସହିତ ଶାନ୍ତିପୂର୍ଣ୍ଣ ଜୀବନଯାପନ କରିବା ଯୁବସମାଜର ଧେୟ ହେଉ ।'' ମାତ୍ର ପରିବର୍ତ୍ତନକାମୀ ବୈପ୍ଳବିକ ଚିନ୍ତାଧାରାର ବ୍ୟକ୍ତି ଏ ମତ ସହିତ କେବେ ବି ସହମତ ହୋଇ ପାରିବେ ନାହିଁ ।

ସୀମିତ ପୃଷ୍ଠାରେ ପୁସ୍ତକରେ ସଂକଳିତ ସମସ୍ତ ପ୍ରବନ୍ଧ ଉପରେ ଆଲୋଚନା କରିବା ସମ୍ଭବପର ନୁହେଁ । ସେ ଶିଳ୍ପ ସମୃଦ୍ଧ ପୁଞ୍ଜିବାଦୀ ଦେଶ କତିପୟ ବୁଲି ଓ ସେଠାରେ ସ୍ୱଳ୍ପଦିନ ବାସକରି ସେଠାକାର ସମାଜର କେତୋଟି ଭଲ ଦିଗକୁ କେବଳ ନିରୀକ୍ଷଣ କରିଛନ୍ତି । ବିଶେଷକରି ଯୁକ୍ତରାଷ୍ଟ୍ର ଆମେରିକାର ସମାଜ ବ୍ୟବସ୍ଥା ପ୍ରତି ତାଙ୍କର ଦାରୁଣ ଦୁର୍ବଳତା ପ୍ରାୟ ପ୍ରତ୍ୟେକ ପ୍ରବନ୍ଧରେ ସ୍ପଷ୍ଟ ପ୍ରତୀୟମାନ । ସେହି ପୁଞ୍ଜିବାଦୀ ବ୍ୟବସ୍ଥା ଅନେକ ଶହ ବର୍ଷର ବୁନିୟାଦି ଓ ଶୋଷଣ ଫଳରେ ଗଢ଼ି ଉଠିଛି । ଆମେରିକୀୟ ନାଗରିକମାନଙ୍କର ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ଅନ୍ୟାନ୍ୟ ବିଭବ ଆଫ୍ରିକାର କଳାଲୋକଙ୍କ ଗୋଲାମୀ, ଦକ୍ଷିଣ ଆମେରିକାର ତମ୍ବାଳିଆ ବର୍ଣ୍ଣର ଲୋହିତ ଭାରତୀୟ ଓ ଏସିଆର ମାଟିଆ ବର୍ଣ୍ଣର ଲୋକମାନଙ୍କୁ ଶୋଷଣ କରି କେତେ ଇରାକ୍ ଓ କେତେ ଆଫଗାନିସ୍ଥାନରେ ନରସଂହାର କରି ହାସଲ କରାଯାଇଛି, ତାହା କେବେ ଡାଃ ଗୁରୁପ୍ରସାଦ ସମୀକ୍ଷା କରିଛନ୍ତି କି ?

ଭାରତପରି ନିକଟ ଅତୀତରେ ସାମ୍ରାଜ୍ୟବାଦୀ ଶୋଷଣ କବଳରୁ ସ୍ୱାଧୀନ ହୋଇଥିବା ଦେଶମାନଙ୍କର ସାମାଜିକ, ରାଜନୈତିକ, ଆର୍ଥିକ ଓ ଧାର୍ମିକ ବ୍ୟବସ୍ଥା ସମ୍ପର୍କରେ ଜଣେ ସମାଜଶାସ୍ତ୍ରୀ ଭାବେ ଅନୁଧ୍ୟାନ କରି ଏବଂ ଏଥିରେ ରହିଥିବା ତ୍ରୁଟି ବିଚ୍ୟୁତିର ସଂଶୋଧନ୍ କରିବା ପାଇଁ ଡାଃ ଗୁରୁପ୍ରସାଦ ଏକ ଦାର୍ଶନିକର ଦୃଷ୍ଟିଭଙ୍ଗୀ ଗ୍ରହଣ କରିଥିଲେ, ସେ ଭାରତୀୟ ଆତ୍ମାକୁ ଅଧିକ ସଫଳ ଭାବେ ଅବଲୋକନ କରିପାରିଥାନ୍ତେ ।

ତେବେ ଏଇ ପ୍ରବନ୍ଧମାନଙ୍କ ମଧ୍ୟରେ ଅନେକ ରୋଚକ ସତ୍ୟ ଘଟଣାର ଅବତାରଣା କରାଯାଇଛି । ଯାହା ଆଶ୍ଚର୍ଯ୍ୟ ଲାଗିଲେ ବି ଶହେ ପରସେଣ୍ଟ ସତ୍ୟ । ଏପରି ଏକ ଘଟଣା 'ଖୁଲ୍ ଯା ସିମ୍ ସିମ୍' ପ୍ରବନ୍ଧରେ ଅଛି । କଥା ହେଲା କୋରାପୁଟ ପରି ତଥାକଥିତ ଏକ ପଛୁଆ ଜିଲ୍ଲାର ଜଣେ ୪ର୍ଥ ଶ୍ରେଣୀ କର୍ମଚାରୀ କିପରି ଦୋ ନମ୍ବରୀ

କାଇଦା କରି ୪୬ ଜଣ ପିଲାଙ୍କୁ ଚାକିରୀରେ ରଖାଇ ଲକ୍ଷ ଲକ୍ଷ ଟଙ୍କା ସମ୍ପତ୍ତିର ମାଲିକ ହୋଇ ପାରିଲା, ଏହା ଆମ ପ୍ରଶାସନ ଓ ସରକାରଙ୍କ କାର୍ଯ୍ୟକାରିତା ଉପରେ ଏକ ମସ୍ତବଡ଼ ପ୍ରଶ୍ନବାଚୀ ଲଗାଇ ଦେଇଛି । ଏମିତି କେତେ ଯେ ଉପର ବା ତଳ କର୍ମଚାରୀମାନେ 'ଖୁଲ୍ ଯା ସିମ୍ ସିମ୍' ଦ୍ୱାରା ରାଜ୍ୟ ଓ ଦେଶକୁ ରସାତଳଗାମୀ କରାଇଛନ୍ତି ଏବଂ କରାଉଛନ୍ତି, ତାର ହିସାବ ନାହିଁ । ଏଭଳି ଏକ ରୋଚକ ଅଥଚ ଚିନ୍ତା ଉଦ୍ରେକକାରୀ ଘଟଣାକୁ ସାର୍ବଜନୀନ ସ୍ତରକୁ ଆଣି ଡାଃ ଗୁରୁପ୍ରସାଦ ଆମ ପ୍ରଶାସନ ଆଖିରେ ଯେଭଳି ଆଙ୍ଗୁଠି ଗେଞ୍ଜିଛନ୍ତି, ତାହା ତାଙ୍କର ଲେଖକୀୟ ବିଦ୍‌ବତ୍ତାକୁ ସୂଚିତ କରିଦେଉଛି ।

ଏହି ସଂକଳନଟିରେ 'ଷଢ଼େଇକଳା ଅଂତରାଳେ' ବୋଲି ଏକ ପ୍ରବନ୍ଧ ସ୍ଥାନିତ କରି ଲେଖକ ପ୍ରତ୍ୟେକ ଓଡ଼ିଆ ପ୍ରାଣ ବ୍ୟକ୍ତିପାଇଁ ଯେଉଁ ସ୍ୱାଭିମାନର କଥା ପରଶି ଦେଇଛନ୍ତି, ତାହା ଲୁହ ଓ କୋହର ଇତିହାସ । ଏକ ଓଡ଼ିଆଭାଷୀ ଅଞ୍ଚଳ କିପରି ଓଡ଼ିଶାଠାରୁ ଚିରଦିନ ପାଇଁ ବିଚ୍ଛିନ୍ନ ହୋଇଗଲା, ତାର କରୁଣ ଇତିହାସ ବୟାନ କରିଛନ୍ତି । କେବଳ ସେତିକି ନୁହେଁ, ସେଠାରେ କ୍ରମାନ୍ୱୟରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ କିପରି ହତ୍ୟା କରାଯାଇଛି, ତାର କରୁଣ ତଥ୍ୟ ମଧ୍ୟ ସେ ଉପସ୍ଥାପନା କରିଛନ୍ତି । ଏହି ପ୍ରବନ୍ଧଟି ପାଠକରି ମୋ ପରି ଜଣେ କବିର ଆଖିରୁ ଅନବରତ ଲୁହ ଓ ଛାତିରୁ କୋହଭରା ଦୀର୍ଘଶ୍ୱାସ ସୃଷ୍ଟି କରାଇବାରେ ଡାଃ ଗୁରୁପ୍ରସାଦ ସମର୍ଥ ହୋଇଛନ୍ତି । ଏ ସମୀକ୍ଷା ଲେଖିଲାବେଳେ ମୁଁ ମନେକରୁଛି ଷଢ଼େଇକଳାର ଓ ଖରସୁଆଁରେ ଓଡ଼ିଆତ୍ୱର ହତ୍ୟା ପାଇଁ ଆମ ସମସ୍ତଙ୍କ ସହିତ ଆମର ଭୀରୁ ମାନସିକତା, ନପାରିବାର ପୌରୁଷ ଏବଂ ମେଷଶିଶୁସମ କ୍ଳୀବତା ହିଁ ସର୍ବୋପରି ଦାୟୀ । ସମସ୍ତ ଓଡ଼ିଆ ଜାତିପରି ସେ ଷଢ଼େଇକଳା ଓ ଖରସୁଆଁର ବିଚ୍ଛେଦରେ ହତାଶ ହୋଇଛନ୍ତି ସତ, ମାତ୍ର ତଥାପି ଆଶାର କ୍ଷୀଣରେଖା ତାଙ୍କ ବକ୍ତବ୍ୟରୁ ଝରି ପଡ଼ିଛି । ଉକ୍ତ ପ୍ରବନ୍ଧର ଉପସଂହାରରେ ସେ ଲେଖିଛନ୍ତି, ''ଯଦି ଏ ଦେଶର ସର୍ବୋଚ୍ଚ ନ୍ୟାୟାଳୟ ଉପରେ ଆମର ଭରସା ଥାଏ, ତାହା ହେଲେ ସେଇଠି ଏ ଦେଶର ଓଡ଼ିଆମାନଙ୍କ ତରଫରୁ ଆପତ୍ତି ଦର୍ଶାଇବାକୁ ହେବ ଯେ, ସ୍ୱାଧୀନତା ପ୍ରାପ୍ତିର ପରବର୍ଷଠାରୁ ଭାରତସରକାର ଏବଂ ବିହାରସରକାର ଓଡ଼ିଆମାନଙ୍କୁ ମିଳିଥିବା ସାମାନ୍ୟତମ ନ୍ୟାୟବିଚାରକୁ ଜବରଦସ୍ତ ଛଡ଼େଇ ନେଇ ଷଢ଼େଇକଳା-ଖରସୁଆଁରେ ଯେଉଁ ଓଡ଼ିଆମାରଣ ଯଜ୍ଞ ଆରମ୍ଭ କରିଛନ୍ତି, ତାର ବିଧିବଦ୍ଧ ବିଚାର କରାଯାଇ ଦୋଷୀକୁ ଦଣ୍ଡ ଦିଆଯାଉ ଏବଂ ଓଡ଼ିଶାକୁ ଷଢ଼େଇକଳା-ଖରସୁଆଁ ଅଞ୍ଚଳ ଫେରସ୍ତ ଦିଆଯାଉ । ମୋ ମତରେ ଏହା ଏକ ସୁଚିନ୍ତିତ ଯୁଗୋପଯୋଗୀ ବିଚାର ଏବଂ ପରାମର୍ଶ । ଉତ୍କଳ ସମ୍ମିଳନୀତରଫରୁ ରାଜ୍ୟ ସରକାରଙ୍କ ଉପରେ ଏଥିପାଇଁ ଚାପ ପ୍ରୟୋଗ କରାଯାଇ ଭାରତର ସର୍ବୋଚ୍ଚ ନ୍ୟାୟାଳୟକୁ ନ୍ୟାୟ ପାଇଁ ଯିବାଲାଗି ପ୍ରବର୍ତ୍ତାଯିବା ଉଚିତ ।

ଲେଖକ ନିଜ ପୁସ୍ତକର ଶେଷ ପ୍ରବନ୍ଧ ‘ଉଲଗ୍ନ ସୀତା’ର ଉପସଂହାରରେ (ଯାହାକୁ ଏହି ଗ୍ରନ୍ଥର ଉପସଂହାର ବୋଲି ମୁଁ ବିବେଚନା କରେଁ) ଅତି ମର୍ମସ୍ପର୍ଶୀ । ଦରଦୀ ତଥା ଭାବପ୍ରବଣ ଶବ୍ଦମାନଙ୍କରେ ମତବ୍ୟକ୍ତ କରି ଏ ଜାତିକୁ ଆହ୍ୱାନ ଦେଇଛନ୍ତି ଯେ, ‘‘ତେଣୁ ବେଳହୁଁ ଏ ଦେଶର ଜାତୀୟ ଚରିତ୍ରକୁ ନିର୍ମଳ କରିବା ଲାଗି ପ୍ରତ୍ୟେକ ସ୍ତରରେ ପ୍ରୟାସ ହେବା ଉଚିତ । ଜାତୀୟ ସ୍ତରରେ ଗାନ୍ଧୀ, ନେହେରୁ, ବିନୋବା, ଜୟପ୍ରକାଶ ବା ଶାସ୍ତ୍ରୀଙ୍କ ଭଳି ତ୍ୟାଗପୂତ ନିର୍ମଳ ବ୍ୟକ୍ତିମାନଙ୍କୁ ମିଶାଇ ପ୍ରାଦେଶିକ ସ୍ତରରେ ଏ ଦେଶର ଲକ୍ଷ ଲକ୍ଷ ସ୍ୱାଧୀନତା ସଂଗ୍ରାମୀ, ଯେଉଁମାନେ ଦେଶକୁ ଇଂରେଜ ଶାସନରୁ ମୁକ୍ତକରି ରାମରାଜ୍ୟ ପ୍ରବର୍ତ୍ତନ କରିବା ପାଇଁ ଜୀବନର ସମସ୍ତ ସୁଖ, ଶାନ୍ତି ଓ ସଂଭୋଗକୁ ପରିତ୍ୟାଗ କରି ସ୍ୱାଧୀନତା ସଂଗ୍ରାମର ପ୍ରଜ୍ୱଳିତ ବହ୍ନିରେ ଲମ୍ଫ ଦେଇଥିଲେ, ସେଇମାନଙ୍କର ଜୀବନାଦର୍ଶ ଆମର ଧ୍ୟେୟ ହେଉ । ଏଇ ଉପସଂହାର ବକ୍ତବ୍ୟରେ ସେ ତାଙ୍କର ମର୍ମବାଣୀ ଆମକୁ ତଥା ଆମର ଆଗାମୀ ପିଢ଼ିକୁ ପ୍ରଦାନ କରି ଆଶାର ଏକ ସୁନେଲୀ କିରଣ ଦେଖାଇ ପାରିଛନ୍ତି । ଯଥାର୍ଥରେ ତାଙ୍କର ଏହି ଗ୍ରନ୍ଥର କେତୋଟି ବକ୍ତବ୍ୟ ସହ ମୁଁ ସହମତ ନ ହେଲେ ବି ସାମଗ୍ରିକ ଭାବେ ତାଙ୍କ ଭାବନା ଓ ଚିନ୍ତା ସହିତ ଏକମତ । ମୋର ଆଶା, ଏ ପୁସ୍ତକ ପାଠ କରିଥିବା ବା ପାଠ କରିବାକୁ ଅପେକ୍ଷା କରିଥିବା ପ୍ରତିଟି ବ୍ୟକ୍ତି ପାଇଁ ଡାଃ ଗୁରୁପ୍ରସାଦ ମହାନ୍ତି ଅନେକ ଆଶା, ଅନେକ ସମ୍ଭାବନା ଓ ଅନେକ ସ୍ୱସ୍ତିର ସାରସ୍ୱତ, ମାନସିକ ତଥା ବୌଦ୍ଧିକ ଖୋରାକ ଯୋଗାଇ ପାରିଛନ୍ତି, ସେଥିପାଇଁ ସେ ଆମ ସମସ୍ତଙ୍କ ନିକଟରେ ଧନ୍ୟବାଦାର୍ହ ।

ସଂକ୍ଷେପରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଅତି ସରଳ ଓ ସାବଲୀଳ ଭାଷାରେ ଆମ ସମସ୍ତଙ୍କ ମନକୁ ଛୁଇଁ ପାରିବା ଭଳି ସାମ୍ପ୍ରତିକ ଘଟଣାମାନଙ୍କର ଉଦାହରଣମାନ ଦେଇ ଆମକୁ କହୁଛନ୍ତି ଯେ, ଏବେ ବି ସମୟ ଅତୀତ ହୋଇନାହିଁ । ନିଜକୁ, ନିଜ ଦେଶକୁ ଓ ନିଜ ଜାତିକୁ ନୂଆକରି ଗଢ଼ି ତୋଳିବା ପାଇଁ ଚାଲ ସଙ୍କଳ୍ପ ନେବା ଏବଂ ସତରେ ସଂକଳ୍ପର ବେଳ ତଥାପି ବିତିଯାଇନି । ହୁଏତ କିମ୍ବଦନ୍ତୀର ସେଇ କଇଁଛ ପରି ଆମେ ସମୟର ଠେକୁଆମାନଙ୍କୁ ତାଙ୍କରି କ୍ରୀଡ଼ାଙ୍ଗନରେ ଅତିକ୍ରମ କରି ଦୌଡ଼ ପ୍ରତିଯୋଗିତାରେ ବିଜୟୀ ହୋଇପାରିବା । କେବଳ ଦୃଢ଼ ମାନସିକତା ବା କିଛି କରିବାର ଅଙ୍ଗୀକାର ଆମ ପାଖରେ ଥିଲେ ହେଲା ।

ଏ ପୁସ୍ତକଟି ଯେ ପାଠକୀୟ ଆଦୃତି ଲାଭ କରିବ, ଏଥିରେ କୌଣସି ସନ୍ଦେହ ନାହିଁ ।

*ଉପସଭାପତି, ଓଡ଼ିଶା ସାହିତ୍ୟ ଏକାଡ଼େମୀ,*
*ଭୁବନେଶ୍ୱର - ୧୪*



# ଭ୍ରମଣ ସାହିତ୍ୟ ବନାମ୍ ଗୁରୁପ୍ରସାଦଙ୍କ ପାତାଳପୁରୀର ହାଲଚାଲ

ଶ୍ରୀ ପ୍ରଫୁଲ୍ଲ କୁମାର ଦାଶ (ସବ୍ୟସାଚୀ)

ଓଡ଼ିଆ ସାହିତ୍ୟ ପୀଠରେ 'ଭ୍ରମଣ ସାହିତ୍ୟ'କୁ ଏକ ଅବିଚ୍ଛିନ୍ନ ବିଭବର ସ୍ୱୀକୃତି ମିଳିଥିଲେ ମଧ୍ୟ, ଗୁଣାତ୍ମକ ଦୃଷ୍ଟିରୁ ଏହାର ସଂଖ୍ୟାତ୍ମକ ଦିଗଟି ଅନ୍ୟ ବିଭବମାନଙ୍କ ଭଳି ସେତେ ଆଖିଦୃଶିଆ ହୋଇପାରି ନାହିଁ । କେତେଗୁଡ଼ିଏ କାରଣ ମଧ୍ୟରୁ ମୁଖ୍ୟ କାରଣଟି ହେଲା, ଯେଉଁ ଓଡ଼ିଆ ପୁଏ ଅତୀତରେ ବିଦେଶ ଯାତ୍ରା କରି ଓ ବିଭିନ୍ନ ଦର୍ଶନୀୟ ସ୍ଥାନ ପରିଭ୍ରମଣ କରି ଧନ-ମାନ-ଯଶ-ଗୌରବାଦିର ଅଧିକାରୀ ହୋଇ ଇତିହାସ ସୃଷ୍ଟି କରିଥିଲେ, ତାଙ୍କରି ଦାୟାଦମାନେ ଏ ଯୁଗରେ ବିଦେଶ ତ ଅନେକ ଦୂର, ନିଜ ମାତୃଭୂମିର ଦର୍ଶନୀୟ ସ୍ଥାନ ଗୁଡ଼ିକ ନିଜର ଜୀବଦ୍ଦଶାରେ ଦେଖିପାରିବାର ସୌଭାଗ୍ୟ ମଧ୍ୟ ଅର୍ଜନ କରିପାରୁ ନାହାନ୍ତି । ଏହା ମୂଳରେ ଦାରିଦ୍ର୍ୟର ପ୍ରତିବନ୍ଧକ ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ଜଞ୍ଜାଳଗ୍ରସ୍ତ ଜୀବନରେ ମାଟି କାମୁଡ଼ି ପଡ଼ିବାର ସେହି ସ୍ୱାଭାବିକ ଅଭ୍ୟାସ ଏବଂ ବିଦେଶ ବିମୁଖତାରୂପୀ ବିରୋଧ ମନୋବୃତ୍ତିରେ ଆଚରିତ ନିଷ୍ଠାପର ଅଧ୍ୟବସାୟ । ସେଥିପାଇଁ ଉନିବିଂଶ ଶତାବ୍ଦୀ ଯାବତ୍, ସଂହିତା-ଧର୍ମକୁ ଅର୍ଥ, ଅର୍ଥାନ୍ତର କରାଯାଇ, ସମୁଦ୍ରପାରି ବିଦେଶଯାତ୍ରା ଉପରେ ଅନେକ ସଂସ୍କାର-ଛାପମରା ପ୍ରାୟଶ୍ଚିତ୍ତର ବିଧିବିଧାନ ଖଞ୍ଜି ଦିଆଯାଇଥିଲା । ଏଭଳି ପରିପ୍ରେକ୍ଷୀରେ ଓଡ଼ିଆ ଭାଷାରେ ଅଧିକ ପରିମାଣର ଶିକ୍ଷଣୀୟ ତଥା ସୁଖପାଠ୍ୟ ଭ୍ରମଣସାହିତ୍ୟ ନଥିବାରୁ ଅବଶୋଷ ପ୍ରକଟ କରିବାର ପ୍ରକୃତରେ କୌଣସି ଯଥାର୍ଥତା ନାହିଁ । ତେଣୁ ଯେତିକି ସୃଷ୍ଟି ବା କୃତି ଆଲୋକକୁ ଆସିଛି ସେତିକିକୁ ଅନାସକ୍ତ ଭାବରେ ଗ୍ରହଣ କରି ତାହାର ମୂଲ୍ୟାଙ୍କନ କରି, ଆପାତତଃ ସନ୍ତୁଷ୍ଟ ହେବାକୁ ପଡ଼ିବ ।

ଓଡ଼ିଆ ଭାଷାରେ ନିଚ୍ଛକ ଭ୍ରମଣ-ସାହିତ୍ୟର ଏଭଳି ଅବକ୍ଷୟମାଣ ଯୁଗରେ, ଯେଉଁଠି ଆତ୍ମପ୍ରଚାର ସର୍ବସ୍ୱ ରୁଚିହୀନ ଆତ୍ମବଡ଼ିମା କଥନର ମେଦରେ ଭାରାକ୍ରାନ୍ତ ପୃଥୁଳାକାୟ କେତୋଟି ଭ୍ରମଣକାହାଣୀ ଗ୍ରନ୍ଥ ପ୍ରକାଶକଙ୍କ ଉଇ-ପିମ୍ପୁଡ଼ି-ମୂଷା ଅଧ୍ୟୁଷିତ ବନ୍ଦ ଗୋଦାମର ଚାରିକାନ୍ଥ ମଧ୍ୟରେ ରୁଦ୍ଧଶ୍ୱାସ, ସେଠି ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କ ରଚିତ ନାତିବୃହତ୍ କଳେବରର ଦୁଇଖଣ୍ଡି ଭ୍ରମଣ ସାହିତ୍ୟ, ''ପାତାଳପୁରୀର

ହାଲଚାଲ''- ଶୀର୍ଷକରେ ଓଡ଼ିଆ ବାଣୀ ବିତାନରେ ନବୀନ ସଂଯୋଗର ଦାବୀ ବହନ କରି ପ୍ରତିଭାତ ହୋଇଥିବା, ନିଶ୍ଚିତ ଭାବରେ ଦୁଃସାହସିକ ସାରସ୍ୱତ ପଦକ୍ଷେପ । ଏହା ହୋଇ ନଥିଲେ, ପ୍ରଥମ ଖଣ୍ଡର ପ୍ରକାଶକ, ଦ୍ୱିତୀୟଖଣ୍ଡର ପ୍ରକାଶକ ମଧ ହୋଇଥାନ୍ତେ । ଯା' ଫଳରେ ଗ୍ରନ୍ଥଟି ସମ୍ପୂର୍ଣ୍ଣ ରୂପରେ ପ୍ରାପ୍ତି ନିମିତ୍ତ ଦୁଇଟି ପୁସ୍ତକାଳୟର ଦ୍ୱାରସ୍ଥ ହେବାକୁ ପଡୁନଥାନ୍ତା । ଓଡ଼ିଆ ସାହିତ୍ୟର ପ୍ରକାଶନ କ୍ଷେତ୍ରରେ ଏହାଠାରୁ ବଳି ଦୁଃଖଦ, ଲଜ୍ଜାକର, ଦୁର୍ଭାଗ୍ୟଜନକ ଦୃଷ୍ଟାନ୍ତ ଆଉ କ'ଣ ଥାଇପାରେ ? ଅବକ୍ଷୟମୁଖୀ ଓଡ଼ିଆ ପ୍ରକାଶନ ଜଗତରେ ବୋଧହୁଏ ଏଇଥିପାଇଁ ଭ୍ରମଣ ସାହିତ୍ୟ ପ୍ରାଚୁର୍ଯ୍ୟ-ରହିତ । ତଥାପି ମଧ ଡକ୍ଟର ଗୁରୁପ୍ରସାଦଙ୍କର ପୁସ୍ତକ ଦୁଇଟି ଆଶା ସଂଚାର କରେ ।

ଓଡ଼ିଶାରେ ଭ୍ରମଣ-ସାହିତ୍ୟରେ ତିନୋଟି ପର୍ଯ୍ୟାୟ ମୁଦ୍ରିତ ରୂପପରିଗ୍ରହ କରିଥିବାର ପରିଲକ୍ଷିତ ହୁଏ । ତହିଁରୁ ଆଦ୍ୟ ପର୍ଯ୍ୟାୟଟି କାବ୍ୟିକ ସୃଷ୍ଟି ରୂପରେ ଫକୀରମୋହନଙ୍କ 'ଉତ୍କଳ ଭ୍ରମଣ' ଶୀର୍ଷକରେ ବିଶେଷ ପ୍ରସିଦ୍ଧ ଯଦିବା ତାଙ୍କ ପୂର୍ବରୁ ଗୋବିନ୍ଦ ରଥ ପ୍ରମୁଖ ଏ ଦିଗରେ ନିଜର ଲେଖନୀ ଚାଳନା କରିଛନ୍ତି ଏବଂ ପରେ ମଧ ବହୁ ସୃଷ୍ଟି ଆଲୋକକୁ ଆସିଛି । ଦ୍ୱିତୀୟ ପର୍ଯ୍ୟାୟଟି ହେଉଛି ଓଡ଼ିଶା ବାହାରେ ଭାରତର ବିଭିନ୍ନ ସ୍ଥାନ ଭ୍ରମଣର ପଦ୍ୟ ଓ ଗଦ୍ୟାତ୍ମକ ସରସ-ସୁନ୍ଦର ବର୍ଣ୍ଣନା ଯେଉଁଥିରେ ଶଶୀଭୂଷଣ ରାୟଙ୍କର ୧୯୮୬ ମସିହାର ଭ୍ରମଣ ବୃତ୍ତାନ୍ତ, 'ଦାକ୍ଷିଣାତ୍ୟ ଭ୍ରମଣ' ରଚନାଟି ଉଲ୍ଲେଖଯୋଗ୍ୟ । ସେହି ମସିହାରୁ ମଧୁସୂଦନ ଦାସଙ୍କ କଲମରେ ବିଦେଶ ଭ୍ରମଣ ବୃତ୍ତାନ୍ତକୁ ଆଧାରକରି ପ୍ରଥମ କରି ତୃତୀୟ ପର୍ଯ୍ୟାୟଟିର ଶୁଭାନୁକୂଳ ଘଟିଥିଲା ଏକ ପ୍ରବନ୍ଧ ମାଧମରେ, ଯାହା ଭ୍ରମଣ ସାହିତ୍ୟର ଧର୍ମକୁ ସମ୍ପୂର୍ଣ୍ଣ ରକ୍ଷାକରି ପାରିନଥିଲେ ବି, ଆଗାମୀ ଦିନ ପାଇଁ ଏକ ପ୍ରାଥମିକ ଦୃଷ୍ଟାନ୍ତ ବହନ କରିଥିଲା । ଫଳରେ ମହେଶ ଚନ୍ଦ୍ର ରାୟ ପ୍ରଭୃତି ବିଦେଶ ଭ୍ରମଣକାରୀ ମାନେ ପରେ ପରେ ଏହି ତୃତୀୟ ପର୍ଯ୍ୟାୟଟିକୁ ପ୍ରସିଦ୍ଧି ପ୍ରଦାନ କରି ପାରିଥିଲେ । ସେଥିପାଇଁ ବିଦେଶ ଭ୍ରମଣ କାହାଣୀ ଏବେ ଓଡ଼ିଆ ଭାଷାରେ ପ୍ରଚୁର ନ ହେଲେ ବି ବିରଳ ନୁହେଁ । ଡକ୍ଟର ଗୁରୁପ୍ରସାଦଙ୍କ 'ପାତାଳ ପୁରୀର ହାଲଚାଲ' ପୁସ୍ତକଦ୍ୱୟ, ଏହି ଅନ୍ତିମ ପର୍ଯ୍ୟାୟର ଅନ୍ତର୍ଭୁକ୍ତ ଏକ ପ୍ରାମାଣିକ ରଚନା, ଯେଉଁଥିରୁ 'ଦେଶ-ବିଦେଶ ମଧରେ ସାଂସ୍କୃତିକ ସମ୍ପର୍କ, ଭାବଗତ ଐକ୍ୟ ଓ ଆନ୍ତର୍ଜାତିକ ସଂହତି ସ୍ଥାପନରେ ଭ୍ରମଣ ସାହିତ୍ୟର ଗୁରୁତ୍ୱ'କୁ ଅକ୍ଷୁଣ୍ଣ ରଖି କେବଳ କାହାଣୀ ବା ବୃତ୍ତାନ୍ତ ନୁହେଁ, ସାହିତ୍ୟ ଦିଗଟି ପ୍ରତି ମଧ ବିଶେଷ ଗୁରୁତ୍ୱ ଦିଆଯାଉଥିବାର ପ୍ରମାଣ ମିଳିଥାଏ ।

'ପାତାଳ ପୁରୀର ହାଲଚାଲ' ଗ୍ରନ୍ଥଟି ଲେଖକଙ୍କର ଆମେରିକା-ରହଣି ଓ ବିଭିନ୍ନ ସ୍ଥାନ ଭ୍ରମଣର ଅନୁଭୂତିକୁ ନେଇ ରଚିତ । ଏହା ମଧରେ, ଗୃହରୁ ଅନୁକୂଳ ପୂର୍ବକ ଓଡ଼ିଶା ଓ ଭାରତର କେତୋଟି ସ୍ଥାନ ଅତିକ୍ରମି, ଉଡାଜାହାଜରେ ଆକାଶ ପଥ ଦେଇ ବିଦେଶକୁ ଉଡ଼ିଯିବାର ଅଭିଜ୍ଞତା ତଥା ଅନୁଭୂତି ଭିତରେ ଆକାଶ ପଥରେ ନିଜର ଭାବ, ଭଙ୍ଗୀ, ଚାଲିଚଳଣ, ଚିନ୍ତା, ଚେତନା, ଆଖପାଖର ସ୍ଥିତି ପ୍ରଭୃତି ଖୁଣ୍ଟିନାଟି ବିଷୟର ଜୀବନ୍ତ

ବର୍ଣ୍ଣନା ଅତ୍ୟନ୍ତ ଶିକ୍ଷାପ୍ରଦ ଓ ଉପଭୋଗ୍ୟ । ଅବଶ୍ୟ ଆମେରିକା ଭ୍ରମଣ ଉପରେ ଏହି ରଚନାଟି ପ୍ରଥମ ନୁହେଁ, ବହୁ ପୂର୍ବରୁ ମଧ୍ୟ ଗୋଲକ ବିହାରୀ ଧଳ, ଡକ୍ଟର କୁଞ୍ଜ ବିହାରୀ ଦାଶ, ଶ୍ରଦ୍ଧାକର ସୂପକାର, ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର, ଡକ୍ଟର ରାଧାନାଥ ରଥ, ଶ୍ରୀହର୍ଷ ମିଶ୍ର, ରମାମଣୀ ମିଶ୍ର ପ୍ରମୁଖ ନିଜର ଆମେରିକା ଭ୍ରମଣର ସରସ ଅନୁଭୂତିମାନ ପୁସ୍ତକ ଆକାରରେ ଉପସ୍ଥାପନା କରିଅଛନ୍ତି । କିନ୍ତୁ ସେ ସମସ୍ତ ଭିତରେ ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କ ସୃଷ୍ଟିଟି, ନିଶ୍ଚିତ ଭାବରେ ଶୈଳୀ ସ୍ୱାତନ୍ତ୍ର୍ୟରେ ଅନୁପମ ଯେହେତୁ ଏଇଟି ଉଦ୍ଦେଶ୍ୟମୂଳକ ଭାବରେ ଶିଶୁ ଓ କିଶୋରମାନଙ୍କ ପାଇଁ ରଚିତ ହୋଇଥିଲେ ମଧ୍ୟ ଭାଷା, ଭାବ ଓ ଉପସ୍ଥାପନା ରୀତିର ଯାଦୁକରୀରେ ଯେ କୌଣସି ବୟସ ଓ ସ୍ତରର ପାଠକ-ପାଠିକାଙ୍କ ସକାଶେ ଅତ୍ୟନ୍ତ ସୁଖପାଠ୍ୟ ହୋଇପାରିଛି । ସବୁଠାରୁ ବଡ଼କଥା, ଭ୍ରମଣ କାହାଣୀଟି ପ୍ରଥମେ 'ସଂସାର' ଶିଶୁ ସାହତ୍ୟ ପତ୍ରିକାରେ ଧାରାବାହିକ ରୂପରେ ପ୍ରକାଶ ପାଇ, ଶିଶୁ ଓ କିଶୋର ଜଗତରେ ସାଫଲ୍ୟର ପ୍ରମାଣ, ବିଶେଷ ଆଦୃତି ଲାଭ କରିବା ପରେ, ଏବେ ମୁଦ୍ରିତ ପୁସ୍ତକ ଆକାରରେ ପ୍ରକାଶ ପାଇ ସାହିତ୍ୟର ବିସ୍ତୃତ ସରହଦ ମଧ୍ୟରେ ପ୍ରବେଶ କରିଅଛି । ଏପରି ଧରଣର ପୁସ୍ତକ ଓଡ଼ିଆ ଭାଷାରେ ଆଙ୍ଗୁଠିରେ ଗଣିହେବା ଭଳି ମାତ୍ର କେତୋଟି, ଏଯାବତ୍ ଆଲୋକକୁ ଆସିଛି, ଯାହା ମଧ୍ୟରେ ଡକ୍ଟର ମହାନ୍ତିଙ୍କ କୃତିଟି ସ୍ୱକୀୟତାର ସ୍ୱାକ୍ଷର ବହନ କରିବାର ଆଶା କରାଯାଇପାରେ ।

ପୁସ୍ତକ ଦୁଇଟି କୋଡ଼ିଏ ବର୍ଷ ତଳର କଥା – ରୁ ଆରମ୍ଭ ହୋଇ ପ୍ରଥମ ଭାଗଟି ୧୨୦ ପୃଷ୍ଠାରେ ଓ ତା' ପରେ ଦ୍ୱିତୀୟ ଭାଗଟି ଅଷ୍ଟାଦଶ ପରିଚ୍ଛଦରୁ ଅନ୍ତିମ ପର୍ଯ୍ୟନ୍ତ ମୋଟ ୧୪୧ ପୃଷ୍ଠାରେ ଶେଷ ହୋଇଅଛି । ଏ ଭଳି ଦୁଇଭାଗରେ ଗ୍ରନ୍ଥଟିରେ ମୋଟ୍ ୪୨ ଗୋଟି ପରିଚ୍ଛେଦ ଦେଇ ଲେଖକ ତାଙ୍କର ଆମେରିକା ଭ୍ରମଣର ଅନୁଭୂତିକୁ ସରସ-ସୁନ୍ଦର-ମନଛୁଆଁ ଉପନ୍ୟାସର ଶୈଳୀରେ ଯେଭଳି ପରିବେଷଣ କରିଛନ୍ତି, ପାଠକ ତାହା ମୂଳରୁ ପଢ଼ିବା ଆରମ୍ଭ କଲେ, ଶେଷ ନ କରି ତୃପ୍ତ ହୋଇପାରିବ ନାହିଁ । ଏହି ପରିପ୍ରେକ୍ଷୀରେ ଅନ୍ୟାନ୍ୟ ଭ୍ରମଣ ସାହିତ୍ୟ ମଧ୍ୟରେ ପାତାଳପୁରୀର ହାଲଚାଲ ସୃଷ୍ଟିର ବୈଶିଷ୍ଟ୍ୟ ପ୍ରତିପାଦନ ନକଲେ ଲେଖକୀୟ ସ୍ୱାତନ୍ତ୍ର୍ୟକୁ ଠିକ୍ ଭାବେ ବୁଝିହେବ ନାହିଁ । ଏହି ସ୍ୱାତନ୍ତ୍ର୍ୟଟି ପୁସ୍ତକ ଦୁଇଟିର ପ୍ରତି ପୃଷ୍ଠାରେ ପ୍ରତିଭାତ କହିବା ବାହୁଲ୍ୟ । ଗତାନୁଗତିକତାଠାରୁ ଏହାର ଫରକଟି ହେଲା, ଅନ୍ୟାନ୍ୟ ଭ୍ରମଣ କାହାଣୀଗୁଡ଼ିକ ସମ୍ପୃକ୍ତ ଭ୍ରମଣକାହାଣୀଙ୍କ ଦିନଲିପି ବା ଡାଏରୀମୂଳକ ହୋଇ, ତାଙ୍କ ସହ ତାଙ୍କ ବନ୍ଧୁବାନ୍ଧବ ଓ ଚିହ୍ନାପଡ଼ିଥିବା ବେଳେ, ଡକ୍ଟର ମହାନ୍ତିଙ୍କର ପାଞ୍ଚବର୍ଷର ଆମେରିକା ରହଣିର ଘଟଣା ବହୁଳ ଅନୁଭୂତି ତଥା ଅଭିଜ୍ଞତାବଳୀତକ, ଦିନଲିପି-ରଚନା ଶୈଳୀକୁ ପରିତ୍ୟାଗ କରି ହୋଇଛି ଦୀର୍ଘ କାହାଣୀମୂଳକ ସ୍ୱକୀୟତାର ଏକ ଅଭିନବ ଦୃଷ୍ଟାନ୍ତ । ଏ ଭଳି ରଚନା, ବହୁଳ ଭାବ କେବଳ ବଙ୍ଗଳା ସାହିତ୍ୟରେ ଉପଲବ୍ଧ ହୋଇପାରେ । ଏହି ସୃଷ୍ଟିରେ ଆତ୍ମପ୍ରଚାରସର୍ବସ୍ୱ ହୋଇ ଡକ୍ଟର ମହାନ୍ତି କେଉଁଠି କୁତ୍ରାପି ନିଜକୁ ବିଜ୍ଞପିତ କରିବାର ଅଭିଳାଷ ପୋଷଣ କରିଦ୍ୱବାର ମନେ ହୁଏନାହିଁ । ବରଂ ଉପନ୍ୟାସ ବା କାହାଣୀର ନାୟକ

ଭଳି ନିଜକୁ ଏକ ପ୍ରତିନିଧି-ଚରିତ୍ର ରୂପରେ ଦର୍ଶାଇ, ଅନ୍ୟାନ୍ୟ ବହୁ ଉପଯୋଗୀ ଚରିତ୍ରଙ୍କୁ ପ୍ରମୁଖତା ପ୍ରଦାନ କରିବାରେ ମୁକ୍ତମୁଖ ହୋଇ ଉଠିଛନ୍ତି, ଯା' ଫଳରେ ଏକ ସୀମିତ ପରିବେଶରୁ ଦୂରେଇ ଯାଇ ଅନୁଭୂତିର ବିସ୍ତୃତ ଇଲାକାରେ ଠିଆହେବା ଦ୍ୱାରା, ବହୁ ଅନାଲୋଚିତ ତଥା ଅନାଲୋକିତ ଶିକ୍ଷଣୀୟ ଦିଗ, ତାଙ୍କ ସୃଷ୍ଟିରେ ଆଲୋକିତ ଓ ଆଲୋଚିତ ହୋଇ ଓଡ଼ିଆ ପାଠକଙ୍କୁ ମଧ୍ୟ ଆନନ୍ଦପ୍ରଦ ଜ୍ଞାନାଲୋକ ବିତରଣ କରିବାରେ ସମର୍ଥ ହୋଇ ପାରିଛି ।

ଗ୍ରନ୍ଥଟିର ଦ୍ୱିତୀୟ ବିଭବ ହେଉଛି, କାହାଣୀ ସନ୍ନିହିତ ଭାଷା ବିନ୍ୟାସ ଏବଂ ବାକ୍ୟ ଗଠନର ଶୈଳୀ ସ୍ୱାତନ୍ତ୍ର୍ୟ । ଏହାହିଁ ଲେଖକଙ୍କର ସ୍ୱକୀୟତାକୁ ଆରମ୍ଭରୁ ଶେଷଯାଏଁ ଭାସ୍ୱରିତ କରିପାରିଛି । ''ଏହାର ବାକ୍ୟଗୁଡ଼ିକ ନାତିଦୀର୍ଘ ଏବଂ ଶବ୍ଦଗୁଡ଼ିକ ସୁବୋଧ୍ୟ କଥିତ ଭାଷାର'' । ଯେପରି ଏକ ନିର୍ଦ୍ଦିଷ୍ଟ ଶବ୍ଦସୀମା ମଧ୍ୟରେ ଲେଖକ ନିଜର ''ଦୀର୍ଘ କଥନିକା''ଟିକୁ ''ଅକ୍ଷର ସମ୍ବନ୍ଧୀ କିର୍ତ୍ତୀ'' ମଧ୍ୟରେ ପ୍ରତିବଦ୍ଧ କରିବା ସକାଶେ ଅଙ୍ଗୀକାରବଦ୍ଧ ! ସେଥିପାଇଁ ଗ୍ରନ୍ଥଟିରେ ନାହିଁ ଶବ୍ଦର ଆଡ଼ମ୍ବର, ଆଳଙ୍କାରିକ ଚାତୁର୍ଯ୍ୟ ବା ଅର୍ଥ, ଅର୍ଥାନ୍ତର ଭାବବିଳାସର୍ ବୌଦ୍ଧିକ ହଟଚମଟ, ମାତ୍ର ଅଛି ସରଳ ସାବଲୀଳ ସରସ ସୁବୋଧ ମାତୃଭାଷାର ଅଭିଜାତ ସଂପନ୍ନ ଲଳିତ ଶବ୍ଦଗୁଂଜନ ଏବଂ ହୃଦୟ ଛୁଆଁ, ସ୍ମୃତିରେ ଗୁନ୍ଥନ ଯୋଗ୍ୟ ଭାବୋଦ୍ଦୀପକ କ୍ଷୁଦ୍ରବାକ୍ୟ ସଂହତ ନିର୍ମଳ କାଚକେନ୍ଦୁ ଜଳର ଋଚିକର ତଥା ସଂଯତ ଗଦ୍ୟଶୈଳୀ, ଯାହା ପୂର୍ବସୂରୀମାନଙ୍କ ସୃଷ୍ଟିଠାରୁ ଏ ସୃଷ୍ଟିଟିକୁ ନିଆରା କରି ଦେଖାଇଥାଏ ।

ଏତଦ୍‌ବ୍ୟତୀତ, ଏହି ଆମେରିକା ଭ୍ରମଣ ଅନୁଭୂତିକୁ ସମ୍ବଳକରି ପୁଷ୍ଟ ଗ୍ରନ୍ଥଟିର ବିଶେଷ ଉଲ୍ଲେଖଯୋଗ୍ୟ ଦିଗଟି ହେଲା, ଏହାର ସର୍ବମୋଟ ୨୬୧ ପୃଷ୍ଠା ସୀମା ଭିତରେ କଥିତ ବିଷୟବସ୍ତୁର ବ୍ୟାପକତା ତଥା ଗଭୀରତା । ଏହାର ବ୍ୟାପ୍ତିର ଦ୍ରାଘିମାକୁ କେଉଁଠି ମଧ୍ୟ ସୀମା ଚିହ୍ନଟର ଅକ୍ଷାଂଶ ସ୍ପର୍ଶ କରିପାରିନାହିଁ । ସେହିପରି ଗଭୀରତା ମଧ୍ୟ ପ୍ରଶାନ୍ତ ମହାସାଗରର ପ୍ରଶାନ୍ତିଠାରୁ ଅଧିକ ନିବିଡ଼ ଓ ରହସ୍ୟମୟ । ପୃଥୁଳାକାର ପୁସ୍ତକମାନ ପୂର୍ବରୁ ଯେଉଁ ବିଷୟକୁ ସ୍ପଷ୍ଟ ଭାବରେ ବୁଝାଇ ନପାରି, ବିଷୟର ମାତ୍ର କିଛି ଅଂଶକୁ ସ୍ପର୍ଶ କରିବା ମଧ୍ୟରେ କକ୍ଷଚ୍ୟୁତ ଉଲ୍‌କା ପରି ଦୂରକୁ ଛିଟିକି ପଡ଼ି, ଅନ୍ୟକୌଣସି କକ୍ଷପଥକୁ ଆପଣେଇ ନେଇଛି, ସେହି ବିଷୟକୁ ଡକ୍ଟର ମହାନ୍ତିଙ୍କ ଲେଖନୀ ଅଳ୍ପ ଭାଷାରେ କେବଳ ନୁହେଁ, ଶିଶୁଠୁଁ ବୃଦ୍ଧ ବୟସର ଓ ମସ୍ତିଷ୍କର ଅଳ୍ପ ବୁଦ୍ଧିସମ୍ପନ୍ନ ତଥା ଅତି ବୁଦ୍ଧିମାନ୍ ଓଡ଼ିଆ ଭାଷାଭାଷୀଙ୍କ ବୋଧଶକ୍ତିରେ ପ୍ରବେଶ କରିପାରିବା ଭଳି ନିଜସ୍ୱ-ଲିଖନ ଶୈଳୀରେ ଗ୍ରଥନା କରି ଭବିଷ୍ୟତର ଇତିହାସ ସୃଷ୍ଟି ପାଇଁ କଞ୍ଚାମାଲ ଯୋଗାଇ ଦେଇଛନ୍ତି । ଅଳ୍ପରୁ ଅନେକ-ବୋଧ ଏହାତ ଏକ ବେଦୋପମ ସୃଷ୍ଟି !

ନିଜର ଗବେଷଣା ବା ଉଚ୍ଚଶିକ୍ଷା ପରିପ୍ରେକ୍ଷୀରେ ଦୀର୍ଘ ପାଞ୍ଚବର୍ଷ କାଳ ଆମେରିକା ମାଟିରେ ବିତାଇ ଆସିଥିବା ଡକ୍ଟର ମହାନ୍ତି, ଆମେରିକା ମହାଦେଶର ଅଧିକ ଅଂଶ ଭ୍ରମଣ

କରି ଟିକିନିଖି ପରିଦର୍ଶନ କରିବା ଯଦ୍ୟପି ସମ୍ଭବ ହୋଇନାହିଁ; ତଥାପି ମଧ୍ୟ ଅନେକର ପ୍ରତିନିଧିମୂଳକ ଗୋଟିଏ ଗୋଟିଏ ଦର୍ଶନଯୋଗ୍ୟ ସ୍ଥାନ ଓ ବସ୍ତୁର ସେ ଯେପରି ନିରୀକ୍ଷଣ ଓ ବିଶ୍ଳେଷଣ କରି ବେଶ୍ ଅନ୍ତରଙ୍ଗ ତର୍ଜମା ବାଢ଼ି ପାରିଛନ୍ତି, ତାହା ତାଙ୍କର ବହିର୍ଦୃଷ୍ଟି ଶିକ୍ଷା, ସଭ୍ୟତା, ଚାଲିଚଳଣ, ସଂସ୍କୃତି, ପରମ୍ପରା, ଐତିହ୍ୟ, କଳା, ବିଜ୍ଞାନ, କୃଷି, ଶିଳ୍ପ, ବ୍ୟବସାୟ, ରାଜନୀତି ଇତ୍ୟାଦି ବହୁଦିଗ ପ୍ରତି ଦୃଷ୍ଟିର ଦିଗନ୍ତ କେବଳ ଲମ୍ବି ଯାଇନାହିଁ; ସେ ସବୁର ପୁଂଖାନୁପୁଂଖ ବିଚାର ଓ ବିଶ୍ଳେଷଣର ପରିଧିଟି ମଧ୍ୟ ଅତ୍ୟନ୍ତ ଶାଣିତ ତଥା ମାର୍ଜିତ ରୂପରେଖ ବହନ କରି ନିରପେକ୍ଷ ହୋଇପାରିଛି । ଏହା ମଧ୍ୟରେ ତାଙ୍କର ଓଡ଼ିଶୀ ଭାବ ଓ ଶୁଦ୍ଧ ଜାତୀୟତାର ପରିପ୍ରକାଶ ଘଟିଛି । ଯେତେବେଳେ ସେ ପ୍ରବାସୀଭୂମି ସହିତ ମାତୃଭୂମିକୁ ତଉଲିଛନ୍ତି ଏବଂ ବିବେକ ପ୍ରବଣତାର ପ୍ରମାଣ ଆଙ୍କି, ଏକାନ୍ତ ନିଜସ୍ୱ ଓ ମୌଳିକ ଚିନ୍ତାଧାରାର ବୌଦ୍ଧିକ ମନ୍ତବ୍ୟ ଉପସ୍ଥାପନ କରିଛନ୍ତି, ଏହା ଯେ ପାଠକମାନଙ୍କର ଚିନ୍ତା ଓ ଚେତନାର ଆଶୁ-ଉନ୍ମେଷଣ କ୍ଷେତ୍ରରେ ସହାୟକ ହୋଇପାରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

''ପାତାଳପୁରୀର ହାଲଚାଲ'' ଗ୍ରନ୍ଥଟି ଏହିସବୁ ପରୀକ୍ଷା-ନିରୀକ୍ଷାର କଷଟିରେ ଉଜ୍ଜଳି ଉଠି, ଭ୍ରମଣ କାହାଣୀରୁ 'ଭ୍ରମଣ-ସାହିତ୍ୟ'ର ଆଙ୍ଗିକ ତଥା ଆତ୍ମିକ-ପଦମର୍ଯ୍ୟାଦା ହାସଲ କରିପାରିଛି ଏବଂ ଓଡ଼ିଆ ସାହିତ୍ୟର ପରିସରକୁ ଏକ ଗାରିମାଯୁକ୍ତ ନବାନ୍ତୁକ ଭାବେ ପ୍ରବେଶ କରି ନିଜର ଉଚିତ ଆସନ ମଧ୍ୟ ବାଛି ନେଇଛି; ଯାହା କ୍ୱଚିତ୍ ସୃଷ୍ଟିର ଭାଗ୍ୟରେ ଆସିଥାଏ । ଏହି ସଫଳତା ପଛରେ, ଓଡ଼ିଶାର ପାଠକ-ପାଠିକାଙ୍କର ଯେ ହାତ ଅଛି, ଏହି ସ୍ୱୀକାରୋକ୍ତିଟି ନିଜେ ଲେଖକ ମଧ୍ୟ ତାଙ୍କ ପୁସ୍ତକର ପୂର୍ବାଭାସରେ ସୂଚାଇ ଅଛନ୍ତି । ଏହି ନିର୍ଣ୍ଣୟଟିକୁ ପ୍ରାମାଣିକ ରୂପ ପ୍ରଦାନ କରିଥାଏ 'ସଂସାର' ପତ୍ରିକାରେ ମୁଦ୍ରିତ – ''ଆମ ଚିଠି ମୁଣିରୁ'' ଶୀର୍ଷକରେ ପ୍ରକାଶିତ ପାଠକ-ପାଠିକାଙ୍କର, ସଂପାଦିତ ମତାମତମୂଳକ ଚିଠିପତ୍ର-ଗୁଚ୍ଛ । ପାଠକ-ପାଠିକା ହିଁ ସାହିତ୍ୟ-ସୃଷ୍ଟିର ପ୍ରକୃତ ସମୀକ୍ଷକ । ସେମାନଙ୍କର ନିଜସ୍ୱ ଅନାସକ୍ତ ମୂଲ୍ୟାୟନ, ପ୍ରତିଟି ଯୁଗରେ ସାହିତ୍ୟକୁ ବଞ୍ଚାଇ ରଖିବାରେ ସହାୟତା ପ୍ରଦାନ କରିଥାଏ । ଏହି ହେତୁରୁ ଏଭଳି ମତାମତ, ଯୁଗେ ଯୁଗେ ସାହିତ୍ୟ ଓ ସାହିତ୍ୟ-ସ୍ରଷ୍ଟାର ପୃଷ୍ଟପୋଷକତା କରି ଆସି, ସାହିତ୍ୟର ଏକ କ୍ରିୟାତ୍ମକ ଅଙ୍ଗରୂପେ ପ୍ରତିଷ୍ଠା ଲାଭ କରିଛି । ତେଣୁ ସାହିତ୍ୟିକ ଆବଶ୍ୟକତାକୁ ଆଖିରେ ରଖି ଏଠାରେ କେତେକ ମତାମତକୁ ଅବିକଳ ରୂପରେ ଉଦ୍ଧାର କରାଯାଉଛି ।

ବଡ଼ ସାହିରୁ ମହାପାତ୍ର ଆନନ୍ଦ ଶଙ୍କର ମିଶ୍ର ୧୯୮୭ ମସିହା ମଇ ମାସରେ ଲେଖିଥିଲେ – '' X X X ବୋଧହୁଏ ଶ୍ରୀହର୍ଷ ମିଶ୍ରଙ୍କ 'ପଶ୍ଚିମ ଦିଗନ୍ତ' ପରେ 'ପାତାଳପୁରୀର ହାଲଚାଲ' ଏକମାତ୍ର ଭ୍ରମଣକାହାଣୀ, ଯାହାକି ଉପନ୍ୟାସ ଭଳି ମନୋରମ । ଜଗତ୍‌ସିଂହପୁରରୁ ସଙ୍ଗ୍ରାମ ମହାପାତ୍ର ନଭେମ୍ବରରେ ମତ ଦେଇଥିଲେ – '' X X X ପାତାଳପୁରୀର ହାଲଚାଲ୍ ଛାତ୍ରମାନଙ୍କ ପାଇଁ ଖୁବ୍ ଉପାଦେୟ ଅଟେ ।'' ଅନୁରୂପ ମୟୁରଭଞ୍ଜର ବିଶୋଇରୁ କୃଷ୍ଣ ପ୍ରସାଦ ବେହେରା ୧୯୯୦ ମଇ ମାସରେ

ଲେଖିଥିଲେ – '' X X X ଡଃ ଗୁରୁପ୍ରସାଦ ମହାନ୍ତିଙ୍କ ପାତାଳପୁରୀର ହାଲଚାଲ ବେଶ୍ ଶିକ୍ଷଣୀୟ ହୋଇଛି । ଏହାର ପଠନ ଓ ସାର୍ଥକ ବ୍ୟବହାର ସମସ୍ତଙ୍କର କରଣୀୟ ।'' ଏହିପରି ବହୁ ଚିଠିର ମତାମତ, ଡକ୍ଟର ମହାନ୍ତିଙ୍କ କୃତିକୁ ଉଚ୍ଛ୍ୱସିତ ପ୍ରଶଂସାର ଗଜରା ମଧ୍ୟ ପିନ୍ଧାଇ ଦେଇଛି, ଯେଉଁ ରସଗ୍ରାହୀଙ୍କ ମଧ୍ୟରେ ଅଲଦା-ବାଲେଶ୍ୱରର ପ୍ରକାଶ ଚନ୍ଦ୍ର ନାୟକ, ଭୁବନେଶ୍ୱରର ମିନତୀ ଦାଶ, ଟିଙ୍ଗିରିଆର ଦିଗମ୍ବର ମହାନ୍ତି, କଟକର ରତନ କୁମାର ସିଂହ ପ୍ରମୁଖ ସାଧାରଣ ପାଠକ-ପାଠିକାମାନେ ସମ୍ପୃକ୍ତ । ପାଠକୀୟ ଆଦୃତି ଲାଭ ପରେ ଲେଖକର ଆଉ ବା କି ଅଧିକ ଅଭିଳାଷ ଥାଏ ! ଏହାପରେ ମଧ୍ୟ ମୟୁରଭଞ୍ଜ ଅନ୍ତର୍ଗତ ଶରତ ଗ୍ରାମର ଲେଖିକା ରାଜେଶ୍ୱରୀ ନାୟକ ତାଙ୍କର 'ସଂସାର' ପତ୍ରିକାରେ ପ୍ରକାଶିତ 'ସଂସାରର ତିନୋଟି ଚକ' ଶୀର୍ଷକ ଲଘୁ ଆଲୋଚନାମୂଳକ କ୍ଷୁଦ୍ରଗଳ୍ପରେ ଡକ୍ଟର ମହାନ୍ତିଙ୍କର ଏହି କୃତିଟିକୁ ଗୋଟିଏ 'ଚକ'ର ପ୍ରତିନିଧି ବୋଲି ଯୁକ୍ତି କରିଅଛନ୍ତି, ଖାଲି ସେତିକି ନୁହେଁ, ପ୍ରିୟ ଲେଖକଙ୍କୁ ଲେଖା ସହିତ ଦେଖିବାର ଆଗ୍ରହକୁ ଚାପି ନ ପାରି ସେପ୍ଟେମ୍ବର ୧୯୮୮ରେ କଟକ ମଲ୍ଲୀସାହିରୁ ସବିତା ମହାପାତ୍ର ନାମ୍ନୀ ଜନୈକା ପାଠିକା ମଧ୍ୟ ସମ୍ପାଦକଙ୍କ ସଂସାରଙ୍କୁ ଏକ ଆଗ୍ରହପୂର୍ଣ୍ଣ ପତ୍ର ଲେଖିଛନ୍ତି । ଉଦ୍ଧାରକରି ବସିଲେ, ଏପରି ଅନେକ ଚିଠି, ମତାମତ ଓ ସମୀକ୍ଷା ଆଖି ଆଗକୁ ଆସିବ, ଯେଉଁଥିରେ ସମୀକ୍ଷକ ସମଦର୍ଶୀ ସମାଲୋଚକ ଓ 'ଅକ୍ଷପାଦ' ପୃଷ୍ଠାର ପ୍ରସନ୍ନ କୁମାର ମିଶ୍ର ମଧ୍ୟ ପକ୍ଷଭୁକ୍ତ ହେବେ ।

ପରିଶେଷରେ 'ପାତାଳପୁରୀର ହାଲଚାଲ' ପୁସ୍ତକରୁ ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କର ଏକ ଆଶା-ନିରାଶାର କଣ୍ଠସ୍ୱରକୁ ଅବିକଳ ଉଦ୍ଧାର କରି ଆଲୋଚନାର ଦିଗ୍‌ଦିଗନ୍ତକୁ ଅଧିକ ବିଶ୍ଳେଷଣ କରିବାର ଉତ୍ତରଦାୟିତ୍ୱଟି, ଅନ୍ୟମାନଙ୍କ ଉପରେ ଅର୍ପଣ କରିଛି । ତାହାହେଲା –

''ସେଇଠି ଥାଇ ମୋ ଦେଶର କୋଟି କୋଟି କିଶୋର-କିଶୋରୀ ବା ଯୁବକ-ଯୁବତୀଙ୍କ କଥା ଭାବି ବସିଲେ ଭାବି ହୁଏନା । ସମ୍ବଳ ଅଭାବରୁ କେତେ ଯେ ପ୍ରତିଭା ବିକଶିତ ହୋଇ ନ ପାରି ମଉଳି ଝରି ଯାଆନ୍ତି, ତା'ର ହିସାବ ରଖିବା ଅସମ୍ଭବ । ଏଠି ବାପ, ମାଆ, ଭାଇ ବନ୍ଧୁ ସମ୍ପର୍କୀୟମାନଙ୍କ ଉପରେ ନିର୍ଭରଶୀଳ ହୋଇ ଜୀବନ ଲକ୍ଷ୍ୟକୁ ଭୁଲିଯିବାକୁ ପଡ଼େ । କୈଶୋର ବୟସରୁ ମନଲୋଭା ସବୁଜ ସ୍ୱପ୍ନ କେଉଁ ହଜା ଅତୀତ ଭିତରେ ଛପିଯାଏ ଜାଣିହୁଏନା । ସେ ଦେଶ ଭଳି ଏ ଦେଶର କୋଟି କୋଟି ମନର ସ୍ୱପ୍ନ ଯଦି ସଫଳ ହୁଅନ୍ତା, ତା' ହେଲେ ଏଇ ମାଟିର ବକ୍ଷ ଉପରକୁ ନଇଁ ଆସନ୍ତା ସ୍ୱର୍ଗ । ଏଇଠି ଫୁଟି ଉଠନ୍ତା ନନ୍ଦନବନର ମନ ଭୁଲାଣିଆ ପାରିଜାତ । ସେଦିନ କ'ଣ ସତରେ ଦିନେ ଆସିବ ? କେଜାଣି !''

*ଚାଣକ୍ୟପୁରୀ, ବିଶିନାବର ଦାସସାହି, କଟକ - ୭୫୩ ୦୧୨*



# ଗୁରୁପ୍ରସାଦଙ୍କ ବିଦେଶ ଯାତ୍ରାରେ ଦେଶୀୟ ଅନୁଚିନ୍ତା

ଡକ୍ଟର ସୁନାମଣି ରାଉତ

ଡକ୍ଟର ଗୁରୁପ୍ରସାଦ ମହାନ୍ତି ଜଣେ ବିଦେଶ ଫେରନ୍ତା ଜୀବବିଜ୍ଞାନୀ ଭାବେ ଯେତେ ପରିଚିତ ନୁହଁନ୍ତି, ଜଣେ ଦକ୍ଷ ଓ ସରସ ସାହିତ୍ୟିକଭାବେ ତାଠୁଁ ଅଧିକ ପରିଚିତ । ଆମେରିକା ପରି ବିଶ୍ୱର ଏକ ସର୍ବବୃହତ ଗଣତାନ୍ତ୍ରିକ ଓ ପ୍ରଗତିଶୀଳ ରାଷ୍ଟ୍ରରେ ଉଚ୍ଚଶିକ୍ଷା ଓ ଗବେଷଣା ପାଇଁ ଦୀର୍ଘ ବର୍ଷର ରହଣି କାଳରେ ସେ ଯେଉଁ ଅନୁଭୂତିର ଫସଲ ଅମଳ କରିଛନ୍ତି, ତାହା ବାସ୍ତବିକ ଅନନ୍ୟ ଓ ଚିତ୍ତାକର୍ଷକ । ଏହି ବିଦେଶ ଅନୁଭୂତିର ଚମକପ୍ରଦ ଫଳଶ୍ରୁତି ହେଉଛି ''ପାତାଳପୁରୀର ହାଲ୍‌ଚାଲ୍ (୧ମ ଓ ୨ୟ ଭାଗ), ଯାହା ଓଡ଼ିଶା ସାହିତ୍ୟ ଏକାଡ଼େମୀଦ୍ୱାରା ପୁରସ୍କୃତ ହୋଇ ଲୋକପ୍ରିୟତା ଅର୍ଜନ କରିଛି । ଏତଦ୍ ବ୍ୟତୀତ ତାଙ୍କର ଅନ୍ୟାନ୍ୟ ପୁସ୍ତକ ମଧ୍ୟରେ 'ଦୂର ସାଗରପାରେ', 'ଯେ ଦେଶେ ଯାଇ,' ସାଲବେଗର ଅଶ୍ରୁ, 'କହେ ସାଲବେଗ ହୀନ', 'ନୀଳଚକ୍ରର ଆହ୍ୱାନ', 'ଯେ ଯଥା ମାଂ ପ୍ରପଦ୍ୟନ୍ତେ', 'ଗୋଖାଦ୍ୟ', 'ଉନ୍ନତ ବାଛୁରୀ ପାଳନ', 'ଛାଗ ପାଳନ', 'ମେଷ ପାଳନ', 'ସବୁଜ ଗୋଖାଦ୍ୟ', ଇତ୍ୟାଦି ପୁସ୍ତକ ତାଙ୍କୁ ଜଣେ ସଚ୍ଚା ସାହିତ୍ୟିକର ମର୍ଯ୍ୟାଦାରେ ମହିମାନ୍ୱିତ କରିଛି ।

ବିଦେଶ ଭ୍ରମଣର ଅନୁଭୂତିକୁ ନିଜ ଦେଶର ମାପକାଠିରେ ତଉଲ କଲାବେଳେ ଗୁରୁପ୍ରସାଦ ବହୁ ତାରତମ୍ୟ ଲକ୍ଷ୍ୟ କରିଛନ୍ତି । ସ୍ୱପ୍ନପରି ମନେହେଉଥିବା ଆମେରିକାର ଦର୍ଶନୀୟ ସ୍ଥାନ, ଲୋକମାନଙ୍କ ଚଳଣି ଓ ବ୍ୟବହାର ପାଖରେ ଆମଦେଶର ଲୋକଚରିତ୍ର ଓ ଦାରିଦ୍ର୍ୟ କିପରି ଫିକା ଦିଶୁଥାଏ ତାହା ସେ ଉପଲବ୍ଧି କରିଛନ୍ତି । ଆଦୌ ବିଦେଶ ଦେଖି ନଥିବା ଲୋକ ବିଦେଶ ଫେରନ୍ତା ଲୋକଠାରୁ ସେ ଦେଶର ରୀତିନୀତି ଓ ଚଳଣି ଜାଣିବାପାଇଁ ଖୁବ୍ ବ୍ୟଗ୍ର ହୋଇପଡ଼େ । ଏହି ଉପଲବ୍ଧିକୁ ସେ ତାଙ୍କର 'ଯେ ଦେଶେ ଯାଇ' ପୁସ୍ତକରେ ଲେଖିଛନ୍ତି – ''ବିଦେଶରେ ନୂଆ ନୂଆ ଅନୁଭୂତି ସଂପର୍କରେ ଜାଣିବାପାଇଁ ସମାଜର ସବୁଶ୍ରେଣୀର ଲୋକେ ବ୍ୟଗ୍ର ହୋଇଉଠନ୍ତି । ସେଇ ଲୋକମାନଙ୍କ ଭିତରୁ କାଳିନ୍ଦୀ ବାରିକ, ପଦ ମାଷ୍ଟ୍ରେ, ମହନ୍ତ ମହାରାଜ, ଧଡ଼ି ସାହୁ, ଗନ୍ଧିଆ ନନା ସଭିଏଁ ଗୋଟିଏ ଗୋଟିଏ ଚରିତ୍ର, ଯେଉଁ ଜାତିର ଯେଉଁ ବୟସର ବା ଯେଉଁ ସ୍ତରର

ମଣିଷଟିଏ ହେଉନା କାହିଁକି ସମସ୍ତରୀୟ ବିଦେଶୀ ମଣିଷଙ୍କୁ ନିଜ ସହିତ ତୁଳନା କରିବାକୁ ସେ ଉତ୍ସୁକ ହୋଇପଡ଼େ । (ପୃ-୨)

ବିଦେଶୀସାଂଗ ଆଲ୍‌ଫ୍ରେଡୋ ଗୋର୍ଡ଼ନ କାଲଡ୍‌ୱେଲ୍, ୱାଲଟର୍ ପ୍ରମୁଖଙ୍କ ସହାୟତା ଗୁରୁପ୍ରସାଦଙ୍କୁ ବହୁଭାବରେ ଉତ୍ସାହିତ କରିଛି । ଆମେରିକାରେ ନିଜର ଗବେଷଣା ସନ୍ଦର୍ଭଟି ପରାମର୍ଶଦାତା ପ୍ରଫେସରଙ୍କ ପାଖରେ ଦାଖଲ କରିବାପରେ ପ୍ରଫେସର ପରାମର୍ଶ ଦେଇଛନ୍ତି ଏହି ଖୁସିରେ ଆମେରିକାର ବିଭିନ୍ନ ସ୍ଥାନ ବୁଲି ଦେଖିବାକୁ । ମାତ୍ର ଲେଖକଙ୍କ ପାଖରେ ଅର୍ଥର ଅଭାବ ଥିବା କଥା ଜାଣିପାରି ସେ ଅର୍ଥର ଯୋଗାଡ଼ କରିଦେଇଛନ୍ତି, ଏବଂ ସେ ଅର୍ଥ ପାଇବାକୁ ଲେଖକଙ୍କୁ ବେଶି ଶ୍ରମ କି ସମୟ ଦେବାକୁ ପଡ଼ିନାହିଁ । ମାତ୍ର ନିଜ ଦେଶରେ ସେ ଆଇ.ଏସ.ସି ପଢ଼ିବାବେଳେ ଟ ୩୦/ର ଲାବୋରେଟୋରୀ କସନ୍‌ମନି ପାଇବାକୁ ତିରିଶଥର ଦଉଡ଼ିଥିବା କଥା ମନେ ପକାଇ ଦୁଃଖିତ ହୋଇଛନ୍ତି – ''ନାଲି ଫିତାବଂଧା ଫାଇଲ୍ ଗୁଡ଼ାକ ସେମାନଙ୍କ ବଂଶ ବଢ଼ାଇବାରେ ଲାଗିଛନ୍ତି । କୁହାପୋଛା, ଧରାଧରି, ଲାଞ୍ଚମିଛ ଆଦି ସାମାଜିକ ଜୀବନକୁ ବିପର୍ଯ୍ୟସ୍ତ କରୁଛି । ମଣିଷ ପ୍ରତି ମଣିଷର ବିଶ୍ୱାସ ନାହିଁ । (ଦୂର ସାଗର ପାରେ-ପୃ-୬) ମାତ୍ର ତାଙ୍କ ଦେଶରେ ଲୋକମାନଙ୍କ ଶୃଙ୍ଖଳା କର୍ତ୍ତବ୍ୟ ବୋଧ ପାଖରେ ଆମ ଦେଶରେ ଲୋକମାନଙ୍କ ଦାୟିତ୍ୱହୀନତା ଓ ଦୀର୍ଘସୂତ୍ରିତା କେତେ ଛୋଟ ଦିଶିଯାଉଛି !

ଆମେରିକାର ବ୍ଲାକ୍‌ହିଲ୍ ଓ ୟେଲୋଷ୍ଟୋନ ପାର୍କ ବୁଲିଯିବା ବେଳେ ସେଠାକାର ରାସ୍ତା ଓ ଆମ ଦେଶର ରାସ୍ତାକୁ ତୁଳନା କରି ସେ ଲେଖିଛନ୍ତି –''ସେଠାରେ ଖାଲନାହିଁ, ଖମାନାହିଁ କି ଗାଡ଼ିର ବେଗ କମାଇବାକୁ ରାସ୍ତା ଉପରେ ହିଡ଼ ଦିଆଯାଇ ବାଧା ସୃଷ୍ଟି କରାଯାଏନି ।'' (ପୃ - ୯) ଏହାଛଡ଼ା ଆମେରିକାର କର୍ଣ୍ଣ ପ୍ୟାଲେସ୍‌ରେ ଶସ୍ୟ ଖଚିତ କାନ୍ଥବାଡ଼ରେ ପିଲାମାନଙ୍କୁ ମଧ ହାତ ମାରିବାକୁ ଦିଆଯାଏ ନାହିଁ । ମାତ୍ର ଆମ ଦେଶରେ ସୌନ୍ଦର୍ଯ୍ୟକୁ ଉପଭୋଗ କରାଯାଏନି, ନଷ୍ଟ କରାଯାଏ । ସେହିପରି ସେ ଦେଶରେ ବିଜୁଳି ଆବଶ୍ୟକତା ଓ ଅନ୍ୟପକ୍ଷରେ ବିଜୁଳି ଚୋରି ପରି ଘୃଣ୍ୟ କାର୍ଯ୍ୟ ନଥିବାବେଳେ ଆମ ଦେଶରେ ବିଜୁଳି ଚୋରି ହେଉଥିବାରୁ ସେ ଲଜ୍ଜିତ ହୋଇଛନ୍ତି । ଏ ପ୍ରସଂଗରେ ଲେକକଙ୍କ ସାଂଗ କହିଛି –''ଟଙ୍କା ସୁନା ସିଂନା ଚୋର ନିଏ, ଆଉ ତମ୍ବା ତାରଗୁଡ଼ାକ କାହିଁକି କିଏ ସେ ନେବ ? ଏ କଥା କ'ଣ ପୃଥିବୀରେ କେଉଁଠି ଘଟେ ?'' (ଦୂରସାଗର ପାରେ - ପୃ- ୨୧/୨୨)

ସେଠାକାର ୱାଣ୍ଡରଲ୍ୟାଣ୍ଡ କେଭ୍ ଓ ଆଣ୍ଡେରସନ୍ସ ମୋଟେଲ୍‌ରେ ଯାତ୍ରୀମାନଙ୍କପାଇଁ ସମସ୍ତ ପ୍ରକାର ସୁବିଧା ଉପଲବ୍ଧି କଲାବେଳେ ଆମ ଦେଶରେ ଯାବତୀୟ ଅସୁବିଧା ଓ ଅବହେଳା କଥା ତାଙ୍କ ମନକୁ ଆସିଛି –''ଡେସ୍କରେ ପଇସା

ଦେଇସାରି ହୋଟେଲ ରୁମ୍ ଭିତରେ ପଶିଲା ବେଳକୁ ଭଲ ବିଛଣାନାହିଁ । ବିଛଣାଥିଲେ ମଶାରି ନାହିଁ । ବାଥ୍‌ରୁମରେ ପାଣି ନାହିଁ ।ସଫା ତଉଲିଆ କିମ୍ବା ଖଣ୍ଡେ ସାବୁନ ମିଳିବା ଭାଗ୍ୟର କଥା । ଖବରାକାଗଜ, ଚା କଫି କଥା କିଏ ପଚାରେ ?'' (ଦୂର ସାଗର ପାରେ -ପୃ - ୭୪) ତା'ଛଡ଼ା ସେଠାରେ କାରମାନଙ୍କରେ ତେଲ ପକାଇବାବେଳେ କାର୍‌ରେ ଆଗପଛକାଚ ମାଗଣାରେ ସଫାକରିବା ହେଉଛି ଟାଙ୍କିମାଲିକର ଦାୟିତ୍ୱ, ଯାହା ଆମ ଦେଶରେ ସ୍ୱପ୍ନ ।

ଅଗ୍ନିନିରୋଧକ କାର୍ଯ୍ୟକ୍ରମକୁ ଆମେରିକାରେ ଖୁବ୍ ଗୁରୁତ୍ୱ ଦିଆଯାଏ, ଜଂଗଲରେ କାଳେ ନିଆଁଲାଗିଯିବ ବୋଲି ଅଗ୍ନିନିରୋଧକ ଗ୍ୟାସ ଓ ରାସାୟନିକ ପଦାର୍ଥ ବହନ କରିଥିବା ଛୋଟଛୋଟ ବିମାନସବୁ ଆଖିପିଛୁଳାକେ ଘଟଣା ସ୍ଥଳରେ ପହଞ୍ଚି ନିଆଁ ଲିଭାଇବା କାର୍ଯ୍ୟ ଖୁବ୍ ଦକ୍ଷତାର ସହ ସଂପାଦନ କରନ୍ତି । (ପୃ-୭୯) ମାତ୍ର ଆମ ଦେଶରେ ଜଙ୍ଗଲ ପ୍ରତି ଅତ୍ୟାଚାର ବଢ଼ି ଚାଲିଥିବାରୁ ଲେଖକ କ୍ଷୋଭ ପ୍ରକାଶ କରିଛନ୍ତି ।

ଏହାଛଡ଼ା ଆମେରିକାର ରାଷ୍ଟ୍ରପତି ଜର୍ଜ ୱାସିଂଟନ୍, ଥୋମାସ୍ ଜାଫରସନ୍, ଆବ୍ରାହମ୍ ଲିଙ୍କନ୍, ଥିଓଡ଼ର ରୁଜ୍‌ଭେଲ୍‌ଟଙ୍କ ଜୀବନୀ ଓ ବ୍ୟକ୍ତିତ୍ୱ ସଂପର୍କରେ ସାଙ୍ଗ ଆଲଫ୍ରେଡ଼ୋଠାରୁ ଶୁଣିବା ପରେ ସେମାନଙ୍କ ମହାନତା ସମ୍ପର୍କରେ ଲେଖକ ସଚେତନ ହୋଇପାରିଛନ୍ତି ଓ ଆମଦେଶର ନେତାମାନଙ୍କ କାର୍ଯ୍ୟକଳାପ ସମ୍ପର୍କରେ ମନେପକାଇ କ୍ଷୋଭ ପ୍ରକାଶ କରିଛନ୍ତି । ଆମଦେଶର ଲୋକଚରିତ୍ରରେ ଯେଉଁ ଅହଙ୍କାର, ଈର୍ଷା, ଦର୍ପ ଇତ୍ୟାଦି ଦେଖାଯାଏ, ଆମେରିକାର ବଣଜଂଗଲର ପ୍ରାକୃତିକ ଶୋଭା ଦେଖିବାପରେ ଲେଖକ ଅନୁଭବ କରିଛନ୍ତି – ''ଏଇ ଜଂଗଲରେ ମୁଣ୍ଡଟେକି ଠିଆହୋଇଥିବା ମୋଠାରୁ ବୟସ୍କ ସାମାନ୍ୟ ଘାସବୁଦାଟାର ପାଦତଳେ ଲୋଟିଯାଇ କ୍ଷମା ଭିକ୍ଷା କରନ୍ତି – ହେ ଉଦ୍ଭିଦ ପ୍ରବର ! ଈର୍ଷା, ଦ୍ୱେଷ, ଗର୍ବ, ଦର୍ପ ଅହଂକାରରେ ସନ୍ତୁଳିତ ଇତର ପ୍ରାଣୀଟାଏ ମୁଁ । ସାମାନ୍ୟ ଗଛଟାଏ ବୋଲି ତୁମକୁ ମୁଁ ଯେପରି ହେୟ ମନେକରେ ସେଥିପାଇଁ କ'ଣ ମତେ କ୍ଷମା କରିବନି ?''

ଆମେରିକାର ସ୍ୱଚ୍ଛଗଣତାନ୍ତ୍ରିକ ଶାସନ ନିକଟରେ ଆମଦେଶର ଅମଲାତାନ୍ତ୍ରିକ ଶାସନର କୁପରିମାଣ ସଂପର୍କରେ ଲେଖକ ବହୁଭାବରେ ମର୍ମାହତ ହୋଇଛନ୍ତି । ସେ ଲେଖିଛନ୍ତି - ''ଆମ ଦେଶର ପ୍ରତ୍ୟେକ ସ୍ତରରେ ଲାଞ୍ଚ, ମିଛ, ଜାଲ୍, ଜୁଆଚୋରୀ, ଠକାମିଆଦି ଦୁର୍ନୀତିମାନ ଦୀର୍ଘଦିନର ବ୍ୟାଧିପରି ଲାଗିରହିଲା ଫଳରେ ନୂତନ ପ୍ରକଳ୍ପନମାନ ପରିକଳ୍ପନା ସ୍ତରରେ ହିଁ ରହିଯାଏ । (ଦୂର ସାଗର ପାରେ - ପୃ - ୧୨୦)

ଏହାଛଡ଼ା ଆମେରିକାରେ ଗୋପାଳନ, ଘାସ ସଂରକ୍ଷଣ ଏବଂ ଚାଷୀ ଓ ଚାଷକାର୍ଯ୍ୟକୁ ସମ୍ମାନ ଦିଆଯାଉଥିବାବେଳେ ଆମ ଦେଶରେ ଚାଷକାର୍ଯ୍ୟ ପ୍ରତି ହେୟଜ୍ଞାନ

(ଯେ ଦେଶେଯାଇ -ପୃ - ୫୪) ପୁଷ୍ଟିତତ୍ତ୍ୱବିତ୍‌ଙ୍କ ସାକ୍ଷାତାକାର (ଯେ ଦେଶେ ଯାଇ ପୃ-୬୧) ସେଠାକାର ନିର୍ବାଚନ ପ୍ରକ୍ରିୟା, ପୋଲିସର ସାହାଯ୍ୟ ମନୋଭାବ, ଗୋଟିଏ ବି-୫୨ ବିମାନର ନିର୍ମାଣଖର୍ଚ୍ଚରେ ଆମର ଦୁଇଟି ହୀରାକୁଦ ବଂଧ ନିର୍ମାଣ ହେବାର ସ୍ୱପ୍ନ, ସେଠାରେ ଆଣବିକ ଅସ୍ତ୍ର ନିର୍ମାଣ ପାଇଁ କୋଟିକୋଟି ଟଙ୍କା ଖର୍ଚ୍ଚ ହେଉଥିବା ବେଳେ ଆମଦେଶରେ ବହୁ ଲୋକ ନିରନ୍ନ ଓ ବୁଭୁକ୍ଷୁ ଇତ୍ୟାଦି ପ୍ରସଂଗଉପରେ ଲେଖକ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛନ୍ତି ।

ଆମେରିକାର ସବୁଘଟଣା ଓ ପରିସ୍ଥିତିକୁ ଲେଖକ ବଡ଼ବୋଲି ମନେ୍‌କରିନାହାନ୍ତି । ସେଠାକାର କେତେକ ବିଷୟ ପ୍ରତି ମଧ ଲେଖକଙ୍କ ମନରେ ଦ୍ୱିଧା ଭାବ ପ୍ରକାଶ ପାଇଛି । ସେ ଦେଶର ପାରିବାରିକ ସଂପର୍କ, ବିଶେଷକରି ପିତାମାତାଙ୍କ ରୋଗ ବାଧିକା ସମୟରେ ପୁତ୍ରକନ୍ୟାମାନେ ତାଙ୍କର ସେବାନକରି ନର୍ସମାନେ ସେବା କରିବା ପ୍ରସଂଗକୁ ଲେଖକ ସହଜରେ ଗ୍ରହଣ କରିପାରି ନାହାନ୍ତି । ମାତ୍ର ପୁଣ୍ୟଭୂମି ଭାରତବର୍ଷରେ ପିତାମାତାଙ୍କ ପ୍ରତି ପୁତ୍ରକନ୍ୟାଙ୍କ ଭକ୍ତି ଓ ସମ୍ମାନ ପ୍ରସଂଗ ଉତ୍‌ଥାପନ କରି ରାମଚନ୍ଦ୍ର, ଶ୍ରବଣକୁମାର ପ୍ରମୁଖଙ୍କ ଉଦାରତା ମନେ ପକାଇଛନ୍ତି । ସଂପ୍ରତି ଭାରତବର୍ଷରେ ପୁତ୍ରକନ୍ୟାମାନେ ପାଶ୍ଚାତ୍ୟ ସଂସ୍କୃତି ପ୍ରତି ଆସକ୍ତ ହୋଇ ପିତାମାତାଙ୍କୁ ହତାଦର କରୁଥିବାରୁ ଲେଖକ ଦୁଃଖ ପ୍ରକାଶ କରିଛନ୍ତି ।

ସେହିପରି ଲେଖକ ସେଠକାର ପାର୍ଟିମାନଙ୍କରେ ସାମ୍ପେନ୍ (ମଦ୍ୟ) ପାନନକରି ଫଳରସ ପାନକରିବା କଥା ଲେଖିଛନ୍ତି । ହିରୋସୀମା ଓ ନାଗାସିକା ଉପରେ ବୋମାମାଡ଼ କରିଥିବା ଦୁଇଜଣ ଆମେରିକୀୟ ବୈମାନିକଙ୍କ ମଧରୁ ଜଣେ ପାଞ୍ଚବର୍ଷଭିତରେ ରକ୍ତଚାପ ଓ ହୃଦରୋଗରେ ପ୍ରାଣତ୍ୟାଗ କରିବା ଏବଂ ଅନ୍ୟଜଣେ ମାନସିକ ବିକାରଗ୍ରସ୍ତ ହୋଇ ସଂପ୍ରତି ଆତଙ୍କିତ ଅବସ୍ଥାରେ ଜୀବନକାଟୁଥିବା ପ୍ରସଂଗକୁ ଲେଖକ କର୍ମଫଳ ଭୋଗକରିବା ବିଷୟକୁ ସ୍ପଷ୍ଟ କରିଦେଇଛନ୍ତି ।

ଏହିପରି ଆମେରିକାର ବହୁ ଘଟଣା, ପ୍ରଗତି ଓ ଲୋକଚରିତ୍ର ସହ ଭାରତବର୍ଷ ଏବଂ ଓଡ଼ିଶାର ବିଭିନ୍ନ ଘଟଣା ଓ ଲୋକ ଚରିତ୍ରକୁ ତୁଳନା କରି ଲେଖକ ଆମ ଦେଶରେ ପ୍ରଗତିର ପ୍ରତିବଂଧକକୁ ଅଂଗୁଳି ନିର୍ଦ୍ଦେଶ କରିଛନ୍ତି । ପ୍ରଗତିଶୀଳ ରାଷ୍ଟ୍ର ଆମେରିକାର ସ୍ୱପ୍ନମୟ ପରିବେଶରେ ପରିଭ୍ରମଣ କରି ଲେଖକ ଆତ୍ମବିଭୋର ହୋଇଯାଇ ନାହାନ୍ତି, ବରଂ ନିଜ ଦେଶ ଓ ଜନ୍ମମାଟିକୁ ସେଠାରେ ଝୁରିହୋଇ ଦୁଃଖିତ ହୋଇଛନ୍ତି । ଏହା ଜୀବବିଜ୍ଞାନୀ ଡକ୍ଟର ଗୁରୁପ୍ରସାଦଙ୍କ ଦେଶପ୍ରୀତିର ନମୁନାବୋଲି ବୁଝିବାକୁ ହେବ ।

*ରାଜାବଗିଚା, କଟକ*



# ଓଡ଼ିଆ ବୈଷୟିକ ସାହିତ୍ୟ ଓ ଗୁରୁପ୍ରସାଦ

ରବିନାରାୟଣ ମହାପାତ୍ର

ନିତିଦିନର ଜୀବନରେ ବୈଷୟିକ ପ୍ରଭାବ ଅପରିହାର୍ଯ୍ୟ । ମନୁଷ୍ୟ ବଞ୍ଚି ରହିବା ପାଇଁ ବିଭିନ୍ନ ମାଗଣ, ବୈଷୟିକ କ୍ରିୟା କର୍ମଦ୍ୱାରା ସମ୍ପନ୍ନ ହୋଇଥାଏ । ଏଥିପାଇଁ ପ୍ରାଚୀନ ସମାଜରେ ୩୬ଟି ପାଟକ ବୈଷୟିକ ସମ୍ପଦ ସଂଗ୍ରହ ଓ ଉତ୍ପାଦନରେ ସାରା ଜୀବନ ବିନିଯୋଗ କରୁଥିଲେ । ବର୍ଣ୍ଣାଶ୍ରମ ସାମାଜିକ ବ୍ୟବସ୍ଥାରେ ପରିବାର ହେଉଛି ବ୍ୟକ୍ତି-ମଣିଷର ବୃହତ୍ତର ରୂପ ଏବଂ ସମାଜ-ସମୁଦାୟର ଚଳନ୍ତି ପ୍ରତିମାରୂପେ ପରିବାର ବହୁମୁଖୀ କର୍ମସାଧନର କେନ୍ଦ୍ର । ତେବେ ଏକ ପରିବାର ନିର୍ଦ୍ଦିଷ୍ଟ ଏକ ବୃତ୍ତି-ଅନୁସାରୀ ଏବଂ ସମବୃତ୍ତିଜୀବୀ ପରିବାରମାନଙ୍କ ସହିତ ଆତ୍ମୀୟ-ଚକ୍ର ଗଠନ କରିଥାଏ ।

ସ୍ଥାନୀୟ ସମାଜରେ ନିର୍ଦ୍ଦିଷ୍ଟ ସ୍ତରକୁ ଆଦରି ନେଇ ଭାଗ୍ୟବାଦୀ ମଣିଷ ନିଜକୁ ସୀମିତ ଏବଂ ସଂଯତ କରି ତଦ୍‌ଜନିତ ପରିସ୍ଥିତିରୁ ଆନନ୍ଦ ପାଇବା ପାଇଁ ଉଦ୍ୟମ କରୁଥିଲା । ତେବେ ନିଜର ବୃତ୍ତି-ସମ୍ପର୍କରେ ସେ କେଉଁ ବୈଷୟିକ-ସାହିତ୍ୟ ଅଧ୍ୟୟନ କରୁଥିଲା ? ଶୈଶବରୁ ପରିବାରରେ ଚାଲିଥିବା ନିର୍ଦ୍ଦିଷ୍ଟ ଧନ୍ଦାର କର୍ମକୌଶଳ ଦେଖି ଦେଖି ସେ ଶିଖିଚି । କିପରି ସେ କାମ ଦକ୍ଷତାର ସହିତ ତୁଲାଇ ହେବ ତାହା ସେ ନିଜ ହାତରେ କରି ଜାଣିଚି । ତେଣୁ ସେ ଅନାୟାସରେ ସେହି ବୃତ୍ତି-କର୍ମରେ ଯୋଗଦେଇ ଉପାର୍ଜନକ୍ଷମ ହୋଇପାରିଛି ।

ପ୍ରତି ପରିବାର ଗୋଟିଏ ଗୋଟିଏ କର୍ମଶାଳା । ଏପରି ଏକ କର୍ମଶାଳାରେ ସିନା ପରିବାରର ସନ୍ତାନ୍ ଯୋଗ ଦେଇ ଉପାର୍ଜନକ୍ଷମ ହୋଇପାରିଲା । କିପରି ନିର୍ଦ୍ଦିଷ୍ଟ ଧନ୍ଦା ସେ ସୁଚାରୁ ରୂପେ ତୁଲାଇ ପାରିବ, ତା ମଧ୍ୟ ସେ ଦେଖି ଶିଖି ଜାଣିଚି । କିନ୍ତୁ କାହିଁକି ସେମିତି କରିବାକୁ ହୁଏ ? ଏହା ତ ସେ ଜାଣିନି । ଏହି କାହିଁକି ସେ ଜାଣିଥିଲେ, ହୁଏତ ଉତ୍ପାଦନ-କର୍ମକୁ ଆହୁରି ମାର୍ଜିତ ଏବଂ ରୁଚିସମ୍ପନ୍ନ ସେ କରିପାରନ୍ତା । ଏହି କାହିଁକିର ବିଶ୍ଳେଷଣ କରୁ କରୁ ବସ୍ତୁ-ଧର୍ମର ରହସ୍ୟ ସେ ଜାଣିପାରି ହୁଏତ ସେ ଆଉ କିଛି ବସ୍ତୁଗତ ରହସ୍ୟ ଏବଂ କର୍ମକୌଶଳ ଆବିଷ୍କାର କରିପାରନ୍ତା ।

ଏହି କାହିଁକିର ଅଧ୍ୟୟନ ଏବଂ ଅନୁଶୀଳନ ପାଇଁ ଶିକ୍ଷା ଗୁରୁମୁଖୀ ଏବଂ ଗ୍ରନ୍ଥମୁଖୀ । ପ୍ରାଚୀନ କାଳରେ ପୁସ୍ତକ-ଶିଳ୍ପ ସମୃଦ୍ଧ ହେଉ ନଥିବାରୁ ଶିକ୍ଷା ପୂରାପୂରି ଭାବରେ

ଗୁରୁମୁଖୀ ଏବଂ ଗ୍ରନ୍ଥମୁଖୀ । ପ୍ରାଚୀନ କାଳରେ ପୁସ୍ତକ-ଶିଳ୍ପ ସମୃଦ୍ଧ ହୋଇ ନଥିବାରୁ ଶିକ୍ଷା ପୂରାପୂରି ଭାବରେ ଗୁରୁମୁଖୀ ଏବଂ କର୍ମସାଧନ କରୁକରୁ କାହିଁକିର ରହସ୍ୟ ଅବବୋଧ ତତ୍‌କାଳୀନ ଶିକ୍ଷାର ମାର୍ଗ ଥିଲା । ପୁନଶ୍ଚ ବୈଷୟିକ ଶିକ୍ଷା ପରିବାରର କର୍ମ-କୌଶଳରୁ ଦେଖି ଶିଖି ଆୟତ୍ତ କରିବାକୁ ପଡୁଥିବାରୁ ବୈଷୟିକ ସାହିତ୍ୟର ଗୁରୁତ୍ୱ ସେପରି ଭାବରେ ନଥିଲା । ତେବେ ଶିଳ୍ପ-ଶାସ୍ତ୍ର ଏବଂ ଅର୍ଣ୍ଣବତନ୍ତ୍ର ଗ୍ରନ୍ଥ ଯଥାକ୍ରମେ ବାସଗୃହ ନିର୍ମାଣ ଏବଂ ସମୁଦ୍ର ଯାତ୍ରା ସମ୍ପର୍କରେ ବୈଷୟିକ ସାହିତ୍ୟ । ସୂଚନାତ୍ମକ ଭାବରେ ସମ୍ପୃକ୍ତ ଧନ୍ଦାର ସମସ୍ତ ବିଷୟ ସେ ପୁସ୍ତକରେ ରହିଛି । ଏହିପରି ଭାବରେ ପ୍ରତି ଧନ୍ଦା ବିଷୟରେ ମଧ ଲେଖାଥିବ ।

ତେବେ ସେ ଲେଖାଗୁଡ଼ିକ ସଂସ୍କୃତରେ ଏବଂ ସ୍ଥଳ ବିଶେଷରେ ପଦ୍ୟାକାରରେ ରଚିତ ହୋଇଥିବାରୁ ପାରିବାରିକ-ଗୁମର ମଧ୍ୟରେ ସଂରକ୍ଷିତ ହୋଇ ପ୍ରସାରିତ ହେଉ ନଥିଲା । ତେଣୁ ଶ୍ରୁତି ଏବଂ ତଦନୁଯାୟୀ କର୍ମ ମଧ୍ୟରେ ସେ ସବୁ ଗୋପନ ହେଉ ହେଉ ଏବେ ଦୁଷ୍ପ୍ରାପ୍ୟ ହୋଇ ଯାଇଛି । କଦଳୀ ଚାଷ ବିଷୟରେ ଲୋକମୁଖରେ ଶୁଣାଯାଏ ଯେ ଜ୍ୟେଷ୍ଠେ କଦଳୀ, ଆଷାଢ଼େ କିଆ - ପୋତ ନ ପୋତ ହୁଅଇ ଠିଆ ।'' ସେହିପରି ଶୁଭଙ୍କରି ଗଣିତର ସୂତ୍ରରେ ''ମହଣ ହୋଇଲେ ଟଙ୍କାଏ ଦର - ଅଣାକୁ ପଡ଼ଇ ଅଧାଇ ସେର'' ବୋଲି ଗୀତ ଅଛି । କିନ୍ତୁ ଏବେ ବୈଷୟିକ ସାହିତ୍ୟର ଦିଗନ୍ତ ଅତି ବିସ୍ତୃତ ଏବଂ କର୍ମଚଞ୍ଚଳ ହୋଇ ଉଠିଛି । ମାତ୍ର ଦୁଇଶହ ବର୍ଷ ଭିତରେ ଶିଳ୍ପ-ବିପ୍ଳବ ପୂରାପୂରି ଭାବରେ ଶହ ଶହ ବର୍ଷର ସାମାଜିକ ବ୍ୟବସ୍ଥାକୁ ଦୋହଲାଇ ଦେଇ ନୂତନ ମୂଲ୍ୟବୋଧ ଏବଂ ନୂତନ ସମାଜ ଗଠନ ପାଇଁ ପ୍ରୟାସୀ ହୋଇ ପଡ଼ିଛି ।

ବର୍ତ୍ତମାନ ବିଶ୍ୱରେ ବର୍ଣ୍ଣାଶ୍ରମ ଧର୍ମର ଗୁରୁତ୍ୱ ସହର-ନିବାସୀ ଆଧୁନିକ ଶିକ୍ଷିତ ଶ୍ରେଣୀ ମଧ୍ୟରେ ନାହିଁ । ଶିକ୍ଷା-ବିପ୍ଳବରେ ପ୍ରଭାବିତ ଓ ପରିବର୍ତ୍ତିତ ସକଳ କ୍ଷମତାର ଏକମାତ୍ର ଅଧିକାରୀ ରାଷ୍ଟ୍ର ସମାଜକୁ ଖର୍ବ କରି ଦେଇଛି । ପୁଣି ପାଶ୍ଚାତ୍ୟ ଶିକ୍ଷା-ଦର୍ଶରେ ଦୀକ୍ଷିତ ଶିକ୍ଷିତ ଶ୍ରେଣୀ ମୁଖସ୍ଥ ସର୍ବସ୍ୱ ସମ୍ବାଦର ଅଧିକାରୀ ଭାବରେ ରାଷ୍ଟ୍ର-ଯନ୍ତ୍ରର ଅଧିକାରୀ ହୋଇ ବର୍ଣ୍ଣହୀନ ସାମାଜିକ ବ୍ୟବସ୍ଥାକୁ ରାଷ୍ଟ୍ରଲାଗି, ବିନିଯୋଗ କରି ଉତ୍ସାହିତ କରୁଛନ୍ତି । କୁଳଧର୍ମ ବର୍ଜିତ ଏବଂ ସେହି ସୂତ୍ରରେ ପରିବାର-ଚ୍ୟୁତ ହୋଇ ଆଜିର ମଣିଷ ବଡ଼ ଅସହାୟ ଏବଂ ଏକାକୀ ହୋଇ ପଡ଼ିଛି । ଗଣ-ମାଧ୍ୟମରେ ଦେଶ ବିଦେଶର ସମ୍ବାଦ ବିସ୍ଫୋରଣରେ ଉଦ୍‌ଭ୍ରାନ୍ତ ହୋଇ ଆଜିର ମଣିଷ ତୁଳନାତ୍ମକ ଭାବରେ ନିଜକୁ ବିଚାର କରି ଉତ୍କଟ ହୀନମନ୍ୟତାର ଶିକାର ହେଉଛି, ଆଦର୍ଶ ଭିତ୍ତିକ ସଂଗଠନ, ଧର୍ମ-ଭିତ୍ତିକ ସଂଗଠନ ଏବଂ ନୂତନବୃତ୍ତି-ଭିତ୍ତିକ ସଂଗଠନରେ ସାମିଲ୍ ହୋଇ ସେ ଖୋଜୁଛି ଆତ୍ମ-ନିମଜ୍ଜନର ସ୍ୱାଦ ।

ପରିବାରର ବିଭିନ୍ନ ବ୍ୟକ୍ତି ଭିନ୍ନ ଭିନ୍ନ ବୃତ୍ତିର ଅଧିକାରୀ ହେବାରୁ ଏବଂ ବ୍ୟକ୍ତି-ସ୍ୱାଧୀନତା ନାମରେ ପାରିବାରିକ ବନ୍ଧନରୁ ମୁକ୍ତ ହୋଇ ବ୍ୟକ୍ତି ନୂତନ ସାମାଜିକ ସଂଗଠନରେ ସଦସ୍ୟ ହେଉଛି । କିନ୍ତୁ ଶହ ଶହ ବର୍ଷର ସେହି ବିଶ୍ୱାସ ମମତା ଆଜି ଚିରନ୍ତନୀ-ବେଣୁ ଧ୍ୱନି ତା ହୃଦୟରେ ଆଉ ମର୍ମର ତରଙ୍ଗ ସୃଷ୍ଟି କରିପାରୁ ନାହିଁ । ସେ ନିଜର ଭଙ୍ଗୁରତା, ଅଶାନ୍ତି, ଈର୍ଷା ଆଦି ରାଷ୍ଟ୍ର ପୃଷ୍ଠପୋଷିତ ସାହିତ୍ୟ ଓ ସମ୍ପଦ ମାଧ୍ୟମରେ ସମାଜ-ସମୁଦାୟ ଉପରେ ଶିକ୍ଷା, ସାକ୍ଷରତା ଆଳରେ ଚାପି ଦେବାକୁ ଉଦ୍ୟମ କରୁଛି । ରାଷ୍ଟ୍ରର ଦଣ୍ଡ ବ୍ୟବସ୍ଥାରେ ସେ ବଳୀୟାନ୍ ହୋଇ ପ୍ରଭାବଶାଳୀ ହୋଇ ପଡୁଛି ।

ଏପରି ଅସହାୟ ବ୍ୟକ୍ତିତ୍ୱ ଯେ କୌଣସି ମତେ ରୋଜଗାର କରିବା ପାଇଁ ଯେ କୌଣସି ବୃତ୍ତି ଗ୍ରହଣ କରିନେଉଛି । ସେଥିପାଇଁ ତାର ରୁଚି ବା ସାମର୍ଥ୍ୟ ଅଛି କି ନାହିଁ, ସେ ସମ୍ପର୍କରେ କିଏ ମୁଣ୍ଡ ପୂରାଇବ ? ପେଟ ପୋଷ ନାହିଁ ଦୋଷ ଆପ୍ତବାକ୍ୟରେ ରୋଜଗାର ପାଇଁ ମୂଲ୍ୟବୋଧକୁ ମଧ୍ୟ ବଳିଦେଇ ଦେବାର ଅଭିପ୍ରାୟ ପ୍ରକାଶିତ । ଏଣୁ ଉତ୍ପାଦନ ଜନିତ ତୃପ୍ତି ଏବର କାରିଗର ଆଉ ହୁଏତ ପାଉନାହିଁ । ସୋଭିଏତ୍ ଋଷ ଏବଂ ଲାଲଚୀନର ନୂତନ ଶିକ୍ଷାନୀତିରେ ପ୍ରବେଶିକା ପରୀକ୍ଷାର ଫଳାଫଳକୁ ନେଇ ରାଷ୍ଟ୍ର ଛାତ୍ରଛାତ୍ରୀମାନଙ୍କର ଭବିଷ୍ୟତ ଚୂଡ଼ାନ୍ତ ଭାବରେ ସ୍ଥିର କରିଦିଏ ।

ଏହିପରି ଜଣେ ଛାତ୍ର ଉପରେ ଯେଉଁ ଧନ୍ଦା ଚାପି ଦିଆଗଲା, ତାକୁ ବଦଳେଇ ନୂତନ ଧନ୍ଦା ବାଛିବାର ଅଧିକାର ତା'ର ନାହିଁ । ସେ ଯେପରି ରାଷ୍ଟ୍ର-ନିଯୁକ୍ତ ଦାଦନ ଶ୍ରମିକ । କେହି କେହି ହୁଏତ ଭାରତର ଜାତିପ୍ରଥା ଫଳରେ ଏପରି ବାଧ୍ୟବାଧକତାର ଦୃଷ୍ଟାନ୍ତ ଦେଇ ପାରନ୍ତି । କିନ୍ତୁ ପ୍ରାଚୀନ ଓ ମଧ୍ୟ ଭାରତର ସାମାଜିକ ଚିତ୍ରର ଗୁରୁତ୍ୱକୁ ଏପରି ପଲ୍ଲବଗ୍ରାହୀ ଭାବରେ ଉଡ଼େଇ ଦବାର ନୁହେଁ । ଶିଶୁ ପିଲାଦିନୁ ଏକ ନିର୍ଦ୍ଦିଷ୍ଟ ଧନ୍ଦାଭିତ୍ତିକ ପରିବାରରେ ଚଳିଲା । ସେହି ଧନ୍ଦାରେ ବାପା ମା ଆଉ ଭଉଣୀ ସମସ୍ତେ ଲାଗି ପଡ଼ିଛନ୍ତି । ପୁଣି ବନ୍ଧୁବାନ୍ଧବଙ୍କ ଘରକୁ ଗଲେ ସର୍ବତ୍ର ସେହି ଧନ୍ଦା । ତେଣୁ ହେତୁ ହେଲାବେଳକୁ ଶିଶୁର ସେହି ଧନ୍ଦା ପ୍ରତି ଆଗ୍ରହ ଓ ରୁଚି ଆସିଯାଇଥାଏ । ଏ ଧରଣର ମନୋବୃତ୍ତି ଏବେ ନିଯୁକ୍ତି ସୁଯୋଗ ଖୋଜି ବୁଲୁଥିବା ଯୁବକ ପକ୍ଷରେ ସମ୍ଭବ ନୁହେଁ ।

ଏବେ ଉତ୍ପାଦନକ୍ଷମ ମଣିଷର ଗୁରୁତ୍ୱ ଆଉ ଉତ୍ପାଦନ କର୍ମରେ ନାହିଁ । ଶହେ ଜଣ ମଣିଷର ସାରା ଦିନର କାମକୁ ଯନ୍ତ୍ର ଯେ ଘଣ୍ଟାଏ ଭିତରେ ସାରିଦେଉଛି, ଏହି ଯନ୍ତ୍ର ଗଣ-ଉତ୍ପାଦନରେ ଯେତେ ଦ୍ରବ୍ୟ ପ୍ରସ୍ତୁତ କରି ରଖୁଛି ତା ପାଇଁ ବଜାର ଦରକାର ପଡୁଛି । ଏହି ବଜାର ପ୍ରତିଯୋଗିତାରେ ଗତ ଦୁଇଶହ ବର୍ଷର ସାମ୍ରାଜ୍ୟବାଦ ଜାତୀୟତାବାଦ, ସମାଜବାଦ ଏବଂ ଗଣତନ୍ତ୍ରର ବିକାଶର ଧାରାକୁ ଅନୁଶୀଳନ କରିବା ପାଇଁ ପଡ଼ିବ । ଏହି ବଜାର ସୁରକ୍ଷିତ କରି ରଖିବା ପାଇଁ କେତେ ଦେଶର କେତେ ଦକ୍ଷ କାରିଗରଙ୍କୁ ଜୀବନ ବଳୀଦାନ କରିବାକୁ ପଡ଼ିଛି, ଏ ସବୁ ସତ୍ତ୍ୱେ ପ୍ରତି ନାଗରିକଙ୍କୁ ନିଯୁକ୍ତି ସୁଯୋଗ ଖୋଜି

ବୁଲିବା ଏବଂ ନିଜର ଇଚ୍ଛା ବିରୁଦ୍ଧରେ ମଧ୍ୟ ମିଳୁଥିବା ଧନ୍ଦାରେ ଜୀବନ କାଟିବାକୁ ପଡୁଛି । ଏହି ସମସ୍ୟା ଏବଂ ପରିବାର ବର୍ଜିତ ସ୍ନେହ ମମତା ପାଇଁ ଏକାକୀ ଅସହାୟ ଭାବରେ ଧାଇଁ ବୁଲିବାର ପରିସ୍ଥିତିରୁ ସଭ୍ୟତା ଆଜିର ମଣିଷକୁ ଉଦ୍ଧାର କରିପାରିନାହିଁ । ତେଣୁ ଧନ୍ଦାମୂଳକ ପ୍ରତିଯୋଗିତାରେ ସ୍ଥିତି ନ ରହିଲେ ଜଣେ କର୍ମସୁଯୋଗ ହରାଇ ବସିବ । ଏଥିପାଇଁ ବାସ୍ତବଜ୍ଞାନ ସାଙ୍ଗକୁ ତାତ୍ତ୍ୱିକ ଜ୍ଞାନ ମଧ୍ୟ ଦରକାର । ତତ୍ତ୍ୱଜ୍ଞାନରେ କାହିଁକି ଏବଂ ବାସ୍ତବଜ୍ଞାନରେ କିପରି ବିଷୟ ଚର୍ଚ୍ଚା କରାଯାଏ । କାହିଁକି କିପରିକୁ କ୍ଷିପ୍ର ଓ ମାର୍ଜିତ କରିବାକୁ ଅଭିପ୍ରେତ । ନିତିଦିନିଆ ଜୀବନରେ କିପରିର ଗୁରୁତ୍ୱ ଅଧିକ । ଏବେ ପ୍ରଥମପିଢ଼ିର ଲୋକ କେଉଁ ଏକ ନିର୍ଦ୍ଦିଷ୍ଟ ଧନ୍ଦାରେ 'କାହିଁକି' ସବୁ ମୁଖସ୍ତ କରି କରି 'କିପରି'ର ଅଭ୍ୟାସ କରି ନଥିଲେ କାମ ତୁଲାଇପାରେ ନାହିଁ । କର୍ମରତ ଶ୍ରମିକ କିପରିର ମାର୍ଗ ଅନୁସରଣ କରିଥାଏ । ଏପରି ହେବା ସ୍ୱାଭାବିକ । କାରଣ ସାଧାରଣ କର୍ମର ସବୁ ନୀତି ନିୟମ ପ୍ରତ୍ୟେକ କ୍ଷେତ୍ରରେ ଶତକଡ଼ା ଶହେ ପ୍ରଯୁଜ୍ୟ ନୁହେଁ ।

ଏବେ ପରିବର୍ତ୍ତିତ ପରିସ୍ଥିତିରେ ପ୍ରତି ଶିକ୍ଷିତ ମଣିଷ କୌଣସି ବିଷୟରେ ବିଶେଷଜ୍ଞ ହୋଇପାରେ; ମାତ୍ର ଅନ୍ୟାନ୍ୟ ସବୁ ବିଷୟରେ ତାକୁ ସଚେତନ ହେବାକୁ ପଡ଼ିବ । ତେବେ ସାକ୍ଷର ହୋଇ ଆଧୁନିକ ଶିକ୍ଷା-ପଦ୍ଧତିରେ ଉପାଧିପ୍ରାପ୍ତ ମଣିଷକୁ ଯେ କେବଳ ଶିକ୍ଷିତ କୁହାଯିବ, ତା' ଠିକ୍ ନୁହେଁ । କାରଣ ଉପାଧି ପ୍ରାପ୍ତି ପରେ ସରକାରୀ -ନିଯୁକ୍ତି ପରେ ଆଉ ଜ୍ଞାନ କି ଗବେଷଣା କରିବା ଦରକାର ପଡୁନାହିଁ । ଜିତିବା ପୃଷ୍ଠଭୂମିରେ ଲେଖା ଇଂରାଜୀ ଗ୍ରନ୍ଥ ପାଠ, ଏବଂ ମାନସିକ ଭିତ୍ତି ନଥାଇ ମୁଖସ୍ତ କେବଳ ସେମାନଙ୍କୁ ସମାଜରେ ଏକ ଅନୁତ୍ପାଦିକ ଆଳଙ୍କାରିକ ଶ୍ରେଣୀରେ ପରିଣତ କରିଛି । ଏହି ବଚନ ବାଗୀଶମାନେ କ୍ୱଚିତ୍ କର୍ମବାଗୀଶ ହୁଅନ୍ତି । ସେଥିପାଇଁ ସ୍ୱାଧୀନତା ଆନ୍ଦୋଳନ ବେଳେ ଗାନ୍ଧିଜୀ ନିଖିଳ ଭାରତ ଭିତ୍ତିରେ ଏକ ହିନ୍ଦୀଭାଷୀ ସୁଜନଗୋଷ୍ଠୀ ଗଢ଼ିଥିଲେ । ସେମାନଙ୍କ ରଚନାତ୍ମକ କର୍ମ ସେମାନଙ୍କୁ ସ୍ୱାଧୀନ-ଚିନ୍ତକ କରିପାରିଥିଲା । ଏବେ ସ୍ୱାଧୀନତା ପରେ ସେଇ ଗୋଷ୍ଠୀକୁ ଯୋଜନାବଦ୍ଧ ଭାବରେ ନିଶ୍ଚିହ୍ନ କରାଯାଉଛି ।

ସେଥିପାଇଁ ସରଳ ସାବଲୀଳ ଭାଷାରେ ବୈଷୟିକ ସାହିତ୍ୟ ସୁଲଭ ମୂଲ୍ୟରେ ପାଠକଙ୍କୁ ମିଳିବା ଉଚିତ୍ । ଶିକ୍ଷା ପ୍ରତି ଆଗ୍ରହ ସୃଷ୍ଟି ଯେ କୌଣସି ଶିକ୍ଷା-ନୀତିର ସର୍ବୋଚ୍ଚ ଲକ୍ଷ୍ୟ ହୋଇଥିବାରୁ ଯଦି ନିର୍ଦ୍ଦିଷ୍ଟ ବିଷୟରେ ରଚିତ ସାହିତ୍ୟ କାହାକୁ ଆକୃଷ୍ଟ ଓ ପ୍ରଚୋଦିତ କରି ପାରିଲା, ସେ ସେହି କ୍ଷେତ୍ରରେ ହୁଏତ ନିଜର ଆଗ୍ରହକୁ ବିନିଯୋଗ କରିପାରେ, ଏବେ ବୈଷୟିକ ଜ୍ଞାନର ବସ୍ତୁନିଷ୍ଠ ଗବେଷଣା ହୋଇ ବୈଷୟିକ ସାହିତ୍ୟ ସୃଷ୍ଟି ହେଉଛି । କିନ୍ତୁ ଏହି ସାହିତ୍ୟର ଭିତ୍ତି ଆମ ସମାଜର ସ୍ୱାଭାବିକ ବାତାବରଣରେ ହେଉନଥିବାରୁ ଏହା ସାଧାରଣ ମଣିଷ ପାଖରେ ପହଞ୍ଚି ପାରୁନାହିଁ । ଯଦି ବୈଷୟିକ ସାହିତ୍ୟିକାର ପାରମ୍ପରିକ ବୈଷୟିକ ସାହିତ୍ୟ ସହିତ ଆଧୁନିକ ସାହିତ୍ୟକୁ ସମ୍ପର୍କିତ କରି ସାହିତ୍ୟ ରଚନା କରନ୍ତେ, ତେବେ ତାହା ଅତି ଉପାଦେୟ ହୋଇପାରନ୍ତା ।

ବିଜ୍ଞାନ-ଭିତ୍ତିକ ସାଧାରଣ ସାହିତ୍ୟ ରାମକୃଷ୍ଣ ନନ୍ଦ, ଗୋକୁଳାନନ୍ଦ ମହାପାତ୍ର ପ୍ରମୁଖ ସାହିତ୍ୟିକମାନେ ରଚନା କରିଛନ୍ତି । ପରିବର୍ତ୍ତିତ ଅର୍ଥନୀତି ଏବଂ ଗ୍ରାମଗୋଷ୍ଠୀ ଯୋଜନା ବିଷୟରେ ବହୁ ବୈଷୟିକ ସାହିତ୍ୟ ସୃଷ୍ଟି ହୋଇଛି । ବିଂଶସୂତ୍ରୀ କାର୍ଯ୍ୟକ୍ରମର ପ୍ରତି ସୂତ୍ର ସମ୍ପର୍କରେ ଶିଶୁ ସାହିତ୍ୟଠାରୁ ଆରମ୍ଭ କରି ବହୁ ସାଧାରଣ ସାହିତ୍ୟ ମଧ ସୃଷ୍ଟି ହୋଇଛି, ମାତ୍ର ଏହା ବଣ୍ଟନ ଅବ୍ୟବସ୍ଥା ପାଇଁ ଉଦ୍ଦିଷ୍ଟ ପାଠକ ନିକଟରେ ପହଞ୍ଚି ପାରୁନାହିଁ । ପୁଣି ଆଧୁନିକ ଶ୍ରେଣୀ ବିନ୍ୟାସରେ ବୈଷୟିକ ସାହିତ୍ୟିକ ଏବଂ ବୈଷୟିକ କର୍ମୀ ମଧରେ ଏପରି ଆକାଶ ପାତାଳ ପ୍ରଭେଦ ଯେ ଏହି ବ୍ୟବଧାନକୁ ଅତିକ୍ରମ କରି ବୈଷୟିକ ସାହିତ୍ୟର ପ୍ରସାର ହୋଇପାରୁ ନାହିଁ । ଏବେ କଳିଙ୍ଗ ଫାଉଣ୍ଡେସନ ଆନୁକୂଲ୍ୟରେ ବିଜ୍ଞାନ-ସାହିତ୍ୟ ପାଇଁ ଉତ୍ସାହ ସୃଷ୍ଟି କରାଯାଉଛି, ତେବେ ମଧ ଅର୍ଥନୈତିକ ସ୍ୱାଧୀନତା ପାଇଁ ବୈଷୟିକ ବାତାବରଣ ସୃଷ୍ଟି ହୋଇ ପାରୁନାହିଁ ।

ସ୍ୱାଧୀନତା ପୂର୍ବରୁ ଓଡ଼ିଆ ପୁସ୍ତକ ପୁସ୍ତକ-ଶିଳ୍ପର ସେପରି ପୃଷ୍ଠପୋଷକତା ପାଉନଥିଲା । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାରେ ପୁସ୍ତକ-ଶିଳ୍ପ ସମସ୍ତ ବିଭାଗରେ ଓଡ଼ିଆ ବହିମାନ ପ୍ରକାଶ କରିଚାଲିଛି । କେତେକ ତ୍ରୁଟିପୂର୍ଣ୍ଣ ସରକାରୀ ନୀତି ପାଇଁ ସ୍ୱାଭାବିକ ପୁଞ୍ଜି-ଗଠନ କରି ସାବଲୀଳ ଭାବରେ ବିକଶିତ ହୋଇ ନ ପାରି ପୁସ୍ତକ-ଶିଳ୍ପ ସୁଲଭ ମୂଲ୍ୟରେ ପାଠକକୁ ବହି ଯୋଗାଇ ପାରୁନାହିଁ । ସାହିତ୍ୟ-ଆନୀତ ସାମାଜିକ ପ୍ରତିଷ୍ଠାକୁ ବିନିଯୋଗ କରି ସାହିତ୍ୟିକ ରାଜନୈତିକ କ୍ଷମତା କି ପୁଞ୍ଜି ଅଧିକାରୀ ହେବାର କଳ୍ପନା କରିବା ସୃଜନଧର୍ମ ଦୃଷ୍ଟିରୁ ମାରାତ୍ମକ, ସେଥିପାଇଁ ଓଡ଼ିଆ ପୁସ୍ତକ-ଶିଳ୍ପ ପାଠ୍ୟ-ପୁସ୍ତକ ଜାତୀୟକରଣ ହେବାପରେ ସରକାରଙ୍କୁ ସରକାରୀ ସୁଲଭ ନୀତିରେ ବହି ବିକ୍ରୟ କରିବା ପାଇଁ ସରକାରୀ କର୍ମଚାରୀଙ୍କ ଲେଖା ପ୍ରକାଶ କରି ଆକାଶଛୁଆଁ ମୂଲ୍ୟ ରଖିବାରେ କର୍ତ୍ତବ୍ୟ ପାଳନ କରୁଛି ଭାବି ସନ୍ତୁଷ୍ଟ ହେଉଛି ।

ଏହି ପରିପ୍ରେକ୍ଷୀରେ ସାହିତ୍ୟିକ ଗୁରୁପ୍ରସାଦଙ୍କ ବୈଷୟିକ ସାହିତ୍ୟ ବିଷୟ ବିଚାର କରିବାକୁ ପଡ଼ିବ । ଗୁରୁପ୍ରସାଦ ଆଳି-ପିଙ୍ଗଳ ଗ୍ରାମନିବାସୀ, ସାଧାରଣ ପରିବାରରେ ସାଧାରଣ ଶିକ୍ଷାରୀତିରେ ସେ ଅଧ୍ୟୟନ କରି ଉଚ୍ଚଶିକ୍ଷା ପାଇଁ ସହରକୁ ଆସିଛନ୍ତି । ଶୈଶବରୁ ତାଙ୍କ ମାନସ-ପଟରେ ଗ୍ରାମ୍ୟ-ଜୀବନ ଏବଂ ପାରମ୍ପରିକ ଉତ୍ପାଦନ ପଦ୍ଧତିର ବହୁ ବାସ୍ତବ ସ୍ମୃତି ତାଙ୍କର ଥିବ । ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପଶୁ-ବିଜ୍ଞାନ ଏବଂ ପଶୁ-ପାଳନରେ ଉପାଧି ପାଇସାରି ସମୃଦ୍ଧ ଯୁକ୍ତରାଷ୍ଟ୍ର ଆମେରିକାରେ ଏହି ବିଷୟରେ ଉପାଧ୍ୟୁତ୍ତର ଶିକ୍ଷାଲାଭ ମଧ କରିଛନ୍ତି । ବିଦେଶରୁ ଫେରି ସ ଓଡ଼ିଶା ସରକାରଙ୍କ ପଶୁପାଳନ ବିଭାଗରେ ପଦସ୍ଥ ବିଶେଷଜ୍ଞ କର୍ମଚାରୀ ।

. ଏବେ କୃଷି, ମତ୍ସ୍ୟ ଏବଂ ପଶୁପାଳନକୁ ଏକ ସମନ୍ୱିତ ପାଠ୍ୟକ୍ରମ ଭାବରେ ଗ୍ରହଣ କରାଯାଉଛି । ସେଥିପାଇଁ ବହୁ ବୈଷୟିକ ପ୍ରଦର୍ଶନୀ ଏବଂ ବୈଷୟିକ ଆଲୋଚନା

ଚକ୍ରମାନ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେଉଛି, ସାହିତ୍ୟିକ ଗୁରୁପ୍ରସାଦ ତାଙ୍କର ଅନ୍ୟାନ୍ୟ ସୃଜନାତ୍ମକ ସୃଷ୍ଟି ସହିତ ସମ୍ପୃକ୍ତ ବିଷୟରେ ଅଧ୍ୟୟନ ଏବଂ ଅନୁଧାନକୁ ବିନିଯୋଗ କରି ସାବଲୀଳ ଭାଷାରେ ପାଞ୍ଚୋଟି ବୈଷୟିକ ଗ୍ରନ୍ଥ ପ୍ରକାଶ କରିଛନ୍ତି । 'ଛାଗପାଳନ' ଗ୍ରନ୍ଥର ପୂର୍ବାଭାଷରେ ଦୁଇଜଣ ନିଯୁକ୍ତି ସୁଯୋଗ ଖୋଜୁଥିବା ଆଧୁନିକ ଯୁବକଙ୍କ ସହିତ ତାଙ୍କର ଆଲୋଚନା ଉଲ୍ଲେଖ କରିଛନ୍ତି । ଦୁହେଁ ଉଚ୍ଚ ଶିକ୍ଷିତ, ସରକାରୀ ଅନୁଦାନ ନେଇ ଗୋଟିଏ କିଛି କରିବାକୁ ଇଚ୍ଛା କରିଛନ୍ତି, କୌଣସି ନିର୍ଦ୍ଦିଷ୍ଟ ଧନ୍ଦା କରିବାର ବଳିଷ୍ଠ ଲକ୍ଷ୍ୟ ସେମାନଙ୍କର ନାହିଁ । ପଶୁ-ପାଳନ ଅଧିକାରୀଙ୍କୁ ଭେଟିବାରୁ ସେ ଦୁହେଁ ଛେଳି-ଖମାର କରିବା ବିଷୟରେ ଚର୍ଚ୍ଚା କରିଛନ୍ତି ।

''ଆମେ ସେ ସବୁ ବିଷୟରେ କ'ଣ ବା ଜାଣୁ ? ଟିକେ ବାଗେଇ କରି ସ୍କିମ୍‌ଟା କରିନେଲେ ବ୍ୟାଙ୍କ୍‌ରୁ ଆମେ ଏଥିଲାଗି ଲକ୍ଷେ ବା ଦୁଇଲକ୍ଷ ଟଙ୍କା ଋଣ ଉଠାଇ ପାରିବୁ ।'' ଗୋଟିଏ ଖିଆଲି ମନନେଇ ଦୁଇଜଣ ଉଚ୍ଚଶିକ୍ଷିତ ଯୁବକ ଯେ ନିଜର ମୂଲ୍ୟବାନ ଭବିଷ୍ୟତ କର୍ମପନ୍ଥାର ଏପରି ଦାୟିତ୍ୱହୀନ ପରିକଳ୍ପନା କରିପାରନ୍ତି, ସେଥିଲାଗି ମୋତେ ବିରକ୍ତିକର ବୋଧ ହେଉଥିଲା'' ବୋଲି ଲେଖକ ନିଜେ ଏହି ଯୁବକ ଦ୍ୱୟଙ୍କ ଆଲୋଚନା ଶୁଣି ମତପ୍ରକାଶ କରିଛନ୍ତି, ପୁଣି ''ସରକାରୀ ଉଦ୍ୟୋଗରୁ ଗ୍ରାମ-ଉନ୍ନୟନ ତଥା ଗ୍ରାମାଞ୍ଚଳରୁ ଦାରିଦ୍ର୍ୟ ଦୂରୀକରଣ ଯୋଜନା ମାଧ୍ୟମରେ ଛେଳି ଓ ମେଷପାଳନ ଦିଗରେ ଯେଉଁ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଛି, ତାହାର ଅଧିକ ଭାଗ ଯେ ଲକ୍ଷାଧିକ ଅନାଗ୍ରହୀ ଲୋକଙ୍କ ହାତକୁ ଚାଲିଯାଉଛି, ଏଥିପାଇଁ ଲେଖକ ଗଭୀର ଦୁଃଖ ପ୍ରକାଶ କରିଛନ୍ତି ।

ପ୍ରକାଣ୍ଡ ସେତୁବନ୍ଧ ତିଆରିବେଳେ ଗୁଣ୍ଡୁଚିମୂଷା ଯେପରି ତା ଦେହରୁ ଧୂଳିଝାଡ଼ି ଦେଉଥିଲା, ଠିକ୍ ସେହିଭଳି ମୋ ଜନ୍ମଭୂମିର ଆର୍ଥିକ ବିକାଶ ଦିଗରେ ଯତ୍‌ସାମାନ୍ୟ ସାହାଯ୍ୟ କରିପାରିବାକୁ ଜୀବନର ଚରମ ସାର୍ଥକତା ବୋଲି ବିଚାର କରି ସାହିତ୍ୟିକ ଗୁରୁପ୍ରସାଦ 'ଛାଗପାଳନ' ଏବଂ 'ମେଷ ପାଳନ' ବିଷୟରେ ଦୁଇଟି ପ୍ରାମାଣିକ ଗ୍ରନ୍ଥ ସରଳ ସାବଲୀଳ ଭାଷାରେ ରଚନା କରିଛନ୍ତି । ଏ ବିଷୟରେ ପୂରା ଅନଭିଜ୍ଞ ଲୋକଙ୍କର ଏ ବହିପାଠ ଦ୍ୱାରା ତଥ୍ୟଭିତ୍ତିକ ବସ୍ତୁନିଷ୍ଠ ଜ୍ଞାନ ସମ୍ଭବପର । କେବଳ ବିଦେଶ ଓ ପଡ଼ୋଶୀ ରାଜ୍ୟମାନଙ୍କ କଥାରେ ଭାସି ନଯାଇ ଲେଖକ ପ୍ରତ୍ୟେକ ସମସ୍ୟାକୁ ଓଡ଼ିଶା ପରିପ୍ରେକ୍ଷୀରେ ମଧ୍ୟ ବିଚାର କରିଛନ୍ତି । କାରଣ ପ୍ରାକୃତିକ ପରିବେଶ ତ ସବୁଠାରେ ସମାନ ନୁହେଁ । ତେଣୁ ସହାୟକ ଗ୍ରନ୍ଥର ସାହାଯ୍ୟ ନେବା ସଙ୍ଗେ ପ୍ରତ୍ୟକ୍ଷ କ୍ଷେତ୍ରଜ୍ଞାନର ମଧ୍ୟ ସେ ଯଥାଯଥ ଭାବରେ ଉପଯୋଗ କରିଛନ୍ତି । ଓଡ଼ିଶାରେ ବୈଷୟିକ ସାହିତ୍ୟ ସୃଷ୍ଟି କରୁଥିବା ମୁଷ୍ଟିମେୟ ସାହିତ୍ୟିକମାନଙ୍କ ମଧ୍ୟରେ ଏହା ହିଁ ଗୁରୁପ୍ରସାଦଙ୍କ ବୈଶିଷ୍ଟ୍ୟ ।

ସେହି ଧାରାରେ 'ମେଷପାଳନ' ବହି ମଧ୍ୟ ଲେଖାଯାଇଛି । ସାଧାରଣତଃ ବୈଷୟିକ ସାହିତ୍ୟ ଶୁଷ୍କ ହେଉଥିବାରୁ ଯେପରି ବିରସ ବୋଧହୁଏ, ଗୁରୁପ୍ରସାଦଙ୍କ ବୈଷୟିକ ସାହିତ୍ୟ ତାର ବ୍ୟତିକ୍ରମ । କାହାଣୀ, କି ଉପନ୍ୟାସ ପରି ସୁଖ-ପାଠ୍ୟ ହେଉଛି ଏବଂ ଜିଜ୍ଞାସୁଙ୍କୁ ଏହି ଧନ୍ଦା ବିଷୟରେ ତଥ୍ୟମୂଳକ ଅବଗତି ଦେବା ସଙ୍ଗେ ସଙ୍ଗେ ବାସ୍ତବ କର୍ମକୌଶଳ ମଧ୍ୟ ପ୍ରାଞ୍ଜଳ ଭାବରେ ବୁଝାଇ ଦିଆଯାଇଛି । ଗୋସମ୍ପଦର ବିକାଶ ପାଇଁ ସେ 'ଉନ୍ନତ ବାଛୁରୀ ପାଳନ' ବିଷୟରେ ମଧ୍ୟ ପୁସ୍ତକ ରଚନା କରିଛନ୍ତି । ବାସ୍ତବ ଗୋସେବା ଦ୍ୱାରା ଗୋ-ସମ୍ପଦର ଅଭିବୃଦ୍ଧି ଏବଂ ସାମାଜିକ ଉପଯୋଗିତାକୁ ଗୁରୁପ୍ରସାଦ ସୁନ୍ଦର ଭାବରେ ଉପସ୍ଥାପିତ କରିଛନ୍ତି । ଖାମ୍‌ଖିଆଲ ଭାବରେ ଅନ୍ଧବିଶ୍ୱାସ ଏବଂ ପରମ୍ପରାର ବଶବର୍ତ୍ତୀ ହୋଇ ଏବେ ଭାରତରେ ଚାଲିଥିବା ଗୋପାଳନକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଉନ୍ନତ ଏବଂ ଉପଯୋଗୀ କରିବା ପାଇଁ ଗୁରୁପ୍ରସାଦ ସଫଳ ଉଦ୍ୟମ କରିଛନ୍ତି । ଗୋ-ଖାଦ୍ୟ ଏବଂ ସବୁଜ ଗୋଖାଦ୍ୟ ତାଙ୍କର ଆହୁରି ଦୁଇଟି ଉପାଦେୟ ପୁସ୍ତକ । ମାନବ ସଭ୍ୟତାର ଯାଯାବର ଏବଂ ପଶୁପାଳନ ଯୁଗରେ ଗୃହପାଳିତ ପଶୁମାନଙ୍କ ପାଇଁ ଖାଦ୍ୟସଂଗ୍ରହ କରିବାକୁ ମଣିଷ ପୃଥିବୀ ସାରା ବୁଲିଚି । ପରିଶେଷରେ ନଦୀ ଅବବାହିକାରେ କୃଷି ଓ ପଶୁପାଳନ ଆଧାରରେ ମଣିଷ ବସତି ସ୍ଥାପନ କରି ରହିଛି । ଏହି ବସତିରୁ ପରିବାର ଗଠନ କରି ବ୍ୟକ୍ତି ନିଜକୁ ପରାର୍ଥଜୀବନ ପାଇଁ ବିନିଯୋଗ କରିବାର ଅଭ୍ୟାସ କରିଛି । ଫଳରେ ସଭ୍ୟତା ଓ ସଂସ୍କୃତିର କ୍ରମବିକାଶ ମଣିଷକୁ ଆନନ୍ଦମୁଖୀ ଦେବରୂପ ଦେଇଛି । ତତ୍‌କାଳୀନ ଗମନାଗମନ ଅବ୍ୟବସ୍ଥା ଫଳରେ ବହୁ କ୍ଷୁଦ୍ର କ୍ଷୁଦ୍ର ରାଜ-ସତ୍ତା ଦ୍ୱାରା ବର୍ଣ୍ଣାଶ୍ରମ-ଭିତ୍ତିକ ଶାସନ ଚାଲୁଥିଲା । ଏବେ ଆଉ ସେ ପରିସ୍ଥିତି ନାହିଁ । ଏବେ ସାରା ବିଶ୍ୱ ଗୋଟିଏ କ୍ଷୁଦ୍ର-ଏକକ ଏବଂ ବିଦ୍ୱାନ ମାନେ ସାରା ପୃଥିବୀକୁ ଗୋଟିଏ ଶାସନ ପଦ୍ଧତି ଦ୍ୱାରା ଏକ କେନ୍ଦ୍ରରୁ ପରିଚାଳନା କରିବାର କଳ୍ପନା କରୁଛନ୍ତି ।

ଏହି ପରିପ୍ରେକ୍ଷୀରେ ଗତ ଦୁଇଶହ ବର୍ଷ ମଧ୍ୟରେ ବିଜ୍ଞାନର ବହୁ ଆବିଷ୍କାର ଓ ଉଦ୍ଭାବନକୁ ସମ୍ବଳ କରି ପ୍ରୟୋଗ ବିଜ୍ଞାନ ଆଦିର ମଣିଷର ଜୀବନଧାରାକୁ ପୂରାପୂରି ଭାବରେ ପରିବର୍ତ୍ତିତ କରିଦେବା ପାଇଁ ପ୍ରୟାସୀ । ଏତେ ବିପୁଳ ବସ୍ତୁ-ସମ୍ପଦ ଶିଳ୍ପ-ବିପ୍ଳବ ଦ୍ୱାରା ପାଇଁ ଆଜିର ମଣିଷର ଜୀବନର ମାନ ଉନ୍ନତତର ହେଉଛି । କିନ୍ତୁ କାରଣ-ଭିତ୍ତିକ ଅନୁଶାସନ ଏବଂ ମୂଲ୍ୟବୋଧ ବିଜ୍ଞାନର ପ୍ରାଚୁର୍ଯ୍ୟରେ ମ୍ଳାନ ପଡ଼ିଯାଉଥିବାରୁ ଏବେ ବିଜ୍ଞାନର ମୂଲ୍ୟବୋଧଜନିତ ନିୟନ୍ତ୍ରଣ ଜରୁରୀ ହୋଇପଡ଼ିଛି । କେବଳ ନୂତନର ଉନ୍ମାଦନାରେ ଆବିଷ୍କାର ଓ ଉଦ୍ଭାବନ କରିବସିଲେ ତାହା ଆଣବିକ ଆତଙ୍କପରି ମହାଆତଙ୍କ ସୃଷ୍ଟି କରିବସିବ । ଏବେ ହିଂସାକାଣ୍ଡ ଘଟିଲେ ତାହା କ୍ଷୁଦ୍ର ଅଞ୍ଚଳରେ ସୀମିତ ନ ରହି ସାରା ପୃଥିବୀକୁ ହୁଲସ୍ଥୁଲ କରିବା ସ୍ୱାଭାବିକ ।

ସେଥିପାଇଁ ବିଦ୍ୱାନ ଚିନ୍ତାନାୟକମାନେ ବିଜ୍ଞାନର ଆଧାତ୍ମିକ ନିୟନ୍ତ୍ରଣକୁ ଗୁରୁତ୍ୱ ଦେଲେଣି । ବହୁ ପାର୍ଥିବ ଜୈବିକ ଯନ୍ତ୍ରପାତିରେ ଗଠିତ ଓ ବିକଶିତ ଏଇ ମାଟିର ଦେହରେ ମଣିଷ ଜୀବନଯାପନ କରିଯାଏ । ତେଣୁ ଏଇ ଶରୀରବାସୀ ମଣିଷର ଅଦୃଶ୍ୟ ଗୁଣଗୁଡ଼ିକର ବିକାଶ ପାଇଁ ଉଦ୍ୟମକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର ଓ ପ୍ରୟୋଗ କରିବା ବାଞ୍ଛନୀୟ । କାରଣ ବସ୍ତୁର ଆଧାର ବିନା ଅଧାତ୍ମର ଅଙ୍କୁରୋଦ୍‌ଗମ ମଧ୍ୟ ସମ୍ଭବପର ନୁହେଁ । ହୁଏତ ପୂର୍ବପୁରୁଷମାନେ ଏ ସଂକ୍ରାନ୍ତରେ କରିଥିବା ଗବେଷଣାର ଧାରା ବିଷୟରେ ଆମେ କିଛି ଜାଣିନାହୁଁ । କିନ୍ତୁ ସିଦ୍ଧାନ୍ତକୁ ବିଭିନ୍ନ ଆଳରେ ଅଭ୍ୟାସ କରି ଆମେ ଆଚରଣସିଦ୍ଧ ହୋଇଯାଉଛୁ । ସମୃଦ୍ଧି ମଧ୍ୟରେ ଆଧୁନିକ ସଭ୍ୟତାର ଚାପ ଓ ଉଦ୍‌ବେଗର ପରିମାଣ ଭାରତୀୟ ସମାଜରେ ମାମୁଲି, ସୁଖ ଓ ଦୁଃଖକୁ ବୀତସ୍ପୃହ ଭାବରେ ବିନା ଚାପ ଓ ଉଦ୍‌ବେଗରେ ବିତେଇଯିବାର ଧୈର୍ଯ୍ୟ ଭାରତବାସୀର ଅଛି । ଭାରତୀୟ ଜୀବନଦର୍ଶନ ହେଲା ଜୀବନଚର୍ଯ୍ୟା ଏବଂ ଈଶ୍ୱର-ବିଶ୍ୱାସୀ ମୂଲ୍ୟବୋଧ । ସେହି ଦୃଷ୍ଟିରୁ ସାରା ଭାରତରେ ଓଡ଼ିଶାର ଜୀବନବୋଧ ଅତି ମାର୍ଜିତ ହେଲେ ମଧ୍ୟ ତାକୁ ଯୁଗୋପଯୋଗୀ ଭାବରେ କର୍ମଚଞ୍ଚଳ କରିବାକୁ ହେବ ।

ଆଧୁନିକ ଓଡ଼ିଶାକୁ ବୈଷୟିକ ଉପକରଣରେ ଅନୁରଣିତ କରିବା ପାଇଁ ସ୍ୱଜନବତ୍ସଳ ଜାତୀୟନେତା ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଭାବରେ ସୁଯୋଗ ପାଇଥିଲେ । ବିଶିଷ୍ଟ ସାହିତ୍ୟିକ ଏବଂ ଓଡ଼ିଆ ସାହିତ୍ୟ ପ୍ରଚାର ସଂଘର ପ୍ରତିଷ୍ଠାତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ତାଙ୍କର ପିତା ଏବଂ କନ୍ୟା ଗୀତା ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନା ସାହିତ୍ୟିକା । ବ୍ରାହ୍ମ ସଂସ୍କାର ଆନ୍ଦୋଳନରେ ଶୈଶବ କଟାଇ ବିଜୁ ପଟ୍ଟନାୟକଙ୍କ ଗଚି ଜ୍ଞାନ ଏବଂ ସାହିତ୍ୟପ୍ରୀତି ଅନୁପମ । ଗତ ଗଣେଶପୂଜା (୨୪.୮.୯୦)ରେ ସେ ଉତ୍କଳ ସାହିତ୍ୟ ସମାଜକୁ ଆସି ସାହିତ୍ୟିକମାନଙ୍କୁ ପଚାରିଛନ୍ତି ଯେ 'ସାହିତ୍ୟ କାହିଁ' ? ବହି ଛାପା ଚାଲିଛି, ସାହିତ୍ୟ ସଂଗଠନ ପାଇଁ ବିପୁଳ ସରକାରୀ ପୃଷ୍ଠପୋଷକତା ମିଳିପାରୁଛି । ଏ ସବୁ ସତ୍ତ୍ୱେ ଜୀବନ୍ତ-ସାହିତ୍ୟ କାହିଁ ବୋଲି ମୁଖ୍ୟମନ୍ତ୍ରୀ ସେଦିନ ବ୍ୟାକୁଳ ହୋଇ ପଡ଼ିଥିଲେ । ସାହିତ୍ୟରେ ଜୀବନର ନିବିଡ଼ ସମ୍ପର୍କ ନାହିଁ, ସାହିତ୍ୟ ଆତ୍ମାର ଉଦ୍‌ବେଳନ ସୃଷ୍ଟି କରିପାରୁ ନାହିଁ, ସାହିତ୍ୟ କ୍ଷମତାଧରଙ୍କୁ ନିୟନ୍ତ୍ରଣ କରିପାରୁନାହିଁ, ସାହିତ୍ୟର ପ୍ରଭାବଶାଳୀ ନେତୃତ୍ୱ ବଦଳରେ ଏବେ ଅନୁଗ୍ରହ କାମନା ମାତ୍ର ସାର ହେଉଛି । ଓଡ଼ିଶାର ବର୍ଷୀୟାନ୍ ମୁଖ୍ୟମନ୍ତ୍ରୀଙ୍କ ବ୍ୟାକୁଳତା ସ୍ୱାଗତଯୋଗ୍ୟ । ସେ ଦୃଷ୍ଟିରୁ ଇତିହାସ ପ୍ରସିଦ୍ଧ କଳିଙ୍ଗ ଜାତିର ନବଜୀବନ ପାଇଁ ନୂତନ ପ୍ରତିଭାଧର ମାନଙ୍କର ଜୀବନ-ତାଣ୍ଡବକୁ ଆଧାର କରି ଓଡ଼ିଆ ସାହିତ୍ୟରେ ନବଯୁଗ ସୃଷ୍ଟି ହେଉ । ଏହି ଉନ୍ନତ ସମାଜ-ଜୀବନର ପୃଷ୍ଠଭୂମି ବୈଷୟିକ ସାହିତ୍ୟକୁ ସେଥିପାଇଁ ଗୁରୁତ୍ୱ ଦେବାକୁ ହେବ, ଏହି ପରିପ୍ରେକ୍ଷୀରେ ବୈଷୟିକ ସାହିତ୍ୟ ସାବଲୀଳ ଭାଷାରେ ରଚନା କରିଥିବାରୁ ମୁଁ ସାହିତ୍ୟିକ ଗୁରୁପ୍ରସାଦଙ୍କୁ ସାଧୁବାଦ ଦେଉଛି ।

*ସୂତାହାଟ, କଟକ - ୧*



# ବିଜ୍ଞାନ - ସାହିତ୍ୟିକ ଗୁରୁପ୍ରସାଦ

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

''ବିଜ୍ଞାନ - ସାକ୍ଷରତା ହେଉଛି ଏକ ସାଂସ୍କୃତିକ ଆବଶ୍ୟକତା ।''
—କେ.ଏସ୍.ଜୟରାମନ୍
ପଦାର୍ଥ ବିଜ୍ଞାନୀ, ବିଜ୍ଞାନ-ସାମ୍ବାଦିକ ଓ ସମ୍ପାଦକ

ବରେଣ୍ୟ ଡାକ୍ତର ଗୁରୁପ୍ରସାଦ ମହାନ୍ତିଙ୍କୁ ମୁଁ ପ୍ରଥମେ ଦେଖିଥିଲି ୧୯୭୧ ମସିହାରେ । ସେତେବେଳେ ମେଡ଼ିକାଲ୍ କଲେଜ୍ ପରିସର ଏବଂ ପଶୁପାଳନ ଓ ପଶୁଚିକିତ୍ସା ନିର୍ଦ୍ଦେଶାଳୟ ପରିସର ପାଚେରି ଦ୍ୱାରା ପୃଥକୀକୃତ ହୋଇ ନ ଥିଲା । ମେଡ଼ିକାଲରୁ ରାଣୀହାଟ କି ମଙ୍ଗଳାବାଗ ଯିବାଆସିବା କରିବାପାଇଁ ଆମେ ନିର୍ଦ୍ଦେଶାଳୟ ସଂଲଗ୍ନ ପଡ଼ିଆ ଭିତରର ରାସ୍ତାକୁ ବ୍ୟବହାର କରୁଥିଲୁ । ସେଇବାଟେ ଗଲାବେଳେ ଆଖିରେ ପଡୁଥିଲେ ଜଣେ ଅତି ସ୍ମାର୍ଟ ସୁଦର୍ଶନ ଯୁବକ । ଧଳାସାର୍ଟ ସାଙ୍ଗକୁ ନେକ୍‌ଟାଇ ବେଶ୍ ମାନୁଥିଲା ତାଙ୍କୁ । ତାଙ୍କ ଚାଲିବା ଭଙ୍ଗୀ ଏବେ ବି ମନେ ଅଛି ମୋର ।

'ମୋ' ଭିଣୋଇ ଥିଲେ ପରିସଂଖ୍ୟାନ ବିଭାଗର କର୍ମଚାରୀ, କିନ୍ତୁ ଡେପୁଟେସନରେ ଆସି କାମ କରୁଥିଲେ ନିର୍ଦ୍ଦେଶାଳୟ ଅଧୀନସ୍ଥ ଡାଇରି ଡେଭଲପମେଣ୍ଟ୍ ଶାଖାରେ । ତାଙ୍କଠାରୁ ଡକ୍ଟର ମହାନ୍ତିଙ୍କ ବୈଜ୍ଞାନିକ ପ୍ରତିଭା, ବିଶେଷ କରି ଦୁଗ୍ଧ ବିଜ୍ଞାନ ସଂପର୍କିତ ଜ୍ଞାନ ବିଷୟରେ ଅନେକ କଥା ଶୁଣିବାର ସୁଯୋଗ ପାଇଥିଲି ମୁଁ । ଡକ୍ଟର ମହାନ୍ତିଙ୍କ ଅମଳରେ କଟକସ୍ଥିତ ଦୁଗ୍ଧ ବିକ୍ରୟ କେନ୍ଦ୍ର ଗୁଡ଼ିକରେ ସୁଲଭ ମୂଲ୍ୟରେ ମିଳୁଥିବା କ୍ଷୀର, ମିଠାଦହି, ଲହୁଣି, ଛେନା ଓ ଘିଅ ଇତ୍ୟାଦି, ଛେନାପାଣିରୁ ପ୍ରସ୍ତୁତ ଏକ ପାନୀୟକୁ 'ହ୍ୱେଭିଟ୍' ନାଆଁ ଦେଇ ତା'କୁ ବେଶ୍ ଗ୍ରାହକପ୍ରିୟ କରିପାରିଥିଲେ ସେ ।

କିନ୍ତୁ ତାଙ୍କ ସହ ମୋର ପରିଚୟ ସେହି 'ଦୂରରୁ ଦେଖା'ରେ ସୀମିତ ରହିଗଲା । ହୁଏତ ପ୍ରାୟ ବାରତେର ବର୍ଷ ତଳୁ ବିଜ୍ଞାନ ପ୍ରଚାର ସମିତି ଅଧିବେଶନରେ ଆମେ ଦୁହେଁ ପରସ୍ପରକୁ ଜାଣିଲୁ । ପାଖାପାଖି ପଚିଶ ବର୍ଷର ବ୍ୟବଧାନ ପରେ ଯେ ତାଙ୍କ ବିଷୟରେ ମୋତେ କିଛି ଲେଖିବାକୁ ପଡ଼ିବ, ଏହା ନିଶ୍ଚିତ ଭାବରେ ଏକ ଅପୂର୍ବ ଯୋଗାଯୋଗ । ତାହାଛଡ଼ା ଅନ୍ୟ ଏକ ତାତ୍ପର୍ଯ୍ୟ ହେଉଛି, ସେ ପଶୁକୁଳ ଓ ମୁଁ ମଣିଷକୁଳର ଚିକିତ୍ସାସହ ସଂପୃକ୍ତ ହୋଇଥିଲେ ମଧ୍ୟ ଆମେ ଉଭୟେ ସ୍ୱ ସ୍ୱ ଶାଖାର ପୁଷ୍ଟିବିଜ୍ଞାନୀ ।

ଅବଶ୍ୟ ଏହା ପୂର୍ବରୁ ଆମେ ଦୁହେଁ ଏକତ୍ର ସ୍ଥାନ ପାଇ ଆସୁଥିଲୁ ସ୍ୱର୍ଗତ ରାମକୃଷ୍ଣ ନନ୍ଦଙ୍କ ସଂପାଦନାରେ ପ୍ରକାଶ ପାଉଥିବା 'ସଂସାର' ପତ୍ରିକା ପୃଷ୍ଠାରେ । ଡକ୍ଟର ମହାନ୍ତି ଲେଖୁଥିଲେ ନିଜ ଆମେରିକା ରହଣିକାଳର ଅନୁଭୂତି – 'ପାତାଳ ପୁରୀର ହାଲ୍‌ଚାଲ୍' ଶିରୋନାମାରେ । ମୁଁ ଲେଖୁଥିଲି କିଶୋର ମନଲାଖି ବିବିଧ ରୁଚିର ଲେଖା । 'ପାତାଳ ପୁରୀର ହାଲଚାଲ' ପରେ ପୁସ୍ତକରୂପେ ପ୍ରକାଶିତ ହୋଇ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛି ।

ଡକ୍ଟର ମହାନ୍ତି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଉତ୍କଳ ସମ୍ମିଳନୀର କାର୍ଯ୍ୟକୁ ଉତ୍କଳ ଓ ଉତ୍କଳର ସୀମାନ୍ତବର୍ତ୍ତୀ ଅଞ୍ଚଳରେ ସକ୍ରିୟ କରିବାରେ ସଂପ୍ରତି ଅଗ୍ରଣୀ ଭୂମିକା ଗ୍ରହଣ କରିଛନ୍ତି ସେ । କହିବାକୁ ଗଲେ ଏହି କାର୍ଯ୍ୟରେ ସେ ନିଜକୁ ଉତ୍ସର୍ଗ କରି ଦେଇଛନ୍ତି । ତେବେ ଏ' ସଂକ୍ରାନ୍ତ ତାଙ୍କର କୃତି ଅନ୍ୟ ପ୍ରବନ୍ଧର ବିଷୟବସ୍ତୁ ।

ଡକ୍ଟର ମହାନ୍ତି ବୃତ୍ତିରେ ଜଣେ ପଶୁଚିକିତ୍ସାବିଜ୍ଞାନୀ, କିନ୍ତୁ ପ୍ରବୃତିରେ ? ପ୍ରବୃତ୍ତିରେ ସେ ଜଣେ ସ୍ୱନାମଧନ୍ୟ ଲୋକପ୍ରିୟ ଲେଖକ ଓ ସମାଜସେବୀ । ଉତ୍କଳ ଜନନୀଙ୍କର ସେବା, ଓଡ଼ିଆ ଭାଷାର ସେବା ଓ ଉତ୍କଳୀୟ ସଂସ୍କୃତିର ସେବାରେ ଶରୀର, ପ୍ରାଣ ଓ ମନକୁ ସଂପୂର୍ଣ୍ଣ ଉତ୍ସର୍ଗ କରି ଦେଇଛନ୍ତି ସେ ।

କିନ୍ତୁ ତାଙ୍କ ପଶୁଚିକିତ୍ସା ବିଜ୍ଞାନ ସଂପର୍କିତ ଜ୍ଞାନରେ କ'ଣ କଳଙ୍କି ଲାଗିଗଲାଣି ? ପ୍ରବୃତ୍ତିରେ କ'ଣ ସେ ଏବେ ବି ଜଣେ ଆଧୁନିକ ପଶୁଚିକିତ୍ସାବିତ୍ ନୁହନ୍ତି ? ନୁହନ୍ତି ଜଣେ ପ୍ରତିଷ୍ଠିତ ଦୁଗ୍ଧ ବିଜ୍ଞାନୀ ?

୨୦୦୪ ମସିହା ନଭେମ୍ବର ମାସ ୧୦ ତାରିଖ ବୁଧବାର ସଂଧ୍ୟା ୬ଟାରେ ଯୋବ୍ରା ଉଚ୍ଚବିଦ୍ୟାଳୟରେ ଅନୁଷ୍ଠିତ ହୋଇଥିଲା ମହାନଦୀମଣ୍ଡଳ ସାଂସ୍କୃତିକ ସମିତିର ପାକ୍ଷିକ ଅଧିବେଶନ । ଅଧିବେଶନରେ ଏକମାତ୍ର ବକ୍ତାଥିଲେ ଡକ୍ଟର ମହାନ୍ତି । ଶ୍ରୋତାମାନଙ୍କୁ 'ଛାଗପାଳନ' ସଂପର୍କରେ ସବିଶେଷ ତଥ୍ୟ ଯୋଗାଇଦେବାର ଲକ୍ଷ୍ୟରଖି ଏହି ବିଷୟଟିକୁ ସେ ନିଜେ ନିର୍ବାଚନ କରିଥିଲେ । ତେବେ ଶ୍ରୋତାମାନଙ୍କ ଅନୁରୋଧରେ ଛାଗପାଳନ ବିଷୟରେ ନ କହି ସୂଚନା ଦେଇଥିଲେ ଉତ୍କଳ ସମ୍ମିଳନୀର କାର୍ଯ୍ୟଧାରା ସମ୍ପର୍କରେ ।

ପ୍ରଶ୍ନ ଉଠେ ଯେ ସାହିତ୍ୟ ସାଧନାରେ ବ୍ରତୀ ରହିବା ଓ ଉତ୍କଳ ସମ୍ମିଳନୀପାଇଁ ସକ୍ରିୟ ସଂଗ୍ରାମୀର ଭୂମିକା ଗ୍ରହଣ କରିବା ଫଳରେ ତାଙ୍କଠାରେ ପଶୁଚିକିତ୍ସାବିଜ୍ଞାନ ସମ୍ବନ୍ଧୀୟ ଜ୍ଞାନ ଓ ଅନୁଭୂତିର ଅପମୃତ୍ୟୁ ଘଟିନି ତ ? ବିଚାର କରନ୍ତୁ ତ ଡକ୍ଟର ମହାନ୍ତିଙ୍କଠାରେ ବୈଷୟିକ ଜ୍ଞାନରେ ଭଟ୍ଟା ପଡ଼ିଥିଲେ ପଶୁପାଳନ ଓ ପଶୁଚିକିତ୍ସା

ବିଭାଗରୁ ଅବସର ନେବାର ଆଠବର୍ଷ ପରେ ମଧ କ'ଣ ସେ ଛାଗପାଳନ ସଂପର୍କରେ ବୁଦ୍ଧିଜୀବୀଙ୍କ ସମାବେଶରେ ବିଜ୍ଞାନ ଆଧାରିତ ବକ୍ତବ୍ୟ ଉପସ୍ଥାପନା କରିବା ନିମନ୍ତେ ସାହସ କରିଥାନ୍ତେ ? ତେଣୁ ତାଙ୍କ ବିଜ୍ଞାନୀମନ ମରିଯାଇନି କି ମୁମୂର୍ଷୁ ପ୍ରାୟ ମଧ ନୁହେଁ । ତାହା ଏବେ ବି ଜୀବନ୍ତ ସକ୍ରିୟ ଓ ଚଳଚଞ୍ଚଳ ।

ପଶୁପାଳନ ଓ ପଶୁଚିକିତ୍ସା ବିଜ୍ଞାନ ଶାଖାକୁ ଡକ୍ଟର ମହାନ୍ତିଙ୍କର ବୈଷୟିକ ଅବଦାନ ତ୍ରିବିଧ – ଯଥା, (୧) ଗବେଷଣା, (୨) ପ୍ରଶାସନ (୩) ଲୋକପ୍ରିୟ ବିଜ୍ଞାନ ପୁସ୍ତକ ପ୍ରଣୟନ ।

ଡକ୍ଟର ମହାନ୍ତି ଜଣେ ଉଚ୍ଚକୋଟୀର ଗବେଷକ । ଗୃହପାଳିତ ପଶୁମାନଙ୍କ ଖାଦ୍ୟ ସଂବନ୍ଧିତ ବିଷୟକୁ ଆଧାର କରି ଆମେରିକାର ସାଉଥ୍‌ଡ଼ାକୋଟା ଷ୍ଟେଟ୍ ୟୁନିଭରସିଟିରୁ ପି.ଏଚ୍.ଡ଼ି ଡ଼ିଗ୍ରୀ ଓ ଦୁଗ୍ଧ ବିଜ୍ଞାନ ଶାଖାରେ ଏମ୍.ଏସ୍.ଡ଼ିଗ୍ରୀ ହାସଲ କରିବା ତାଙ୍କ ବିଜ୍ଞାନକୃତୀର ଅଳିଭା ସ୍ୱାକ୍ଷର । ତାଙ୍କଦ୍ୱାରା ପ୍ରସ୍ତୁତ ତ୍ରିଂଶାଧିକ ବୈଜ୍ଞାନିକ ଗବେଷଣା ପ୍ରବନ୍ଧ ଆନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠିତ ପତ୍ରିକାଗୁଡ଼ିକରେ ପ୍ରକାଶ ପାଇବା କିଛି କମ୍ ଗୌରବର କଥାନୁହେଁ । ଏହା ଫଳରେ ପଶୁଚିକିତ୍ସାବିଜ୍ଞାନ ଆଧାରିତ ଗବେଷଣା - ସାହିତ୍ୟ ଯେ ବୈଜ୍ଞାନିକ ଡକ୍ଟର ମହାନ୍ତିଙ୍କର ଅବଦାନ ଦ୍ୱାରା ଯଥେଷ୍ଟ ପୁଷ୍ଟ ହୋଇଛି ଏହା ନିଃସନ୍ଦେହ । ଏତଦ୍‌ବ୍ୟତୀତ ଭାରତୀୟ କୃଷି ଗବେଷଣା ପରିଷଦ ଆନୁକୂଲ୍ୟରେ ଓଡ଼ିଶା ପଶୁଚିକିତ୍ସା ବିଜ୍ଞାନ ମହାବିଦ୍ୟାଳୟରେ କାର୍ଯ୍ୟକାରୀ ହେଉଥିବା ଗବେଷଣା ପ୍ରକଳ୍ପର ଗବେଷକ ରୂପେ ତାଙ୍କର ନିଯୁକ୍ତି ବହନ କରେ ତାଙ୍କ ଗବେଷଣା-ପାରଦର୍ଶିତାର ସ୍ୱୀକୃତି ।

୧୯୬୦ ମସିହାରେ ସ୍ନାତକ ଡ଼ିଗ୍ରୀ ହାସଲ କରିସାରି ଡକ୍ଟର ମହାନ୍ତି ଓଡ଼ିଶା ସରକାରଙ୍କ ଅଧୀନରେ ଜଣେ ଭେଟେରନାରି ଆସିଷ୍ଟାଣ୍ଟ ସର୍ଜନ୍ ପଦବୀରେ ଯୋଗ ଦିଅନ୍ତି ଓ ଉକ୍ତ ବିଭାଗର ସର୍ବୋଚ୍ଚ ବୈଷୟିକ ପଦବୀ (ନିର୍ଦ୍ଦେଶକ) ଅଳଙ୍କୃତ କରି ୧୯୯୭ ମସିହାରେ ସରକାରୀ ନିଯୁକ୍ତିରୁ ଅବସର ଗ୍ରହଣ କରନ୍ତି । ତେବେ କଅଣ ଥିଲା ତାଙ୍କର ପ୍ରଶାସକ ସାମର୍ଥ୍ୟର ଇତିବୃତ୍ତ ?

ଦୁଗ୍ଧବନ୍ୟା ପ୍ରକଳ୍ପ ମାଧମରେ ଭାରତରେ ସଫଳ ରୂପ ନେଇଛି ଶ୍ୱେତ ବିପ୍ଳବ । ଓଡ଼ିଶାରେ ଶ୍ୱେତ ବିପ୍ଳବର ଭିତ୍ତି ସ୍ଥାପନ କରିବାର ଶ୍ରେୟ ଡକ୍ଟର ମହାନ୍ତିଙ୍କର । କ୍ଷୀରର ଗୁଣାତ୍ମକ ମାନ ନିର୍ଦ୍ଧାରଣ, ବିଭିନ୍ନ କ୍ଷୀରଜାତ ପଦାର୍ଥର ପ୍ରସ୍ତୁତି ଓ ବିତରଣ, ଗୋଖାଦ୍ୟ ପ୍ରସ୍ତୁତି, ଗୋପାଳନ, ମେଷ, ଛାଗ, ଘୁଷୁରି, କୁକୁଡ଼ା,ବତକ ଏବଂ ଠେକୁଆ ପାଳନ କ୍ଷେତ୍ରରେ ଡକ୍ଟର ମହାନ୍ତିଙ୍କର ନେତୃତ୍ୱ ତଥା ମାର୍ଗଦର୍ଶନ ଅନସ୍ୱୀକାର୍ଯ୍ୟ । ଏ'ସବୁ କ୍ଷେତ୍ରରେ ତାଙ୍କର ଅବଦାନକୁ ତାଙ୍କ ସହକର୍ମୀ କନିଷ୍ଠମାନେ ଏବେ ବି ସ୍ମରଣ କରିଥାନ୍ତି । ତେଣୁ ଏହି ସ୍ୱତନ୍ତ୍ର ବୈଷୟିକ ଶାଖାଟିର ସମୃଦ୍ଧିରେ ପ୍ରତିଫଳିତ ହୋଇଛି ଡକ୍ଟର ମହାନ୍ତିଙ୍କର ବୈଜ୍ଞାନିକ ଦୂରଦୃଷ୍ଟି ଏବଂ ପ୍ରଶାସନିକ ଦକ୍ଷତା ।

ଏବେ ବିଚାର କରନ୍ତୁ ବୈଷୟିକ ସାହିତ୍ୟ ତଥା ପଶୁପାଳନ ଓ ପଶୁଚିକିତ୍ସା ବିଜ୍ଞାନ ସାହିତ୍ୟକୁ ଡକ୍ଟର ମହାନ୍ତିଙ୍କର ଅବଦାନ ବିଷୟରେ । ଛାଗପାଳନ, ସବୁଜ ଗୋ ଖାଦ୍ୟ, ମେଷ ପାଳନ, ଉନ୍ନତ ବାଛୁରୀ ପାଳନ, ଗୋଖାଦ୍ୟ ଆଦି ପୁସ୍ତକ ରଚନା କରି ସେ ଜନସାଧାରଣଙ୍କର ଅଶେଷ କଲ୍ୟାଣ ସାଧନ କରିଛନ୍ତି । ଗାଁ ଗହଳରେ ଗରିବ ଚାଷୀମୂଲିଆଙ୍କୁ ସାହାଯ୍ୟ କଲାଭଳି ଅନେକ ଉପାଦେୟ ତଥ୍ୟରେ ସମୃଦ୍ଧ ଉକ୍ତ ପୁସ୍ତକରାଜି । ପୁସ୍ତକଗୁଡ଼ିକର ଭାଷା ଓ ତଥ୍ୟ ଉପସ୍ଥାପନା ଶୈଳୀ ଅତ୍ୟନ୍ତ ମନଛୁଆଁ ।

ବୈଷୟିକ ତଥ୍ୟ ଉପସ୍ଥାପନାରେ ସେ କ୍ଲିଷ୍ଟ ଶବ୍ଦ ବ୍ୟବହାର କରି ନାହାନ୍ତି । ପାଖ ପଶିନାହାନ୍ତି ବୈଜ୍ଞାନିକ ପାରିଭାଷିକ ଶବ୍ଦାବଳୀର । ତାଚ୍ଛଲ୍ୟ କରିନାହାନ୍ତି ଗାଁ ଗହଳର ଅଶିକ୍ଷିତ/ଅର୍ଦ୍ଧଶିକ୍ଷିତ ଚାଷୀମୂଲିଆଙ୍କର ଅଜ୍ଞାନତାକୁ । ସେମାନଙ୍କ ଜ୍ଞାନର ଗଭୀରତାକୁ ପରଖିବାର ଆସ୍ଫାଳନ କରିନାହାନ୍ତି ସେ । ଫଳରେ ତାଙ୍କର ରଚନାବଳୀ ହୋଇଉଠିଛି ସୁଖପାଠ୍ୟ, ବୋଧଗମ୍ୟ ଓ ଗ୍ରହଣଯୋଗ୍ୟ ।

ଛାଗ ପାଳନ ସମ୍ପର୍କରେ ଥରେ ଆଲୋଚନା କରିବା ଅବସରରେ ସେ ମୋତେ କହିଥିଲେ, ''ଆମେ ଛେଳି ମାଂସ ଖାଇବାକୁ ଭଲପାଉ । ମାଂସ କିଲୋ ଆସି ଦେଢ଼ଶହ ଟଙ୍କା ଛୁଇଁବାକୁ ବସିଲାଣି । ଦର ମହଙ୍ଗା ହୋଇଗଲାବୋଲି ଆମେ ହୁରି ପକାଇ ଚାଲିଛୁ । ପ୍ରକାଶ କରିଚାଲିଛୁ ତୀବ୍ର ପ୍ରତିକ୍ରିୟା । ହେଲେ ଛେଳି କି ମେଣ୍ଢା ପାଳିବା କଥା ପଡ଼ିଲାବେଳେ ଆମେ ନାକ ଟେକୁଛୁ । ଛାଗ ପାଳନ ଯେ ବେଶ୍ ଅର୍ଥକାରୀ, ସେ ବିଷୟରେ ଆମେ ସଚେତନ ହେବାପାଇଁ ନାରାଜ ।''

କହିବାକୁ ଗଲେ, ଗୋରୁଗାଈ, ଛେଳିମେଣ୍ଢା ଆଦି ପାଳନ କରୁଥିବା କିମ୍ବା ପାଳନ କରିବାପାଇଁ ମନସ୍ଥ କରିଥିବା ବ୍ୟକ୍ତିଙ୍କ ମନରେ ଏ' ବିଷୟ ସଂକ୍ରାନ୍ତ ଯେଉଁସବୁ ପ୍ରଶ୍ନ ଉତ୍ଥାପିତ ହୋଇଥାଏ, ପ୍ରାୟ ସେହି ସମସ୍ତ ପ୍ରଶ୍ନର ଏକ ସହଜ, ସରଳ ଓ ସୁନ୍ଦର ଉତ୍ତର ମିଳିପାରିଥାଏ ଡକ୍ଟର ମହାନ୍ତିଙ୍କ ଦ୍ୱାରା ରଚିତ ପୁସ୍ତକଗୁଡ଼ିକରୁ । ଏହି କାରଣରୁ ଉକ୍ତ ପୁସ୍ତକଗୁଡ଼ିକ ଖୁବ୍ ଲୋକପ୍ରିୟ ।

ସେହି ପୁସ୍ତକଗୁଡ଼ିକରେ ଜନସାଧାରଣଙ୍କୁ ଯେପରି ସମୟୋପଯୋଗୀ ତଥା ପ୍ରାୟୋଗିକ ପରାମର୍ଶମାନ ଦିଆଯାଇଛି ତାହା ଅତ୍ୟନ୍ତ ଦରକାରୀ । ତାହାଛଡ଼ା ସରକାରୀ ସ୍ତରରେ କାର୍ଯ୍ୟକାରୀ ହେବା ନିମନ୍ତେ ମଧ୍ୟ ଅନେକ ସୁଚିନ୍ତିତ ପରାମର୍ଶ ଦିଆଯାଇଛି ।

ପଶୁପାଳନ କ୍ଷେତ୍ରରେ ପାଳନକର୍ତ୍ତାଙ୍କର ନିଷ୍ଠା ତଥା ଆନ୍ତରିକତା କିପରି ହେବା ଉଚିତ, ସେ ସମ୍ପର୍କରେ ତାଙ୍କ 'ଉନ୍ନତ ବାଛୁରୀ ପାଳନ' ପୁସ୍ତକରେ ସନ୍ନିବିଷ୍ଟ ଏକ ବର୍ଣ୍ଣନା ବେଶ୍ ହୃଦୟଗ୍ରାହୀ ।

ଆମେରିକାର ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟରେ ଦୁଗ୍ଧ ବିଜ୍ଞାନ ଶାଖାରେ ଗବେଷଣା କଲାବେଳେ ପ୍ରଫେସର ହାୱାର୍ଡ୍ ଭୋକରଙ୍କ ସହ ଡକ୍ଟର ମହାନ୍ତି ବୁଲିଯାଇଥିଲେ ଏକ ଘୁଷୁରି ପ୍ରଦର୍ଶନୀକୁ । ଗୋଟିଏ ମାଆ ଘୁଷୁରି ପାଖରେ ବସି ଘୁଷୁରି ମାଲିକଙ୍କ ଦୁଇଝିଅ ଘୁଷୁରି ଛୁଆଙ୍କୁ ବୋତଲରେ କ୍ଷୀର ଖୁଆଉଥାଆନ୍ତି । କେତୋଟି ଛୁଆ ମାଆଠାରୁ କିଛି ସମୟ ଧରି କ୍ଷୀର ଖାଇସାରିବା ପରେ ସ୍ତନରୁ କ୍ଷୀର ଚୁଚୁମୁଥିବା ଛୁଆଙ୍କୁ ମା' କୋଳରୁ ନେଇ ଆସି ତା' କୋଳରେ ରଖି ଦେଉଥାନ୍ତି କ୍ଷୀର ଖାଇବାପାଇଁ ଅପେକ୍ଷା କରିଥିବା ଅନ୍ୟ ଛୁଆଗୁଡ଼ିକୁ । ଅତିରିକ୍ତ ଖାଦ୍ୟର ଭରଣା କରିବା ନିମନ୍ତେ ଛୁଆମାନଙ୍କୁ ବୋତଲ କ୍ଷୀର ଖୁଆଇବାର ଦାୟିତ୍ୱ ତୁଲାଇ ଥାଆନ୍ତି ଦୁଇଭଉଣୀ ।ଏହି ଦୃଶ୍ୟଟି ଡକ୍ଟର ମହାନ୍ତିଙ୍କୁ ବେଶ୍ ଅଭିଭୂତ କରିଥିଲା । ସେ ଲେଖିଛନ୍ତି, ''ଆମେରିକା ଭଳି ଏକ ବିତ୍ତଶାଳୀ ଉନ୍ନତ ଦେଶର ଝିଅଟିଏ ଯେ ଘୁଷୁରି ଛୁଆଙ୍କପାଇଁ ମଧ୍ୟ ନିଜକୁ ଯେଶୋଦା ସଜେଇପାରେ, ଏ'କଥା ମୁଁ ଭାବିପାରୁନଥିଲି ।'' ପ୍ରଫେସର ଭୋକର୍ ମଧ୍ୟ ଅନୁରୂପ ମନ୍ତବ୍ୟ ଦେଇ କହିଥିଲେ, ''ଏ ଦି' ଭଉଣୀ ଘୁଷୁରି ଛୁଆଙ୍କ ଦ୍ୱିତୀୟ ମାଆ ।''

ବିଜ୍ଞାନ ଭିତ୍ତିକ ତଥ୍ୟକୁ ଏହିପରି ଭାବରେ ସୁଆଦିଆ କରାଇ ପାରିଲେ ତାହା ଯେ ସର୍ବଜନପ୍ରିୟ ହୋଇପାରିବ, ଏଥିରେ କୌଣସି ସନ୍ଦେହ ନାହିଁ । ଡକ୍ଟର ମହାନ୍ତିଙ୍କ କଲମ ତାଙ୍କ ଲେଖାଗୁଡ଼ିକୁ ସୁଆଦିଆ ଭାବରେ ରାନ୍ଧି ପାଠକମାନଙ୍କ ନିକଟରେ ପରିବେଷଣ କରିପାରିଛି ।

ପ୍ରଦର୍ଶନୀ ପରିଦର୍ଶନ ଅବସରରେ ପ୍ରଫେସର୍ ଭୋକର୍ ଡକ୍ଟର ମହାନ୍ତିଙ୍କୁ ପରାମର୍ଶ ଦେଇ କହିଥିଲେ, ''ଏ' ଦେଶରେ ତୁମେ ଯାହାସବୁ ଦେଖୁଛ, ସେଥିରେ ଯଦି କିଛି ନୂତନତ୍ୱ ଥାଏ, ତେବେ ଦେଶକୁ ଫେରିବାପରେ ଲୋକମାନଙ୍କୁ ସେ ବିଷୟରେ ଜଣାଇବା ପାଇଁ ତୁମେ ଉପାଦେୟ ବହି କେତୋଟି ଲେଖିବ ।'

ଅନୁରୂପ ଏକ ଘଟଣା ଘଟିଥିଲା ମୋ ଜୀବନରେ ମଧ୍ୟ । ମୋ ଏମ୍.ଏସ୍.ସି. (ପ୍ରାୟୋଗିକ ପୁଷ୍ଟିବିଜ୍ଞାନ) ମୌଖିକ ପରୀକ୍ଷାରେ ମୋତେ ବାହ୍ୟ ପରୀକ୍ଷକ ପ୍ରଶ୍ନ କରିଥିଲେ, ''ପୁଷ୍ଟିବିଜ୍ଞାନ ସମ୍ପର୍କିତ ଜ୍ଞାନକୁ ତୁମେ କିପରି ବିନିଯୋଗ କରିବ ବୋଲି ଭାବିଛ ?'' ମୁଁ ଉତ୍ତର ଦେଇଥିଲି, ''ପୁସ୍ତକ ରଚନା ମାଧ୍ୟମରେ ପୁଷ୍ଟିବିଜ୍ଞାନ ସଂପର୍କିତ ତଥ୍ୟକୁ ସାର୍ବଜନୀନ କରାଇବାର ଆଶା ରଖିଛି ମୁଁ ।''

ଡକ୍ଟର ମହାନ୍ତି ପ୍ରଫେସର୍ ଭୋକର୍ଙ୍କ ପରାମର୍ଶକୁ ଅକ୍ଷରେ ଅକ୍ଷରେ ପାଳନ କରି ବ୍ରତୀ ରହିଛନ୍ତି ପଶୁଚିକିତ୍ସା ବିଜ୍ଞାନ ଆଧାରିତ ପୁସ୍ତକ ରଚନାରେ । ମୁଁ ମଧ୍ୟ ଦେଇଥିବା ପ୍ରତିଶ୍ରୁତି ରକ୍ଷାକରି ପୁଷ୍ଟିବିଜ୍ଞାନ ସଂକ୍ରାନ୍ତରେ କେତୋଟି ବହି ଲେଖିଛି ।

ସେ ଯାହାହେଉ, ଡକ୍ଟର ମହାନ୍ତିଙ୍କର ବିଜ୍ଞାନ ତଥ୍ୟ ଉପସ୍ଥାପନା ଶୈଳୀ ଅତି ବୋଧଗମ୍ୟ । କିନ୍ତୁ ନିଜର ସ୍ୱାଭାବିକ ନମ୍ରତା ଭାବ ପୋଷଣ କରି ସେ ନିଜ ରଚନାର

ଭାଷା ଓ ଶୈଳୀର ଗୁରୁତ୍ୱକୁ ଲଘୁ କରିଦେଇ ଲେଖିଛନ୍ତି, ''ନାହିଁ ମାମୁଁଠାରୁ କଣା ମାମୁଁ ଭଲ'' ନ୍ୟାୟରେ ଛେଳିଗୋଡ଼ରେ ଯେତିକି ଧାନ ମକଚି ହେବ ସେତିକି କରିବାରେ ପ୍ରୟାସୀ ହୋଇଛି ମୁଁ । ଏହି ଉକ୍ତିଟିରେ ପ୍ରତିଫଳିତ ହୋଇଛି ଡକ୍ଟର ମହାନ୍ତିଙ୍କର ଚାରିତ୍ରିକ ମହନୀୟତା ।

ଡକ୍ଟର ମହାନ୍ତିଙ୍କ ଦ୍ୱାରା ପ୍ରଣୀତ ପଶୁଚିକିତ୍ସା ବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକମାନ ଉଚ୍ଚଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ – ଉଭୟ ଗୋଷ୍ଠୀଙ୍କ ଆବଶ୍ୟକତା ପୂରଣ କରୁଥିବାରୁ ସେଗୁଡ଼ିକ ଜନସାଧାରଣଙ୍କ ମହଲରେ ଖୁବ୍ ଆଦୃତ । ତେବେ ପଶୁପାଳନ ସଂପର୍କରେ ଜନସାଧାରଣଙ୍କର ବିଶେଷ ଧାରଣା ନାହିଁ କି ସେମାନଙ୍କ ଜ୍ଞାନତୃଷା ମେଣ୍ଟାଇବାପାଇଁ ଭଲ ବହି ମଧ୍ୟ ନାହିଁ । ଏହାକୁ ଦୃଷ୍ଟିରେ ରଖି ଡକ୍ଟର ମହାନ୍ତି ଅବିରାମ ଲେଖନୀ ଚଳାଇ ଚାଲିଛନ୍ତି । ଚାଷୀମୂଲିଆଙ୍କ ପାଇଁ ଉପଯୋଗୀ ହେବାଭଳି ଭାଷାରେ ଓ ଢ଼ଙ୍ଗରେ ବହି ଲେଖିପାରିଲେ ତାହା ଯେ ନିଶ୍ଚିତ ଭାବରେ ଗ୍ରହଣୀୟ ହୋଇପାରିବ, ଏହା ନିଃସନ୍ଦେହ । ଡକ୍ଟର ମହାନ୍ତିଙ୍କ ବୈଷୟିକ ରଚାନବଳୀ ଲୋକପ୍ରିୟ ବିଜ୍ଞାନ ଲେଖାର ସମସ୍ତ ସର୍ତ୍ତ ପୂରଣ କରୁଛି । ତେଣୁ ବିଜ୍ଞାନକୁ ଜନପ୍ରିୟ କରାଇବାରେ ତାଙ୍କର ପ୍ରତିଭା ଅନନ୍ୟ ।

ଚିକିତ୍ସାବିଜ୍ଞାନ ନୋବେଲ ବିଜେତା ଓ ବିଜ୍ଞାନକୁ ଲୋକପ୍ରିୟ କରିବାରେ ମହାର୍ଘ ଅବଦାନ ଦେଇଥିବା ଯୋଗୁ କଳିଙ୍ଗ ପୁରସ୍କାର ପ୍ରାପ୍ତ ହୋଇଥିବା ଅଷ୍ଟ୍ରିଆର ପରିବେଶ ବିଜ୍ଞାନୀ କୋନ୍‌ରାଡ୍ ଲୋରେଞ୍ଜଙ୍କ ମତରେ –

''ନିଜେ ଅର୍ଜନ କରିଥିବା ଜ୍ଞାନ ଓ ଅନୁଭୂତିକୁ କଥୋପକଥନ ଓ ରଚନା ମାଧ୍ୟମରେ ଜନସାଧାରଣଙ୍କ ମଧ୍ୟରେ ପ୍ରସାର କରାଇବା ବୈଜ୍ଞାନିକମାନଙ୍କର ପରମ କର୍ତ୍ତବ୍ୟ । ପଶୁଚିକିତ୍ସା ବିଜ୍ଞାନୀ ଡକ୍ଟର ଗୁରୁପ୍ରସାଦ ମହାନ୍ତି କୋନ୍‌ରୋଡ୍ ଲୋରେଞ୍ଜ୍‌ଙ୍କ ଉକ୍ତିକୁ ନିଜ ଜୀବନରେ ପ୍ରତିପାଦିତ କରିଛନ୍ତି ।

ଡକ୍ଟର ମହାନ୍ତି ଦୀର୍ଘଜୀବୀ ହୁଅନ୍ତୁ । ଉତ୍କଳ ଜନନୀଙ୍କର ସାରସ୍ୱତ ସେବାରେ ଆଜୀବନ ବ୍ରତୀ ରହିଥାନ୍ତୁ ସେ । ସତୁରି ଦଶକରେ ମୁଁ ତାଙ୍କଠାରେ ଯେଉଁ କମନୀୟତା ଓ ଉଦ୍ଦାମତା ଦର୍ଶନ କରିଥିଲି, ମୋ ଦୃଷ୍ଟଶକ୍ତି ମୋତେ ଧୋକା ନ ଦେବା ପର୍ଯ୍ୟନ୍ତ ମୁଁ ତାଙ୍କଠାରେ ତାହା ହିଁ ଦର୍ଶନ କରିଚାଲିଥାଏ ଏହା ହିଁ କାମନା ।

*ଅଭୀପ୍ସା, ସେକ୍ଟର -୬, ପ୍ଲଟ,ନଂ-୧୧୩୧,*

*ମର୍କତ ନଗର, କଟକ -୭୫୩ ୦୧୪*



# ବୈଷୟିକ ସାହିତ୍ୟ କ୍ଷେତ୍ରରେ ଡକ୍ଟର ଗୁରୁପ୍ରସାଦ ମହାନ୍ତି

ଅଧ୍ୟାପକ ଡଃ ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର

ଉପନ୍ୟାସ, ଗଳ୍ପ, କବିତା, ପ୍ରବନ୍ଧ, ଶିଶୁ ସାହିତ୍ୟ ବା ଅନୁବାଦ ସାହିତ୍ୟ ଭଳି ବୈଷୟିକ ସାହିତ୍ୟକୁ ଏ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ଏକ ଅବିଚ୍ଛିନ୍ନ ବିଭବ ଭାବରେ ସ୍ୱୀକୃତି ମିଳିନାହିଁ । ଭାରତୀୟ ଭାଷାମାନଙ୍କ ମଧ୍ୟରେ କେବଳ ଓଡ଼ିଆ କାହିଁକି, ହିନ୍ଦି, ବଙ୍ଗଳା, ଉର୍ଦ୍ଦୁ, ଅସମୀୟା, ତେଲୁଗୁ, ତାମିଲ ବା ମାଲୟଲମ୍ ଭାଷା କ୍ଷେତ୍ରରେ ମଧ୍ୟ ବୈଷୟିକ ସାହିତ୍ୟକୁ ଏପର୍ଯ୍ୟନ୍ତ ସାହିତ୍ୟର ମାନ୍ୟତା ଦିଆଯାଇନାହିଁ । ଏହାର ମୁଖ୍ୟ କାରଣ ହେଉଛି ଦୀର୍ଘ ଦିନର ପରାଧୀନତା ଓ ଅନଗ୍ରସରତା । ପରମ୍ପରାଗତ ବାଦଶାହୀ ଶାସନକୁ କବଳିତ କରି ତିନିଶତାବ୍ଦୀରୁ ଅଧିକ କାଳ ଧରି ବିଦେଶୀ ଶାସନ ଏ ଦେଶରେ ପ୍ରଚଳିତ ହେବା ଫଳରେ ଆମର ଭାଷା, ସାହିତ୍ୟ ତଥା ଜାତୀୟତା ଯେପରି ଭାବେ ପ୍ରପୀଡ଼ିତ, ଜର୍ଜରିତ ବା ରୁଦ୍ଧଶ୍ୱାସ ହୋଇପଡ଼ିଲା । ତଦ୍ୱାରା ଭାରତୀୟ ଭୂଖଣ୍ଡର ମେଧାବୀ, ବୁଦ୍ଧିମାନ, ବ୍ୟକ୍ତିମାନଙ୍କ ମନରୁ ବୈଜ୍ଞାନିକ ଚିନ୍ତାଧାରା ବିଲୁପ୍ତପ୍ରାୟ ହୋଇପଡ଼ିଲା । ମାତ୍ର ଏହି ସମୟ ମଧ୍ୟରେ ପୃଥିବୀର ଅନ୍ୟ ସ୍ୱାଧୀନ ଦେଶମାନଙ୍କରେ ଯଥା - ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା, ଜର୍ମାନ୍, ସ୍ପେନ୍ ଓ ଫ୍ରାନ୍ସ ଆଦି ଦେଶରେ ବିଜ୍ଞାନର ପ୍ରସାରକୁ ପ୍ରାଧାନ୍ୟ ଦିଆଯାଇଥିଲା । ମାତ୍ର ପୃଥିବୀର ପ୍ରାଚୀନତମ ସଭ୍ୟଦେଶ ଭାରତବର୍ଷର ଅଖ୍ୟାତ ପଲ୍ଲୀରେ ସାମନ୍ତ ଚନ୍ଦ୍ରଶେଖରଙ୍କ ଭଳି ଉଚ୍ଚ ପ୍ରତିଭା ସମ୍ପନ୍ନ ବିଜ୍ଞାନ ସାଧକମାନେ ଅଗ୍ନାଅଗ୍ନି ବନସ୍ତର ବଣମଲ୍ଲି ପରି ଅଜଣା ଅଶୁଣା ହୋଇ ଅଦିନରେ ମଉଳି ଝଡ଼ି ପଡ଼ିଲେ । ଏ ରାଜ୍ୟ, ଏ ଦେଶ, ବା ବିଶ୍ୱଦରବାରରେ ପଠାଣି ସାମନ୍ତଙ୍କ ଭଳି କେତେ ଯେ ଯୋଗଜନ୍ମା ମନିଷୀ ଅସ୍ୱୀକୃତ ହୋଇ ରହିଗଲେ ତାର ହିସାବ କେହି ରଖି ପାରିନି ।

ଏ ଥିଲା ପ୍ରାକ୍ ସ୍ୱାଧୀନତା ଯୁଗୀୟ ଅନ୍ଧାରି ମୁଲକର କାହାଣୀ । ମାତ୍ର ତତ୍ପରବର୍ତ୍ତୀ ଅର୍ଦ୍ଧଶତାବ୍ଦୀଧରି ଏ ଯାବତ୍ ଦେଶର ବିଭିନ୍ନ ରାଜ୍ୟରେ ବିଜ୍ଞାନଠାରୁ ସମାଜର ସାଧାରଣ ମଣିଷ ଦୂରେଇ ହୋଇ ରହିଛି । ବିଜ୍ଞାନର ଭାଷା ବୁଝିବା ତା ପକ୍ଷରେ ସମ୍ଭବପର ହୋଇ

ପାରିନି । ଏହାଦ୍ୱାରା ଦେଶ, ଦଶ ତଥା ସାଧାରଣ ଜନତା ଯେ କେତେ କ୍ଷତିଗ୍ରସ୍ତ ତାହା କଳନା କରିବା ଅସମ୍ଭବ ।

ଧ୍ୟାନରତ ସନ୍ୟାସୀ ଭଳି ବିଜ୍ଞାନାଗାରର ନିଭୃତ କୋଠରୀ ମଧ୍ୟରେ ବୈଜ୍ଞାନିକ ସତତ ମନନଶୀଳ ହୋଇ ଜଗତର କଲ୍ୟାଣ ଦିଗରେ ପ୍ରାଣପାତ୍ ଉଦ୍ୟମ କରେ । ଧରାପୃଷ୍ଠର ବିଭିନ୍ନ ପାର୍ଥିବ ବସ୍ତୁର ଉପଯୋଗକରି ସେ ଯେଉଁ ତଥ୍ୟ ଆବିଷ୍କାର କରେ ତାହା ମାନବ ଜୀବନକୁ ସରସ ସୁନ୍ଦର ଓ ସମୃଦ୍ଧ କରିବାରେ ସାହାଯ୍ୟ କରେ । ଦେଶ ବିଦେଶର ବିଭିନ୍ନ ଗବେଷଣା ସଂସ୍ଥାର ପରିସର ମଧ୍ୟରେ ଲକ୍ଷ ଲକ୍ଷ ବୈଜ୍ଞାନିକ ଅହରହ ଗବେଷଣାରତ ହୋଇ ପ୍ରକୃତିର ଅସୁମାରୀ ଗୁପ୍ତରହସ୍ୟ ଉଦ୍‌ଘାଟିତ କରିବା ଲାଗି ପ୍ରାଣପାତ ଉଦ୍ୟମ କରୁଛନ୍ତି । ସେମାନଙ୍କର ଅକ୍ଳାନ୍ତ ପରିଶ୍ରମ, ତ୍ୟାଗ ଓ କର୍ମନୈପୁଣ୍ୟ ଆଧୁନିକ ଯୁଗର ମାନବ ଜୀବନକୁ ସୁଖମୟ ଓ ସୁନ୍ଦର କରି ପାରିଛି । ମାତ୍ର ଏ ସମ୍ପର୍କରେ ସାମାନ୍ୟତମ ତଥ୍ୟ ସାଧାରଣ ଜନତା ପାଖରେ ପହଞ୍ଚି ପାରୁନାହିଁ । ଏହାର ପ୍ରଧାନ କାରଣ ହେଉଛି ବିଜ୍ଞାନ ପ୍ରସାରଧର୍ମୀ ଭାଷାର ଅଭାବ ।

ଏ ଦେଶରେ ବିଜ୍ଞାନକୁ ସାହିତ୍ୟଠାରୁ ଏକଘରିକିଆକରି ରଖିବାର ପ୍ରକ୍ରିୟା ଏ ଯାବତ୍ ଜାରୀ ରହିଛି । ସାହିତ୍ୟିକ କେବେ ବୁଝିବାକୁ ଚେଷ୍ଟା କରେନା ଯେ ବିଜ୍ଞାନର କଷ୍ଟଲବ୍ଧ ତଥ୍ୟକୁ ସାହିତ୍ୟ ସଲିଳରେ ଜୁଡୁବୁଡୁ କରି ମାତୃଭାଷା ଜାହ୍ନବୀରେ ଭସାଇ ଦେଇ ପାରିଲେ ତାହା ସମାଜର ପ୍ରତ୍ୟେକ ସ୍ତରରେ ପ୍ରବେଶ କରି ଦେଶର ଅର୍ଥନୀତିକୁ ଉର୍ବରା କରିବ । ମନେରଖିବାକୁ ହେବ ଯେ କୌଣସି ଦେଶର ବୈଷୟିକ ସାହିତ୍ୟ ଯେତେ ଦୃଢ଼, ସେ ଦେଶର ଅର୍ଥନୀତି ସେତିକି ଦମ୍ଭ । ଧନୀ ଦେଶ ପକ୍ଷରେ ନିଜ ସାହିତ୍ୟର ଅଭିବୃଦ୍ଧି ସହଜସାଧ୍ୟ ହୋଇଥାଏ । ମାତ୍ର ଦରିଦ୍ର ଦେଶର ସାହିତ୍ୟ ହୁଏ ଦୁର୍ବଳ, ରୁଗ୍ଣ ଓ ଜରାଜୀର୍ଣ୍ଣ । ଯୁକ୍ତରାଷ୍ଟ୍ର ଆମେରିକା ତଥା ଅନ୍ୟକେତେକ ପାଶ୍ଚାତ୍ୟ ବିଜ୍ଞାନୋନ୍ନତ ଦେଶର ଖ୍ୟାତନାମା ବିଶ୍ୱବିଦ୍ୟାଳୟ କ୍ଷେତ୍ରରେ ଉନ୍ନତ ଦେଶ (ଜର୍ମାନ୍, ରୁଷ, ସ୍ପେନ୍, ଫ୍ରାନ୍ସ ଆଦି) ମାନଙ୍କର ଭାଷା ଶିକ୍ଷାକରି ତହିଁରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ତରୀୟ ଜ୍ଞାନ ଥିବାର ସ୍ୱୀକୃତି ନ ମିଳିଲେ ବିଜ୍ଞାନରେ ଡକ୍ଟର ଅଫ୍ ଫିଲୋସୋଫି ଡିଗ୍ରୀ ପ୍ରଦାନ କରାଯାଏ ନାହିଁ ।

ଓଡ଼ିଶାରେ ସ୍ୱର୍ଗତ ବିନୋଦ କାନୁନ୍‌ଗୋଙ୍କ ଭଳି ମୁଷ୍ଟିମେୟ କେତେଜଣ ଲେଖକ ବିଜ୍ଞାନକୁ ସରଳ ସାବଲୀଳ ଓଡ଼ିଆ ଭାଷାରେ ଅନୁବାଦ କରି ସର୍ବସାଧାରଣଙ୍କର ବୋଧଗମ୍ୟ ହେବାଭଳି ପୁସ୍ତକ ପ୍ରକାଶ କରିବାର ଚେଷ୍ଟା କରିଛନ୍ତି । ସେହିଭଳି ପଶୁପାଳନ ଓ ପଶୁଚିକିତ୍ସା କ୍ଷେତ୍ରରେ ଡକ୍ଟର ଗୁରୁପ୍ରସାଦ ମହାନ୍ତିଙ୍କର ଉଦ୍ୟମ ପ୍ରଶଂସନୀୟ । ତାଙ୍କ ଲେଖକନୀରୁ ଏ ପର୍ଯ୍ୟନ୍ତ ଗୋଖାଦ୍ୟ, ଉନ୍ନତ ବାଛୁରୀ ପାଳନ, ଛାଗ ପାଳନ, ମେଷ ପାଳନ, ସବୁଜ ଗୋଖାଦ୍ୟ ଓ କୁକୁଡ଼ା ପାଳନ ଆଦି ଆଠଖଣ୍ଡି ପୁସ୍ତକ

ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟର ଅଙ୍ଗ ବୃଦ୍ଧି କରିଛି । ତନ୍ମଧ୍ୟରୁ ମେଷପାଳନ ଓ ଛାଗପାଳନ ପୁସ୍ତକ ଦୁଇଟି ସମ୍ପର୍କରେ ଏଠାରେ ଆଲୋଚନା କରାଯାଇପାରେ ।

ସୃଷ୍ଟିର ପ୍ରାରମ୍ଭରୁ ମଣିଷ, ଗାଈ, ଗୋରୁ, ଛେଳି, ମେଣ୍ଢା ଆଦି ଗୃହପାଳିତ ପଶୁମାନଙ୍କୁ ପାଳନ କରି ଆସୁଅଛି । ମଧ୍ୟଏସିଆର କାସ୍ପିଆନ୍ ହ୍ରଦ ତୀରରେ ବାସ କରୁଥିବା ଆର୍ଯ୍ୟମାନଙ୍କର ପଶୁପାଳନହିଁ ଥିଲା ମୁଖ୍ୟ ଜୀବିକା । ଗୋମେଷାଦି ପଶୁମାନଙ୍କ ଲାଗି ଚାରଣ ଭୂମି ଖୋଜି ଖୋଜି ଆର୍ଯ୍ୟମାନେ ଭାରତୀୟ ଉପମହାଦେଶ ଭିତରକୁ ପ୍ରବେଶ କଲେ । ବର୍ଷସାରା ଘାସପତ୍ରର ପ୍ରାଚୁର୍ଯ୍ୟ ତଥା ନାତିଶୀତୋଷ୍ଣ ଜଳବାୟୁରେ ଗୋମେଷାଦି ପଶୁମାନେ ପ୍ରଚୁର ଘାସପତ୍ର ଖାଇବାକୁ ପାଇବା ଫଳରେ ସଭ୍ୟ ମଣିଷ ତାର ଯାଯାବର ପ୍ରକୃତି ଛାଡ଼ି ପଶୁସମ୍ପଦ ସହିତ ଗୋଟିଏ ସ୍ଥାନରେ ବସବାସ କରିବାକୁ ଲାଗିଲା । ଫଳରେ ସୈନ୍ଧବ ଗାଙ୍ଗେୟ ସମତଳ ଅଞ୍ଚଳରେ ଏଯାବତ୍ ହଜାର ହଜାର ବର୍ଷ ଧରି ଏ ଦେଶରେ ଛେଳି ଓ ମେଣ୍ଢାମାନଙ୍କୁ ପାଳନ କରାଯାଉଛି । ମାତ୍ର ଏହି ଜୀବମାନଙ୍କ ସମ୍ପର୍କରେ ପାଳନକାରୀ ଲୋକମାନେ ଆଦୌ ସଚେତନ ନୁହନ୍ତି । ସାପ, ମୂଷା, ବେଙ୍ଗ, ଗୋଧି ବା ନେଉଳ ଏମାନଙ୍କର ପ୍ରକୃତି, ବିଶେଷତ୍ୱ, ପ୍ରଜନନ, ଦେହବୃଦ୍ଧି, ଖାଦ୍ୟବ୍ୟବସ୍ଥା, ରୋଗନିରାକରଣ ଆଦି ତଥ୍ୟ ସହିତ ଦେଶର ବିଭିନ୍ନ ଅଞ୍ଚଳରେ ଥିବା ନାନା ଜାତିର ଛେଳି ବା ମେଣ୍ଢାଙ୍କ ଉପରେ ବିଭିନ୍ନ ଜଳବାୟୁର ପ୍ରଭାବ ବିଷୟରେ ଏ ଦେଶର ଲୋକମାନେ ସମ୍ପୂର୍ଣ୍ଣ ଅଜ୍ଞ କହିଲେ ଅତ୍ୟୁକ୍ତି ହେବନାହିଁ । ସ୍ୱାଧୀନତାର ପରବର୍ତ୍ତୀ କାଳରେହିଁ ଏ ଦିଗରେ ଗବେଷଣା ଆରମ୍ଭ ହୋଇଛି । ବିଗତ ଷାଠିଏ ଦଶକରୁ ମାତ୍ର କୋଡ଼ିଏ ପଚିଶିବର୍ଷ ହେଲା ଛେଳି ଓ ମେଣ୍ଢା ପାଳନ ଭିତ୍ତିକ ଗବେଷଣା ସଂସ୍ଥାମାନଙ୍କରେ ଛାଗପାଳନ ବା ମେଷପାଳନ ସମ୍ପର୍କୀୟ ଅଧ୍ୟୟନ ଓ ଗବେଷଣା ଚାଲୁ ରହିଛି । ହେଲେ ସାରା ଦେଶରେ ଏ ବିଷୟରେ ଇଂରାଜୀ ବା ଅନ୍ୟ କୌଣସି ଭାରତୀୟ ଭାଷାରେ ବହି ଖଣ୍ଡେ ପାଇବା ଅସମ୍ଭବ । ଡକ୍ଟର ମହାନ୍ତିଙ୍କ ଦ୍ୱାରା ଓଡ଼ିଆରେ ଲିଖିତ ଏ ଦିଖଣ୍ଡ ବହି କେବଳ ଓଡ଼ିଶା କାହିଁକି, ସମଗ୍ର ଦେଶରେ ଏକ ଅଗ୍ରଗଣ୍ୟ ପଦକ୍ଷେପ ପରି ମନେହୁଏ ।

ବସ୍ତୁବାଦର ଚରମ ଉପଭୋଗ ହିଁ ମଣିଷର କାମ୍ୟ । ମାତ୍ର ଏଥିରେ ନିହିତ ବୈଜ୍ଞାନିକ ତଥ୍ୟକୁ ହୃଦୟଙ୍ଗମ କରିବାର ଶକ୍ତି ତାର ନାହିଁ । ବ୍ୟାବସାୟିକ ଭିତ୍ତିରେ ଯେ କୌଣସି ବୃତ୍ତିକୁ ପେଟପୋଷିବାର ସମ୍ବଳ ଭାବେ ଗ୍ରହଣ କରିନେବାକୁ ମଣିଷ ଆଗ୍ରହୀ ହୋଇପଡ଼େ, ମାତ୍ର ତତ୍‌ସମ୍ପର୍କୀୟ ବୈଷୟିକ ଜ୍ଞାନର ଅଭାବ ଯୋଗୁଁ ତହିଁରୁ ଯେତିକି ଲାଭ ମିଳିବାର କଥା ତାହା ମିଳିପାରେନା । ବରଂ ଆର୍ଥିକ କ୍ଷତିର ସମ୍ମୁଖୀନ ହୋଇ ମୂଳତକ ମଧ୍ୟ ବ୍ୟକ୍ତି ହରାଇବସେ । ଏହି ସତ୍ୟ ସଜୀବ, ନିର୍ଜୀବ, ଉଭିଦ, ପ୍ରାଣୀ ଆଦି ଯେକୌଣସି ବସ୍ତୁଗତ ବ୍ୟବସାୟ କ୍ଷେତ୍ରରେ ପ୍ରଯୁଜ୍ୟ । ଗତାନୁଗତିକ ଭାବେ କୌଳିକ ବୃତ୍ତି ନ୍ୟାୟରେ ଯେଉଁମାନେ ଛେଳି ବା ମେଣ୍ଢା ପାଳନ କରି କୁଟୁମ୍ବ ପ୍ରତିପୋଷଣ କରୁଛନ୍ତି,

ସେମାନଙ୍କୁ ସାହାଯ୍ୟ କଲାଭଳି ଯଥେଷ୍ଟ ବୈଜ୍ଞାନିକ ତଥ୍ୟ ଦୁଇଟି ବହିରେ ଡକ୍ଟର ମହାନ୍ତି ଉପସ୍ଥାପିତ କରିଛନ୍ତି । ଏ ରାଜ୍ୟର ଅଗଣିତ ଚାଷୀ ମୂଲିଆଙ୍କର ବୋଧଗମ୍ୟ ହେଲାଭଳି ସରଳ ଓଡ଼ିଆ ଭାଷାରେ ଏହି ତଥ୍ୟଗୁଡ଼ିକ ଯେପରି ପ୍ରକାଶ କରାଯାଇଛି, ତାହା ଉକ୍ତ ପୁସ୍ତକଗୁଡ଼ିକୁ ପାଠକଲେ ହୃଦୟଙ୍ଗମ କରିହେବ ।

ଭାରତୀୟ ମେଷ ଗବେଷଣା ସଂସ୍ଥା, ପଶୁଚିକିତ୍ସା ମହାବିଦ୍ୟାଳୟ; ଭାରତୀୟ ପଶୁଚିକିତ୍ସା ପ୍ରତିଷ୍ଠାନ ତଥା ଜାତୀୟ ଛାଗ ଗବେଷଣା ପ୍ରତିଷ୍ଠାନରେ କାର୍ଯ୍ୟରତ ପଶୁବିଜ୍ଞାନୀ ମାନଙ୍କର ଗବେଷଣା ଲବ୍ଧ ସତ୍ୟଗୁଡ଼ିକୁ ଜଣେ କଥାକାରର ଗଳ୍ପ ଶୈଳୀରେ ପ୍ରକାଶ କରିବା ଲାଗି ସକ୍ଷମ ହୋଇ ପାରିଛନ୍ତି ସେ । ଇଂରାଜୀରେ ପ୍ରକାଶିତ ଏ ସବୁ ତଥ୍ୟକୁ ଗାଳ୍ପିକର ତୁଳିରେ ଆଙ୍କି ପାଠକର ମନଛୁଆଁ କରିବା ଲାଗି ଡକ୍ଟର ମହାନ୍ତି ଆନ୍ତରିକତାର ସହିତ ଉଦ୍ୟମ କରିଛନ୍ତି ମେଷ ପାଳନ ବା ଛାଗ ପାଳନ ବିଷୟରେ କୌଣସି ତଥ୍ୟର ଅବତାରଣା ପୂର୍ବରୁ ବିଷୟବସ୍ତୁ ଗୁଡ଼ିକୁ ରସଯୁକ୍ତ କରିବା ପାଇଁ ପାଠକ ସମ୍ମୁଖରେ ତତ୍‌ସମ୍ପର୍କୀୟ ଗଳ୍ପଟିଏ ଲେଖାଁ ବାଢ଼ିଛନ୍ତି ସେ ।

ମେଷପାଳନ ବିଷୟକ ବୈଷୟିକ ତଥ୍ୟଗୁଡ଼ିକର ଉପସ୍ଥାପନା ପୂର୍ବରୁ ଯୁକ୍ତରାଷ୍ଟ୍ର ଆମେରିକାସ୍ଥ କୌଣସି ଏକ କୃଷି ବିଶ୍ୱବିଦ୍ୟାଳୟରେ ଗ୍ରୀଷ୍ମକାଳୀନ ସମାବର୍ତ୍ତନ ଉତ୍ସବରେ ଜନୈକା ମାର୍କିନ ଛାତ୍ରୀଙ୍କ ସହିତ ତାଙ୍କର କଥୋପକଥନକୁ ଗଳ୍ପ ଆକାରରେ ପାଠକର ଦୃଷ୍ଟି ଆକର୍ଷଣ କରିବା ଲାଗି ଉପସ୍ଥାପିତ କରିଛନ୍ତି । ଆମେରିକାର ଜନସାଧାରଣ ଛେଳି ମାଂସ ଖାଇବାକୁ ଘୃଣା କରନ୍ତି ଓ ଭାରତରେ ଅଧିକ ମେଷ ପାଳନ କରିବା ପାଇଁ ମାର୍କିନ୍ ଯୁବତୀଙ୍କ ଉପଦେଶକୁ ଆରବୀୟ ଛାତ୍ର ଜୋ'ରିୟାସି ଯେପରି ସମାଲୋଚନା କଲେ ତାହା ବେଶ୍ କୌତୂହଳାତ୍ମକ ହୋଇଛି । ଏଥିସହିତ ଓଡ଼ିଶାର ସାଧାରଣ ଚାଷୀ ଓ ମେଷ ପାଳକମାନେ ବିଜ୍ଞାନ ସମ୍ମତ ରୀତିରେ ମେଷପାଳନ କରିପାରିଲେ କିପରି ଲାଭବାନ୍ ହୋଇପାରନ୍ତେ ସେ ସମ୍ପର୍କରେ ଆଲୋଚନା କରିବା ପାଇଁ ପରବର୍ତ୍ତୀ ଅଧ୍ୟାୟଗୁଡ଼ିକରେ ନାନା ବୈଷୟିକ ତଥ୍ୟର ଉପସ୍ଥାପନା କରିଛନ୍ତି ।

ଏଭଳି ବୈଷୟିକ ଜ୍ଞାନର ଆବଶ୍ୟକତା ସମ୍ପର୍କରେ ଆଲୋଚନା କରିବାକୁ ଯାଇ ସେ ସ୍ୱାଧୀନତା ପରବର୍ତ୍ତୀ ଦଶକମାନଙ୍କରେ ଦେଶର ଜନସଂଖ୍ୟାବୃଦ୍ଧି ସହିତ ମେଣ୍ଢା ବା ଛେଳି ମାନଙ୍କ ସଂଖ୍ୟା କିଭଳି ସମାନ୍ତରାଳ ଭାବେ ଗତିଶୀଳ ତାର ଏକ ପରିସଂଖ୍ୟାନ ଭିତ୍ତିକ ବିବରଣୀ ପ୍ରଦାନ କରିଛନ୍ତି । ଯେ କେହି ଯୁବଶିଳ୍ପଦ୍ୟୋଗୀ ଏହି ତଥ୍ୟକୁ ଗଭୀର ଭାବେ ଅନୁଧ୍ୟାନ କଲେ ବହିରେ ଦିଆଯାଇଥିବା ଜ୍ଞାନକୁ ସମ୍ବଳକରି ମେଷ ବା ଛାଗ ପାଳନକୁ ଏକ ମୁଖ୍ୟ ବୃତ୍ତି ଭାବେ ଗ୍ରହଣ କରିବାକୁ ଆଗ୍ରହୀ ହୋଇ ଉଠିବ ।

ସେହିଭଳି ଛାଗପାଳନ ପୁସ୍ତକର ପ୍ରାରମ୍ଭରେ କୌଣସି ସରକାରୀ ଦପ୍ତରରେ କାର୍ଯ୍ୟରତ ଜଣେ ବୈଷୟିକ କର୍ମଚାରୀଙ୍କ ସହିତ ଦୁଇଜଣ ଧନ୍ଦାନ୍ୱେଷୀ ବେକାର

ଯୁବକଙ୍କର କଥୋପକଥନକୁ ଗଳ୍ପାକାରରେ ଫୁଟାଇ ଛାଗପାଳନର ବୈଷୟିକ ଦିଗ ପ୍ରତି ପାଠକର ଧ୍ୟାନ ଆକର୍ଷଣ କରିଛନ୍ତି ସେ । ବେକାରୀ ସମସ୍ୟାର ସମାଧାନ ଲାଗି ଛାଗପାଳନକୁ ଯେ ଏକ ଉପାର୍ଜନକ୍ଷମ ବୃତ୍ତି ଭାବରେ ଗ୍ରହଣ କରାଯାଇ ପାରିବ ତାହା ବୁଝାଇବାକୁ ଏଥିଲାଗି ବୈଷୟିକ ପୁସ୍ତକର ଆବଶ୍ୟକତା ଉପରେ ଆଲୋକପାତ କରିଛନ୍ତି । ପୂର୍ବାଭାଷର ଗଳ୍ପଟି ପଢୁପଢୁ ପାଠକ ପରବର୍ତ୍ତୀ ଅଧ୍ୟାୟ ଗୁଡ଼ିକରେ ସରଳ ଓଡ଼ିଆ ଭାଷାରେ ଉପସ୍ଥାପିତ ଗବେଷଣାଲବ୍ଧ ଋଷ ବୈଜ୍ଞାନିକଙ୍କ ତଥ୍ୟଗୁଡ଼ିକୁ ଗ୍ରହଣ କରିନେବା ଲାଗି ସମ୍ମତ ହୋଇ ଉଠେ । ତାହା ହିଁ ଗୁରୁବାବୁଙ୍କ ବୈଷୟିକ ସାହିତ୍ୟର ବିଶେଷତ୍ୱ ।

ଉଭୟ ପୁସ୍ତକରେ ଥିବା ପ୍ରଜନନ, ଖାଦ୍ୟଯୋଗାଣ, ରୋଗନିରାକରଣ ଇତ୍ୟାଦି ବିଷୟ ଆଲୋଚନା କରି ଦେଶ ବିଦେଶରେ ମିଳୁଥିବା ବିଭିନ୍ନ ଜାତିର ଛେଳି ମେଣ୍ଢା ବିଷୟରେ ଓଡ଼ିଶାର କୃଷକମାନଙ୍କୁ ସମ୍ୟକ୍ ଧାରଣା ଦିଆଯାଇଛି । ଓଡ଼ିଶାର କ୍ଷୁଦ୍ରଚାଷୀ, ନାମମାତ୍ର ଚାଷୀ ଓ ଭୂମିହୀନ କୃଷିଶ୍ରମିକମାନଙ୍କ ପକ୍ଷରେ ସହଜସାଧ, ମେଷ ବା ଛାଗପାଳନ ପ୍ରକ୍ରିୟା ଉପରେ ଉକ୍ତ ବହିଦୁଇଟିରେ ଯେଭଳି ସରଳ ଆଲୋଚନା କରାଯାଇଛି ତାହା ବିଜ୍ଞାନ ଓ କଥା ସାହିତ୍ୟର ଏକ ଚମତ୍କାର ସମାହାର ଭଳି ମନେହୁଏ । ଡକ୍ଟର ଗୁରୁପ୍ରସାଦ ମହାନ୍ତି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ଗାଳ୍ପିକ ଓ ଭ୍ରମଣକାହାଣୀ ରଚୟିତା ଭାବରେ ପରିଚିତ । ମାତ୍ର ପଶୁପାଳନ ପରି ଏକ ଅର୍ଥକାରୀ ବୈଷୟିକ ବୃତ୍ତି କ୍ଷେତ୍ରରେ ତାଙ୍କର ଲେଖନୀ ଚାଳନା ଯେ ଓଡ଼ିଶାରେ ପ୍ରାଣୀଜ ଖାଦ୍ୟ ଉତ୍ପାଦନ ତଥା ଜାତୀୟ ଅର୍ଥନୀତିକୁ ସମୃଦ୍ଧ କରିବା ସାଙ୍ଗେ ସାଙ୍ଗେ ଓଡ଼ିଆ ସାହିତ୍ୟର କଳେବର ପୁଷ୍ଟ କରିବ ଏଥିରେ ସନ୍ଦେହ ନାହିଁ ।

*ଅବସରପ୍ରାପ୍ତ ଅଧ୍ୟାପକ, ଓଡ଼ିଶା ପଶୁ ଚିକିତ୍ସା ମହାବିଦ୍ୟାଳୟ, ଭୁବନେଶ୍ୱର*



# ଛାଗପାଳନ ଓ ମେଷପାଳନ ପୁସ୍ତକର ଲେଖକ ଗୁରୁପ୍ରସାଦ

ଡଃ ପ୍ରଫୁଲ୍ଲ କୁମାର ହରିଚନ୍ଦନ

ଡକ୍ଟର ଗୁରୁପ୍ରସାଦ ମହାନ୍ତି ଏ ରାଜ୍ୟର ଜଣେ ସୁଦକ୍ଷ ପଶୁପୁଷ୍ଟି ତତ୍ତ୍ୱଜ୍ଞ ବୈଜ୍ଞାନିକ । ସେ ଗୃହପାଳିତ ପଶୁମାନଙ୍କ ଉପରେ ସାଧାରଣ ଲୋକଙ୍କ ଆବଶ୍ୟକତାକୁ ଦୃଷ୍ଟିରେ ରଖି କେତେକ ପୁସ୍ତକ ଲେଖିଛନ୍ତି । ଈଶ୍ୱରଙ୍କ ସୃଷ୍ଟିରେ ଅନେକ ବସ୍ତୁ ଭରପୁର ହୋଇ ରହିଛି । ଲୋକମାନଙ୍କ ଉପକାରରେ ଆସିବା ପାଇଁ ପ୍ରକୃତିର ଅଜଣା ଜିନିଷମାନଙ୍କରୁ ଅଧ୍ୟବସାୟ ବଳରେ ବୈଜ୍ଞାନିକମାନେ ନୂଆ ନୂଆ କଥା ଆବିଷ୍କାର ବା ଉଦ୍ଭାବନ କରି ଲୋକଲୋଚନକୁ ଆଣନ୍ତି । ଏହାଦ୍ୱାରା ଲୋକମାନେ ସୁଫଳ ପାଇ ଭଲ ଭାବରେ ଜୀବନଯାପନ କରନ୍ତି । ବୈଜ୍ଞାନିକମାନଙ୍କର ଅକ୍ଳାନ୍ତ ପରିଶ୍ରମ ସୃଷ୍ଟିକର୍ତ୍ତାଙ୍କର ଗୁପ୍ତ-ରହସ୍ୟ ଭେଦକରି ମାନବ ସମାଜର ଉପକାର ପାଇଁ ତଥ୍ୟମାନ ବାହାର କରି ଚାଲିଛନ୍ତି । ଏହାଦ୍ୱାରା ଆଦିମ ଯୁଗର ଲୋକମାନଙ୍କ ତୁଳନାରେ ଆଧୁନିକ ମାନବସମାଜ ବିଜ୍ଞାନର ଅଗ୍ରଗତିରେ ତାଳଦେଇ ଜୀବନକୁ ସୁଖମୟ ଓ ସୁନ୍ଦର କରିପାରିଛି । ଆଧୁନିକ ଯୁଗର ସୁଖ, ସ୍ୱାଚ୍ଛନ୍ଦ୍ୟସବୁ ବୈଜ୍ଞାନିକମାନଙ୍କର ଅକ୍ଳାନ୍ତ ପରିଶ୍ରମ, ତ୍ୟାଗ, କର୍ମନିଷ୍ଠତା ଯୋଗୁ ହୋଇପାରିଛି । ତଥାପି ଭଗବାନଙ୍କ ସୃଷ୍ଟିରୁ ଆହୁରି ନୂତନ ବସ୍ତୁ ବାହାର କରି ଲୋକମାନଙ୍କ ଉପକାର ଆସିବା ପାଇଁ ଅଗଣିତ ବୈଜ୍ଞାନିକ ସର୍ବଦା କାର୍ଯ୍ୟରତ ।

ବୈଜ୍ଞାନିକ ଡଃ ମହାନ୍ତି ପଶୁପାଳନରେ ବୈଜ୍ଞାନିକ ମତମାନ ଉଦ୍ଧାର କରି ବହିଗୁଡ଼ିକ ଲେଖିଛନ୍ତି । ଯଦ୍ୱାରା କି ମୂଲିଆ, ନାମମାତ୍ର ଚାଷୀ ଓ କ୍ଷୁଦ୍ରଚାଷୀମାନେ ପଶୁପାଳନ କରି ସେମାନଙ୍କ ଆର୍ଥିକ ଉନ୍ନତି କରିପାରିବେ । ଆର୍ଥିକ ଉନ୍ନତି ହେଲେ ସେମାନଙ୍କର ସାମାଜିକ ଉନ୍ନତି ହେବା ସଙ୍ଗେ ସଙ୍ଗେ ସେମାନଙ୍କର ପିଲାମାନେ ବଂଶାନୁକ୍ରମେ ମଜୁରିଆ ଜୀବନଯାପନ ନ କରି ସ୍ୱାଧୀନ ବ୍ୟବସାୟୀ ହୋଇ ସୁଖରେ ରହିପାରିବେ । ମୁଁ ତାଙ୍କର ଓଡ଼ିଶାରେ ଛାଗପାଳନ ବହିଟିକୁ ପଢ଼ିବାକୁ ସୁବିଧା ପାଇଲି । ସେ ଏହି ବହିରେ ବହୁତ ପ୍ରକାର ବିଷୟବସ୍ତୁ ଲେଖିଛନ୍ତି । ସାଧାରଣଲୋକ ବା ଛାଗପାଳନକାରୀ ଏ ବହିଟିକୁ ପଢ଼ିଲେ ବହୁତଗୁଡ଼ିଏ ନୂତନ ତଥ୍ୟ ପାଇ ପଶୁପାଳନ ବ୍ୟବସାୟରୁ ଉନ୍ନତି କରି ବିଶେଷ ଲାଭବାନ ହୋଇପାରିବ ।

ସେ ଓଡ଼ିଶାରେ ଛାଗପାଳନ ଓ ଛାଗମାନଙ୍କ ସଂଖ୍ୟା ବିଷୟରେ ୧୯୫୭ରୁ ଆରମ୍ଭ କରି ୧୯୮୨ ମସିହା ପର୍ଯ୍ୟନ୍ତ ୬ଟି ପଞ୍ଚବାର୍ଷିକ ଯୋଜନାର ଆନୁପାତିକ ବର୍ଣ୍ଣନା କରିଛନ୍ତି । ଓଡ଼ିଶାର ଲୋକମାନେ ୧୯୫୭ଠାରୁ ଯେତିକି ଛେଳି ପାଳୁଥିଲେ ୧୯୮୨ ମସିହା ସୁଦ୍ଧା ଅଧିକ ୩ଗୁଣ ଛେଳି ପାଳିଲେ । ଲୋକମାନେ ଛେଳିପାଳନରୁ ଉପକାର ଓ ଲାଭ ପାଇବାରୁ ସେମାନଙ୍କର ଛେଳିପାଳନ ଦିନକୁ ଦିନ ଉତ୍ତରୋତ୍ତର ଉନ୍ନତ ହୋଇଚାଲିଛି ।

ଡଃ ମହାନ୍ତି ଛେଳିଚାଷର ଉନ୍ନତି କିପରି ହେବ ସେଥିପାଇଁ ଚାଷୀମାନଙ୍କ ଆଗରେ ଛେଳି ବିଷୟରେ ବହୁତ ତଥ୍ୟ ଏହି ବହିରେ ବର୍ଣ୍ଣନା କରିଛନ୍ତି । ଯଥା – କେଉଁ ଜଳବାୟୁରେ କେଉଁ ପ୍ରକାର ଛେଳି ବଞ୍ଚିପାରିବେ । ଓଡ଼ିଶାରେ କେଉଁ ପ୍ରକାର ଛେଳି ଦେଖାଯାନ୍ତି ଏବଂ ସେମାନଙ୍କର ସଂଖ୍ୟା କେତେ । ସେମାନଙ୍କର ଖାଦ୍ୟ, ହଜମ ଶକ୍ତି ଏବଂ ଦେହବୃଦ୍ଧି । ଛେଳି ଭଲ ବଢ଼ିବାର ଉପାୟ । ଛେଳିଛୁଆ, ମାଈଛେଳି, ବୋଦା ଓ ଗର୍ଭବତୀ ଛେଳିମାନଙ୍କୁ କିପରି ଘରେ ରଖିବାକୁ ପଡ଼ିବ । ସେମାନେ କେଉଁ ଗଛର ପତ୍ର ଖାଇ ଭଲରେ ବଢ଼ିପାରନ୍ତି । ଏହାବାଦେ ଦାନା ଦେଲେ କ'ଣ ଉପକାର ଆସେ । ସେମାନଙ୍କ ରୋଗ ବୈରାଗ ନ ହେବା ପାଇଁ କ'ଣ ଯତ୍ନ ନେବାକୁ ପଡ଼ିବ ଏବଂ ରୋଗ ହେଲେ କିପରି ଭଲ କରିବାକୁ ପଡ଼ିବ । ଛେଳିମାନଙ୍କ ପାଇଁ ଅଳ୍ପ ଖର୍ଚ୍ଚରେ ଗୁହାଳ କିପରି ହେବ । ଭାରତରେ କେତେ ପ୍ରକାର ଛେଳି ଦେଖାଯାନ୍ତି, ଭାରତୀୟ ମାନେ ବିଦେଶୀ ଛେଳି ବୋଦା ଆଣି ଆମ ଛେଳିଙ୍କଠାରୁ ଯେଉଁ ଶଙ୍କର ଛୁଆ ବାହାର କରୁଛନ୍ତି ଏବଂ ସେମାନଙ୍କର ଉପକାରିତା । ଛେଳି ଦୁଗ୍ଧ ଛୋଟ ପିଲାଠାରୁ ଆରମ୍ଭ କରି ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ଉପକାର ଦିଏ । ଭାରତରେ ଗୋଟିଏ ଛେଳି ୨୦୦ ରୁ ୫୦୦ ଗ୍ରାମ୍ ଦୈନିକ କ୍ଷୀର ଦିଏ । ଛେଳି କ୍ଷୀର ବିକି ଲୋକମାନେ ଭଲ ଲାଭ କରନ୍ତି । ଭାରତର ପ୍ରତି ପ୍ରଦେଶରେ ଛାଗପାଳନ ଉପରେ ଉନ୍ନୟନମୂଳକ ଯୋଜନାର ପ୍ରଭାବ । ଭାରତର କେତେକ ପ୍ରଦେଶରେ ପଶମ ଓ ମାଂସ ବ୍ୟବସାୟ ନିଗମ କିପରି ଚାଷୀମାନଙ୍କୁ ଉପକାର ଦେଉଛି ଏବଂ ଓଡ଼ିଶାରେ ଏପରି ନିଗମ ହେଲେ ଛାଗ ଓ ମେଷପାଳକମାନଙ୍କୁ ବହୁତ ସାହାଯ୍ୟ କରନ୍ତା । ଛାଗ ପାଳକମାନେ ଛେଳି କ୍ଷୀର, ମାଂସ, ପଶମ ଓ ଚମଡ଼ା ବିକ୍ରୀକରି ବହୁତ ଲାଭ କିପରି ପାଉଛନ୍ତି । ଛେଳି ନଣ୍ଡି ଓ ପରିସ୍ରା ମୂଲ୍ୟବାନ ଖତ ରୂପେ ଜମିରେ ବ୍ୟବହାର କରାଯାଏ ।

ମୋଟାମୋଟି ଭାବେ ଜଳବାୟୁକୁ ଆଖିଆଗରେ ରଖି କେଉଁ ଜାତିର ଛେଳିପାଳନ କଲେ ଲାଭଦାୟକ ହେବ ତା' ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଆମ ଓଡ଼ିଶାରେ କଳା ବଙ୍ଗୀୟ ଓ ଗଞ୍ଜାମ ଛେଳି ମାଂସ ପାଇଁ ପାଳନ କରାଯାଏ । ଦିନ ମଜୁରିଆ,

ନାମମାତ୍ର ଚାଷୀ ଓ କ୍ଷୁଦ୍ରଚାଷୀମାନେ ୫ଟି ଛେଳି ପଞ୍ଚବାର୍ଷିକ ଯୋଜନା ମାଧ୍ୟମରେ ପାଳନ କରି ବହୁତ ଲାଭବାନ ହୋଇପାରୁଛନ୍ତି । ଗୋଟିଏ ଭୂମିହୀନ କୃଷକ ୫ଟି ମାଈଛେଳି ପାଳି ୩ ବର୍ଷ ଭିତରେ ଟ. ୨୫,୦୦୦/- ଆୟ କରେ । ଏହା ବାଦେ ୫ଟି ମାଈଛେଳି ବଢ଼ି ୨୩ଟି ମାଈଛେଳିର ଅଧିକାରୀ ହୁଏ ।

ଜଙ୍ଗଲ ନ ଥିବା ସ୍ଥାନରେ ମଧ୍ୟ ଛେଳି ପାଳନ କରି ସହରତଳ ଲୋକମାନେ ଯଥେଷ୍ଟ ଲାଭ ପାଉଛନ୍ତି । ସେମାନେ ଛେଳିମାନଙ୍କୁ ବାଡ଼ ଓ ତୋଟାମାନଙ୍କରେ ଥିବା ଅଶ୍ୱତ୍ଥ, ଶିରିଷ, ବଡ଼ଚାକୁଣ୍ଡା, ମାହାଳ, କଞ୍ଚନ, ଅଗସ୍ତି, ବାଉଁଶ, ବରକୋଳି, ଭୂଇଁ ବରକୋଳି, ବାବୁଲ ଓ ବିଲାତି କଇଁଆ ପତ୍ରମାନ ଖାଇବାକୁ ଦେଇ ବଢ଼ାନ୍ତି । ଏହା ବାଦେ ଗର୍ଭବତୀ ଛେଳି, ଛୋଟ ଛେଳି ଛୁଆ ଓ ଖାସିମାନଙ୍କୁ ୧୦୦-୨୫୦ ଗ୍ରାମ ପର୍ଯ୍ୟନ୍ତ ଦୈନିକ ଦାନା ଓ ଧାତବଲବଣ ଦେଲେ ସେମାନେ ହୃଷ୍ଟପୁଷ୍ଟ ହୋଇ ବଢ଼ି ଲାଭ ଦେଇଥାନ୍ତି । ଏହି ଦାନା କାଣ୍ଡିଆ କୁଣ୍ଡା, ଚୋକଡ଼, ଚାଉଳଚୂନା, ଅଟା ବା ମୁଗ ବା କୋଳଥ ଗୁଣ୍ଡ ଓ ଖଣିଜ ଲବଣ ମିଶାଇ ଦିଆଯାଏ । ବଙ୍ଗଜାତୀୟ ଖାସିମାନଙ୍କର ୯ ମାସ ବୟସବେଳକୁ ୧୫ରୁ ୧୭ କେଜି ଓଜନ ହୋଇଯାଏ ଏବଂ ଏହି ସମୟରେ ସେମାନଙ୍କୁ ବିକ୍ରୀ କରିଦେଲେ ଚାଷୀକୁ ଭଲ ଲାଭ ମିଳେ ।

ଛେଳି ଛୁଆଙ୍କଠାରୁ ଆରମ୍ଭ କରି ବୋଦା, ଖାସି ଓ ମାଈଛେଳିମାନଙ୍କର କୃମିରୋଗ ପ୍ରତି ୩ ମାସରେ ଥରେ ଲେଖାଏଁ ଝାଡ଼ା ପରୀକ୍ଷା କରି ଚିକିତ୍ସା କରିଦେବା ଭଲ । ଜୀବାଣୁ ଓ ଭୂତାଣୁ ଜନିତ ରୋଗ ପାଇଁ ପ୍ରତିଷେଧକ ବ୍ୟବସ୍ଥା ଓ ଚିକିତ୍ସା ସମୟ ଅନୁସାରେ କରାଗଲେ ଛେଳିମାନଙ୍କର ମୃତ୍ୟୁ ହୁଏ ନାହିଁ କି ଚାଷୀମାନେ କ୍ଷତି ସହି ନଥାନ୍ତି । ଗୁହାଳ ତିଆରିରେ ବିଶେଷ ଖର୍ଚ୍ଚ କରିବା ଉଚିତ ନୁହେଁ । ଗୁହାଳର ଚଟାଣ ସିମେଣ୍ଟରେ କରି ଅଧା କାନ୍ଥି ଉଠାଇଦେଲେ ଓ ଉପରେ ଚାଳ ଛପର କଲେ ଛେଳିମାନେ ଭଲରେ ରୁହନ୍ତି । ଗୁହାଳକୁ ଯଥେଷ୍ଟ ପବନ ଯିବା ଆସିବା କରିବା ଦରକାର । ବର୍ଷାରେ ସେମାନେ ଯେପରି ଗୁହାଳରେ ଓଦା ନ ହେବେ ସେଥିପ୍ରତି ତିଆରି କଲାବେଳେ ଧ୍ୟାନ ଦେବା ଦରକାର । ଛେଳିଛୁଆ, ଗର୍ଭବତୀ ଛେଳି, ମାଈଛେଳି, ଖାସି ଓ ବୋଦାମାନଙ୍କୁ ଗୁହାଳରେ ଅଲଗା ଖୁଆଡ଼.କରି ବାନ୍ଧିବା ଦରକାର । ଲେଖକ ଛାଗପାଳନରେ କିପରି ଲାଭ.ହେବ ସେଥିପ୍ରତି ଯଥେଷ୍ଟ ଧ୍ୟାନ ଦେଇ ବହିଟିରେ ଉପରଲିଖିତ ବିଷୟମାନ ପ୍ରାଞ୍ଜଳ ଭାବେ ବୋଧଗମ୍ୟ ଭାଷାରେ ବର୍ଣ୍ଣନା କରିଛନ୍ତି ।

ଡଃ ମହାନ୍ତି ତାଙ୍କ ମେଷପାଳନ ବହିରେ ଚାଷୀ କିପରି ମେଷପାଳନ କଲେ ଲାଭ ପାଇବ ତାର ବିସ୍ତୃତ ବର୍ଣ୍ଣନା କରିଛନ୍ତି । ଓଡ଼ିଶାରେ ୧୯୫୭ରେ ଯେତିକି ମେଣ୍ଢାଥିଲେ, ୧୯୮୨ ସୁଦ୍ଧା ସେହି ସଂଖ୍ୟାରେ ୮୪.୪୪ ଭାଗ ଅଧିକ ବଢ଼ିଥିଲା । ବିଶେଷଭାବରେ

ଗଞ୍ଜାମ, ବଲାଙ୍ଗୀର, କଟକ, ପୁରୀର ଚାଷୀମାନେ ମେଣ୍ଢା ବହୁତ ସଂଖ୍ୟାରେ ପାଳନ୍ତି । ସେମାନେ ମେଣ୍ଢାମାନଙ୍କୁ ମାଂସ ପାଇଁ ବିକ୍ରୀ କରି ଯଥେଷ୍ଟ ଟଙ୍କା ଉପାର୍ଜନ କରନ୍ତି । କୋରାପୁଟ, ସୁନ୍ଦରଗଡ଼, ସମ୍ବଲପୁର ଓ ଫୁଲବାଣୀରେ କମ ସଂଖ୍ୟାରେ ମେଣ୍ଢା ଦେଖାଯାନ୍ତି । ଏହାର ମୁଖ୍ୟ କାରଣ ହେଲା ହରିଜନମାନଙ୍କର ମେଣ୍ଢା ବାଘ ଖାଇଯିବାରୁ ସେମାନେ ମେଣ୍ଢା ପାଳନ ପସନ୍ଦ ନ କରି ଘୁଷୁରି ଓ କୁକୁଡ଼ା ପାଳନ କରନ୍ତି । ବାଲେଶ୍ୱର ଓ ମୟୂରଭଞ୍ଜର ଲୋକେ ଛେଳି ମାଂସ ପ୍ରତି ଆଗ୍ରହ ଥିବାରୁ ଏବଂ କଲିକତା ଛେଳି ପଠାଇ ଭଲ ଟଙ୍କା ରୋଜଗାର କରୁଥିବାରୁ ସେମାନେ ମେଣ୍ଢା ପାଳିବା ପରିବର୍ତ୍ତେ ଛେଳି ପାଳିଥାନ୍ତି । ସମ୍ବଲପୁର ଓ କଳାହାଣ୍ଡିର ପାହାଡ଼ିଆ ଅଞ୍ଚଳ ଓ ଜଳବାୟୁ ଅନୁସାରେ ପଶମ ଓ ମାଂସ ଜାତୀୟ ମେଣ୍ଢା ପାଳନ କରାଯାଇପାରେ ।

ଯେଉଁ ମେଣ୍ଢା ଥରକୁ ୨ ବା ୩ଟି ଛୁଆ ଦିଏ ଏବଂ ବର୍ଷକରେ ଅଧିକ ଥର ଛୁଆ ଜନ୍ମ କରେ, ସେଗୁଡ଼ିକ ମେଷ ପାଳକକୁ ଭଲ ଲାଭ ଦେଇଥାଏ । ମେଣ୍ଢା ମାଂସ ଓ ପଶମ ପାଇବାକୁ ହେଲେ ଜାତୀୟା ମେଣ୍ଢା ବୋଦା ଦ୍ୱାରା ଦେଶୀ ମେଣ୍ଢାକୁ ସଂଗମ କରାଇ ସଙ୍କର ମେଣ୍ଢା ବାହାରକରି ସେମାନଙ୍କର ଗୁଣାତ୍ମକ ମାନ ବଢ଼ାଯାଇଥାଏ । ଗଞ୍ଜାମ ଚାଷୀମାନେ ଆନ୍ଧ୍ରର ଡ଼ୋକାନୀ, ବେଲାରୀ ଓ ନେଲୋର ଏବଂ ତାମିଲନାଡୁର ମାଡ୍ରାସ ରେଡ୍ ବୋଦାମାନଙ୍କ ଜରିଆରେ ସଙ୍କର ମେଣ୍ଢା ଉତ୍ପାଦନ କରି ସେମାନଙ୍କର ମାଂସ ଓ ପଶମ ଉତ୍ପାଦନ ବଢ଼ାଇ ପାରିଛନ୍ତି । ଉନ୍ନତ ଧରଣର ବୋଦାଟିଏ ୨୩ରୁ ୭୦ଟି ମେଣ୍ଢି ସଂଗମ କରିପାରେ ।

ଆନ୍ଧ୍ରପ୍ରଦେଶରେ ମାଂସ ପାଇଁ ନେଲୋର, ମାଣ୍ଡ୍ୟା ଓ କୋଏମ୍ବାଟୁର ମେଣ୍ଢା ପାଳନ କରାଯାଏ । ମାଂସ ଓ ପଶମ ପାଇଁ ଗୁରେଜମେଣ୍ଢା କାଶ୍ମୀରରେ ପାଳନ କରାଯାଏ । ୟୁରୋପୀୟ ମେଣ୍ଢା ଯଥା : ଲିସେଷ୍ଟାର ଓ କୋରିଡ଼େଲ ମାଂସ ଓ ପଶମ ପାଇଁ ବିଖ୍ୟାତ । ପ୍ରତ୍ୟେକ ମେଣ୍ଢା ୧୦୦ କେଜି ଓଜନ ବିଶିଷ୍ଟ ଏବଂ ବର୍ଷକୁ ୩ କେଜି ପଶମ ଦେଇଥାନ୍ତି । ମେରିନୋ ମେଣ୍ଢା ଉତ୍କୃଷ୍ଟ ପଶମ ଉପାର୍ଜନ କରେ । ସେଥିପାଇଁ ମେରିନୋ, ରାମବୁଲେଟ୍, ପୋଲୱାର୍ଥ ବୋଦାମାନ ଆଣି କାଶ୍ମୀର ଓ ରାଜସ୍ଥାନର ସଙ୍କର ମେଣ୍ଢାମାନ ବର୍ଷକୁ ଦେଢ଼ରୁ ଦୁଇ.କେ.ଜି. ଓଜନର ପଶମ ଦେଇଥାଆନ୍ତି । ଭାରତୀୟ ଜଳବାୟୁ ଅନୁସାରେ ବହୁତ ପ୍ରକାର ମେଣ୍ଢା ୫ଟି ଅଞ୍ଚଳରେ ଦେଖାଯାନ୍ତି । ସେହି ଅଞ୍ଚଳମାନ ହେଲା ଯଥା - (୧) ହିମାଳୟ ପାର୍ବତ୍ୟ ଅଞ୍ଚଳ ମେଣ୍ଢା, (୨) ଶୁଷ୍କ ପଶ୍ଚିମାଞ୍ଚଳ ମେଣ୍ଢା, (୩) ଦକ୍ଷିଣାଞ୍ଚଳ ମେଣ୍ଢା, (୪) ମଧ୍ୟ ଭାରତୀୟ ମେଣ୍ଢା, (୫) ପୂର୍ବାଞ୍ଚଳ ମେଣ୍ଢା ।

ହିମାଳୟ ପାର୍ବତ୍ୟ ଅଞ୍ଚଳରେ ଗୁରେଜ, ଭାକରୱାଲ, ଗଦି, ରାମପୁର ବୁସିୟାର ମେଣ୍ଢାମାନଙ୍କର ବାସସ୍ଥଳି । ସେମାନଙ୍କୁ ମେରିନୋ, ରାମବୁଲେଟ୍ ଓ ପୋଲୱାର୍ଥ

ବୋଦାମାନଙ୍କ ସହିତ ସଂଗମ କରାଇ ସଙ୍କର-ମେଣ୍ଢା ବାହାରକରି ପଶମ ଓ ମାଂସ ଯଥେଷ୍ଟ ପରିମାଣର ଦଢ଼େଇ ପାରିଛନ୍ତି । ଥଣ୍ଡା ଜଳବାୟୁ, ଓ ଯଥେଷ୍ଟ ଘାସ ଯୋଗୁ ସେଠାରେପଶମ ଜାତୀୟ ମେଣ୍ଢା ରହି ଯଥେଷ୍ଟ ପଶମ ଦିଅନ୍ତି ।

ଶୁଷ୍କ ପଶ୍ଚିମାଞ୍ଚଳର ମେଣ୍ଢାମାନେ ହେଲେ ବିକାନିର୍, ମାରଓ୍ୱାଡ଼, ଚୋକଲା, ଜୟଶାଲମେରୀ, ସୋନାଡ଼ି, ଲୋହି ଓ କାଥିଆବାଡ଼ି । ଏହି ମେଣ୍ଢାମାନଙ୍କଠାରୁ ଲୋକେ ମାଂସ ଓ ପଶମ ଯଥେଷ୍ଟ ପରିମାଣରେ ପାଆନ୍ତି ।

ଦକ୍ଷିଣାଞ୍ଚଳ ମେଣ୍ଢା ଯଥା ନେଲୋର, ଡ଼େକାନି ଓ ବେଲାରି । ଏମାନେ ମାଂସ ଓ ପଶମ ଦେଇଥାନ୍ତି । ଏହିମାନଙ୍କଠାରୁ ମେରିନୋ ବୋଦା ସଂଗମରେ ସଙ୍କର ମେଣ୍ଢା ବାହାରକରି ଯଥେଷ୍ଟ ପରିମାଣର ପଶମ ଉତ୍ପାଦନ କରୁଛନ୍ତି । ଏଠାକାର ମାଣ୍ଡ୍ୟା ଓ କୋଏମ୍ବାଟୁର ମେଣ୍ଢାମାନେ ମାଂସ ପାଇଁ ପ୍ରସିଦ୍ଧ ।

ମଧ୍ୟଭାରତୀୟ ମେଣ୍ଢା - ଯଥା : ଛୋଟନାଗପୁରୀ । ଏମାନେ ଦେଖିବାକୁ ଛୋଟ । ଏମାନେ ପଶମ ଓ ମାଂସ ଦେଇଥାନ୍ତି ।

ପୂର୍ବାଞ୍ଚଳ ମେଣ୍ଢା - ଗଞ୍ଜାମ ଓ ବଲାଙ୍ଗୀର ମେଣ୍ଢା ନାମରେ ପରିଚିତ । ଗଞ୍ଜାମ ମେଣ୍ଢା ଡେଙ୍ଗା ଓ ବଲାଙ୍ଗୀର ମେଣ୍ଢା ଛୋଟ । ବଲାଙ୍ଗୀର ମେଣ୍ଢାରେ ମାଂସ କମ ମିଳେ । ଏହି ମେଣ୍ଢାମାନଙ୍କୁ କୋରେଡ଼େଲ ଓ ବାନ୍ନୁର ମେଣ୍ଢା ବୋଦା ସହିତ ସଂଗମ କରାଇ ସଙ୍କର ମେଣ୍ଢା ବାହାରକରି ଅଧିକ ମାଂସ ଓ କିଛି ପଶମ ବାହାର କରାଯାଇପାରେ ।

ମେଷମାନଙ୍କର ଖାଦ୍ୟ : ଗାଈ ଚାରଣଭୂମିରେ ଚରିଗଲାପରେ ଛୋଟ ଘାସ ଓ ପତର ମେଣ୍ଢାମାନେ ଚରନ୍ତି । ସେମାନେ ଜାତୀଆ ଘାସ ନ ପାଇକରି ମଧ ଖରାପ ଘାସ ହଜମ କରି ଶରୀର ବୃଦ୍ଧି କରିପାରନ୍ତି । ଏହା ବାଦେ ମେଣ୍ଢାଛୁଆ, ମାଈମେଣ୍ଢା, ଖାସି, ବୋଦା ଓ ଗର୍ଭବତୀ ମେଣ୍ଢିମାନଙ୍କୁ ୧୦୦ ଗ୍ରାମରୁ ୨୫୦ ଗ୍ରାମ ପର୍ଯ୍ୟନ୍ତ ଗହମ, କୋଳଥ, ମକ୍କାଗୁଣ୍ଡ, ଚୋକଡ଼ ଓ ଧାତବ ଲବଣ ମିଶାଇ ଦୈନିକ ଖାଇବାକୁ ଦେଲେ ସେମାନଙ୍କର ସ୍ୱାସ୍ଥ୍ୟ ଭଲ ରହେ ଓ ଓଜନ ବଢ଼େ । ତିରୋଟ ସମୟରେ ଘାସ ଅଭାବ ପଡ଼ିଲେ ମେଣ୍ଢାମାନଙ୍କୁ ଲୁସର୍ଣ୍ଣ, ଦୂବ ଘାସ ଶୁଖାଇ ଗୁଣ୍ଡକରି ଭୂସା, ଧାତବ ଲବଣ ଓ ଅଚ୍ଛଦାନା ମିଶାଇ ଦେଲେ ସ୍ୱାସ୍ଥ୍ୟ ଭଲ ରହେ ।

ଘାସ ନ ମିଳିଲାବେଳେ ମେଣ୍ଢାମାନଙ୍କୁ ବର, ଅଶ୍ୱତ୍ଥ, ପଣସ, ବାଉଁଶ, କଦଳୀ, ଅଗସ୍ତି, ସୁବାବୁଲ, ମହୁଲ, ଶିରିଷ, ଆଳୁ, ଆଖୁ, ଟାପିଓକା, ସଜନା ଓ ଡିମିରି ଗଛମାନଙ୍କର ପତ୍ର ଖାଇବାକୁ ଦିଆଯାଏ । ଏହା ସହିତ କିଛି ଦାନା ଦେଲେ ସେମାନଙ୍କର ସ୍ୱାସ୍ଥ୍ୟ ଭଲ ରୁହେ ।

ମେଣ୍ଢା ମାଂସ ଗନ୍ଧହୀନ, ନରମ ଓ ସୁସ୍ୱାଦୁ । ୮-୯ ମାସର ମେଣ୍ଢାମାନଙ୍କୁ ବିକ୍ରୀ କଲେ ଭଲ ଲାଭ ମିଳିଥାଏ ।

ପ୍ରତି କେ.ଜି. ପଶମର ମୂଲ୍ୟ ଟ ୩୦/- । ତେଣୁ ପ୍ରତି ମେଣ୍ଢା ବର୍ଷକୁ ୫୦ରୁ ୬୦ ଟଙ୍କାର ପଶମ ଦେଇଥାଏ ।

ପ୍ରତି ମେଣ୍ଢାପାଇଁ ଦେଢ଼ ମିଟର ମେଜିଆ ଗୁହାଳରେ ଦରକାର । ମେଣ୍ଢାଛୁଆ, ମାଈମେଣ୍ଢା, ବୋଦା ଗର୍ଭବତୀ ମେଣ୍ଢା ଓ ଖାସିମାନଙ୍କୁ ଗୁହାଳରେ ଅଲଗା ଅଲଗା ଖୁଆଡ଼ରେ ରଖିବା ଦରକାର ।

ମେଣ୍ଢାମାନଙ୍କର ବିଭିନ୍ନ କୃମି ରୋଗ ହୁଏ । ସେମାନଙ୍କର ମଳ ୩-୪ ମାସରେ ଥରେ ପରୀକ୍ଷା କରି ଚିକିତ୍ସା କଲେ ସେମାନେ କୃମି ରୋଗରୁ ମୁକ୍ତି ପାଆନ୍ତି । ଜୀବାଣୁ ଜନିତ ରୋଗ ଯଥା - ଏଣ୍ଟେରୋଟକ୍ସିମିଆ, କ୍ଲଷ୍ଟିଡ଼ିଆଲ ରୋଗ, କାମଳ, ଜୋନ୍ସ ରୋଗ, ସାଲ୍‌ମୋନେଲା ରୋଗ, ମସ୍ତିଷ୍କ ଜ୍ୱର, ଖୁରାପଚା ଓ ନିମୋନିଆ ରୋଗମାନଙ୍କର ପ୍ରତିଷେଧକ ବ୍ୟବସ୍ଥା ଓ ଚିକିତ୍ସା ଠିକ ସମୟରେ କଲେ ସେମାନେ ରୋଗରୁ ରକ୍ଷା ପାଇଥାନ୍ତି । ଭୂତାଣୁ ଜନିତ ରୋଗ ଯଥା - ବ୍ଲୁ ଟଙ୍ଗ, ଗର୍ଭପାତ, ମିଇମିଇଆ ରୋଗ ଓ ଚମଡ଼ା ଯାଦୁ ରୋଗମାନ ପ୍ରଧାନ । ଏହାର ପ୍ରତିଷେଧକ ଟୀକା ଦେଲେ ରୋଗ ହୋଇନଥାଏ ।

ମେଷପାଳନ ପରିକଳ୍ପନା ଅନୁସାରେ ଗୋଟିଏ ଚାଷୀ ୧୦ଟି ମେଣ୍ଢି ରଖିଲେ ବର୍ଷ ଶେଷକୁ ଟ ୩୦,୦୦୦/- ପାଏ । ୨ୟ ବର୍ଷ, ୩ୟ ବର୍ଷ ଓ ୪ର୍ଥ ବର୍ଷରେ ଯଥାକ୍ରମେ ଟ ୩୧,୦୦୦, ୩୨,୦୦୦ ଓ ୪୦,୦୦୦ ଟଙ୍କା ପାଇଥାଏ । ଏହି ଆୟ କେବଳ ମାଂସରୁ ହୋଇଥାଏ । ମେଣ୍ଢାମାନଙ୍କର ପଶମ ବିକ୍ରୀ ହେଲେ ଚାଷୀର ଆୟ ଆହୁରି ବଢ଼ିଯାଏ ।

ଡଃ ମହାନ୍ତିଙ୍କ ବହୁ ପରିଶ୍ରମରେ ବହି ଦୁଇଖଣ୍ଡି ଲେଖିଛନ୍ତି ଏବଂ ଏହି ବହି ଲେଖାର ଯଥାର୍ଥତା ପ୍ରତିପାଦନ ହୋଇପାରିବ ଯେତେବେଳେ ସାଧାରଣ ଲୋକ ଏହି ଛାଗ ଓ ମେଷ ପାଳନ କରି ସେଥିରୁ ଲାଭ ପାଇ ସେମାନଙ୍କର ଆର୍ଥିକ ଓ ସାମାଜିକ ଉନ୍ନତି ପରିପାରିବେ ।

*ଅବସରପ୍ରାପ୍ତ ନିର୍ଦ୍ଦେଶକ, କେନ୍ଦ୍ରୀୟ ଲାଲ୍‌ପିନ୍ଧୀ ଗୋପ୍ରଜନନ ଫାର୍ମ,*
*ଚିପିଲିମା, ସମ୍ବଲପୁର*





ଉତ୍କଳର ପବିତ୍ର ମାଟିରେ ଜନ୍ମଗ୍ରହଣ କରି ଜଣେ ବିଜ୍ଞାନ ଛାତ୍ର ଭାବରେ ଯୁକ୍ତରାଷ୍ଟ୍ର ଆମେରିକାର ସାଉଥ୍ ଡାକୋଟା ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷା ଲାଭ କରିବା ସହିତ ଗବେଷଣାତ୍ମକ କୃତିତ୍ୱଲାଗି ସମ୍ମାନିତ ହୋଇଥିବା ଡକ୍ଟର ଗୁରୁପ୍ରସାଦ ମହାନ୍ତି ଜନ୍ମଭୂମିକୁ ଫେରିଆସି ଜଣେ ଗବେଷକ, ଅଧ୍ୟାପକ, ପ୍ରଶାସକ, ଲେଖକ, ସାହିତ୍ୟସେବୀ ଓ ସମାଜସେବୀ ଭାବରେ ଉତ୍କଳ ସମ୍ମିଳନୀ, ଲେଖକ ସହଯୋଗ ସମିତି, ଜୀବେ ହିତୈଷୀ ସଂଘ, ଓଡ଼ିଶା ସୁରକ୍ଷା ସମିତି, ଉତ୍କଳ ସାହିତ୍ୟ ସମାଜ, ସର୍ବଭାରତୀୟ ଜୀବ ପୃଷ୍ଟିତତ୍ତ୍ୱ ବିଜ୍ଞାନ ସଂଘ, ଓଡ଼ିଶା ବିଜ୍ଞାନ ପ୍ରଚାର ସମିତି ତଥା ଶ୍ରୀକୃଷ୍ଣ ଏକାଡ଼େମୀ ଓ ରେଭେନ୍ସା କଲେଜର ପୁରାତନ ଛାତ୍ରସଂଘ ସହିତ ବହୁଭାବରେ ସଂପୃକ୍ତ ।

## ଗୁରୁପ୍ରସାଦ ଅଭିନନ୍ଦନ କମିଟି

ତାରାଚାନ୍ଦ ପାଟଣା, କଟକ